# ଭାଗବତ କଥା

## ସପ୍ତୋବିଂଶ ଖଣ୍ଡ

ଲେଖକ

**ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ**

ସମ୍ପାଦନା

**ଡକ୍ଟର କୃଷ୍ଣପ୍ରସାଦ ମିଶ୍ର**

ଅନୁବାଦକ

**ପଣ୍ଡିତ ନୀଳମଣି ମିଶ୍ର**

ପ୍ରକାଶକ



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

## ତ୍ରୟୋବିଂଶ ଖଣ୍ଡ

ପ୍ରକାଶିକା :

**ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର**

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

କଟକ-୭୫୩୦୦୨

ପ୍ରଥମ ସଂସ୍କରଣ

୧୯୮୬

ପ୍ରଚ୍ଛଦ

ଶ୍ରୀ ଅର୍ପିତ ମୁଖାର୍ଜୀ

ମୁଦ୍ରଣ

କଲ୍ୟାଣୀ ପ୍ରିଣ୍ଟର୍ସ,

ପିଠାପୁର, କଟକ-୭୫୩୦୦୧

ମୂଲ୍ୟ

ବନ୍ଧାଇ : ୧୮ ଟଙ୍କା

ଅବନ୍ଧା : ୧୫ ଟଙ୍କା

# BHAGABAT KATHA

Twentythird Part

**Sri Prabhudatta Brahmachari**

Publisher

**Srimati Annapurna Mishra**

Cuttack Student's Store

Cuttack-753002

First Edition-1986

Price

Deluxe Rs. 18.00

Popular Rs. 15.00

## ବିଷୟ ସୂଚୀ ପୃଷ୍ଠା



———

## ଅବଶ୍ୟ ପଠନୀୟ

ପୁରାଣ ଯୁଗ ଭାରତର ଦୁଇଜଣ ଅସାଧାରଣ ପୁରୁଷଙ୍କ
ଚରିତୋପନ୍ୟାସ :

## ଦ୍ରୋଣାଚାର୍ଯ୍ୟଙ୍କ ଆତ୍ମକଥା

ମୂଲ୍ୟ ଟ ୩୫-୦୦ ମାତ୍ର

## କର୍ଣ୍ଣଙ୍କ ଆତ୍ମକଥା

ମୂଲ୍ୟ ଟ ୪୦-୦୦ ମାତ୍ର

ଆତ୍ମଜୀବନୀ ଆକାରରେ ଚରିତୋପନ୍ୟାସର
ମୂଳ ଲେଖକ – ହିନ୍ଦୀର କଥା ସମ୍ରାଟ୍

ଶ୍ରୀ ମନୁ ଶର୍ମା

(ଓଡ଼ିଆ ରୂପାନ୍ତର କରିଛନ୍ତି)

ଶ୍ରୀ ରଘୁନାଥ ମହାପାତ୍ର

ଶୀଘ୍ର ପ୍ରକାଶ ପାଉଛି :

## ଦ୍ରୌପଦୀଙ୍କ ଆତ୍ମକଥା

# ଭୂମିକା

## ସନ୍ଥ ଜୀବନୀରୁ ଶିକ୍ଷଣୀୟ କଥା

ସଙ୍ଗଂ ତ୍ୟଜେତ ମିଥୁନ-ବ୍ରତୀନାଂ ମୁମୁକ୍ଷୁଃ
ସର୍ବାତ୍ମନା ନ ବିସୃଜେଦ୍ ବହିରିନ୍ଦ୍ରିୟାଣି ।
ଏକଶ୍ଚରନ୍ ରହସି ଚିତ୍ତମନନ୍ତ ଈଶେ
ଯୁଞ୍ଜୀତ ତଦ୍‌ବ୍ରତୀଷୁ ସାଧୁଷୁ ଚେତ୍ ପ୍ରସଙ୍ଗଃ ॥
(ଭା. ୯. ୬. ୫୧)

ପରହିତ ଧାରହିଁ ଦେହ ସଂତ ସୁଖ ଦେହିଁ ସବନ କୂଁ ।
ସ୍ୱୟଂ କଷ୍ଟ ସହି ସତ୍ୟ ସିଖାୱେଁ ନର ନାରିନ କୂଁ ।
ସଂତ ଚରିତ ସାକାର ଜ୍ଞାନ ପ୍ରତ୍ୟକ୍ଷ ଦିଖାୱେଂ ।
ୟହି ଜୀୱନ ହୀ ବେଦ ଗ୍ରନ୍ଥ ଜନକେ ବାଞ୍ଚ ଜାୱେଂ ॥
କେୱଲ ପଢ଼ି ସମୁଝତ ନହୀଂ, ପଠନ ଶ୍ରବନ ଇକ ବ୍ୟସନ ହୈ
ସଂତ କରହିଁ ପ୍ରତ୍ୟକ୍ଷ ଜବ, ହୋୱେ ସଂଶୟ ଶମନ ହୈ ।

ଭଗବାନ୍ ସୌଭରି ମହର୍ଷି ଯମୁନା ନଦୀରେ ଦୃଢ଼ ତପସ୍ୟା କରୁଥିଲେ । ଥରେ ମତ୍ସ୍ୟମାନଙ୍କର ମୈଥୁନକ୍ରିୟା ଦେଖି, ତାଙ୍କ ମନରେ ମଧ୍ୟ ସଂସାର ଧର୍ମରେ ଦୀକ୍ଷିତ ହେବା ଲାଗି ବାସନା ଜାତ ହେଲା । ତହୁଁ ପଚାଶଟି କନ୍ୟାଙ୍କ ସହିତ ବିବାହ କରିବା ପରେ ତାଙ୍କ ମନରେ ବୈରାଗ୍ୟ ଉଦୟହେଲା । ସେ ଜଗଦ୍‌ବାସୀଙ୍କୁ ଉପଦେଶଦେଇ କହିଛନ୍ତି—"ଯେଉଁମାନେ ମୋକ୍ଷ କାମନା କରନ୍ତି, ସେମାନେ ସର୍ବଦା ଦାମ୍ପତ୍ୟ ସୁଖ ଭୋଗ କରୁଥିବା ଲୋକମାନଙ୍କ ସଙ୍ଗ ତ୍ୟାଗ କରିବା ଉଚିତ । ସେ ଏକାନ୍ତ ଜୀବନ

ଯାପନ କରି, ନିଜ ମନକୁ ଏକମାତ୍ର ଅନନ୍ତ ସ୍ୱରୂପୀ ପରମେଶ୍ୱରଙ୍କଠାରେ ଲଗାଇ ଦେବା ବିଧେୟ । ସେ ନିଜ ଇନ୍ଦ୍ରିୟମାନଙ୍କୁ ବହିର୍ମୁଖୀ ହେବାର ସୁଯୋଗ ଦେବା ସମୀଚୀନ ନୁହେଁ । ଯଦି ସେ ଅନ୍ୟମାନଙ୍କ ସହିତ ମିଳିତ ହେବାକୁ ଚାହାନ୍ତି; ତେବେ ସାଧୁ ସନ୍ଥ ପୁରୁଷଙ୍କ ସହିତ ମିଳିତ ହେବା ଉଚିତ ।

ଭଗବତ୍ ଚରିତ ଯେଉଁ ଆଖ୍ୟାୟିକାରେ ଗାନ କରାଯାଏ-ତାହାହିଁ ହେଉଛି-ଭାଗବତ କଥା । ମହାପୁରୁଷମାନଙ୍କ ଜୀବନଗାଥା ଇତିହାସ ଓ ପୁରାଣରେ ଲିଖିତ ହୋଇଛି । ସେମାନେ ଭଗବତ୍ ସାନ୍ନିଧ୍ୟ ଲାଭ କରିଥିବାରୁ, ସେମାନଙ୍କ ଜୀବନ ଧାରାରୁ ଅନେକ ଉପଦେଶ ମିଳିଥାଏ । ପ୍ରାଚୀନ ଆଖ୍ୟାୟିକାରୁ ଅନେକ ଉପଦେଶ ମିଳିଥାଏ । କିନ୍ତୁ ଶୁଣିଥିବା ଘଟଣାଗୁଡ଼ିକ ଅପେକ୍ଷା, ନିଜେ ଦେଖିଥିବା ଘଟଣାଗୁଡ଼ିକ ହୃଦୟରେ ଅଧିକ ପ୍ରଭାବ ପକାଇଥାଏ । ସାଧୁସନ୍ଥମାନେ ଲୋକ କଲ୍ୟାଣ ଉଦ୍ଦେଶ୍ୟରେ ଜୀବନ ବିତାଉଥିବାରୁ, ସେମାନଙ୍କ ଜୀବନରେ ଘଟିଥିବା ଘଟଣାରୁ ଉପଦେଶ ମିଳିଥାଏ । ଏଠାରେ ବ୍ରହ୍ମବେତ୍ତା ପୂଜ୍ୟପାଦ 'ଓଡ଼ିଆ ବାବା'ଙ୍କ ଜୀବନ ବୃତ୍ତାନ୍ତର ଅବତାରଣା କରାଯାଉଛି ।

ଓଡ଼ିଆ ବାବା ଶ୍ରୀକ୍ଷେତ୍ର ନିକଟରେ ଗୋଟିଏ ବ୍ରାହ୍ମଣ ବଂଶରେ ଜନ୍ମଗ୍ରହଣ କରିଥିଲେ । ଶୁଣାଯାଏ—ବତିଶ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହେବ ବୋଲି ଜ୍ୟୋତିଷମାନେ କହିଥିବାରୁ, ସେ ସେହି ସମୟରେ ସନ୍ୟାସୀ ହୋଇଯାଇଥିଲେ । ସତେ ଯେପରି, ତାଙ୍କର ଦ୍ୱିତୀୟ ଜନ୍ମ ହେଲା, ସେ ତାହା ମନେକରି ଘରଆଡେ ବୁଲିବୁଲି କରି ଗଙ୍ଗାତଟରେ ଅବସ୍ଥିତ ବୁନ୍ଦେଲ ସହର ଜିଲ୍ଲାର ରାଜଘାଟ ନରୌର ନିକଟରେ ଥିବା ରାମଘାଟକୁ ଆସିଥିଲେ । ସେ ପ୍ରତିଦିନ ଗଙ୍ଗା ସ୍ନାନକୁ ଆସୁଥିବାରୁ, ସମସ୍ତେ ତାଙ୍କୁ 'ଓଡ଼ିଆ ବାବା' ନାମରେ ଜାଣିଥିଲେ । ମୋର ଜନ୍ମଭୂମି ସେହି ନିକଟରେ ଥିବାରୁ, ପିଲାଦିନରୁ ମୁଁ ଓଡ଼ିଆ ବାବାଙ୍କ ନାମ ଶୁଣିଥିଲି ।

ତାଙ୍କର ଜ୍ଞାନ, ବୈରାଗ୍ୟ, ତ୍ୟାଗ ତଥା ସୁନ୍ଦର ସ୍ୱଭାବ ଯୋଗୁ ସେ ସମଗ୍ର ଜିଲ୍ଲାରେ ସୁପରିଚିତ ଥିଲେ । ହଜାର ହଜାର ସ୍ତ୍ରୀ, ପୁରୁଷ ତାଙ୍କ ଦର୍ଶନ ଲାଗି ପ୍ରତିଦିନ ଆସୁଥିଲେ । ସେ ଯେଉଁଠାକୁ ଯାଉଥିଲେ, ସେଠାରେ ଗୋଟିଏ ଯାତ୍ରା ଲାଗିଯାଉଥିଲା । ସେ ଅତ୍ୟନ୍ତ ଦୟାଳୁ ଓ ମିଷ୍ଟଭାଷୀ ଥିଲେ । ଯେ ଥରେ ମାତ୍ର ତାଙ୍କ ସମ୍ପର୍କରେ ଆସୁଥିଲା, ସେ ତାଙ୍କର ଅତି ଆପଣାର ହୋଇ ଯାଉଥିଲେ । ଯେ ଯେଉଁ ଧରଣର ଲୋକ, ସେ ତା' ସହିତ ସେହି ଧରଣର ଆଲୋଚନା କରି, ତାଙ୍କୁ ଆପଣାର କରି ନେଉଥିଲେ । ସେ ରାଜନୈତିକ ବିଷୟରେ ଆଲୋଚନା କରୁଥିବାରୁ, ଯୁବକ-

ମାନେ ତାଙ୍କ ଆଲୋଚନାରେ ପ୍ରଭାବିତ ହୋଇ ଯାଉଥିଲେ । ଯେଉଁମାନେ ସ୍ୱଭାବତଃ ଧାର୍ମିକ ବର୍ଗରର ଲୋକ ଥିଲେ, ମହାରାଜ ସେମାନଙ୍କୁ ଧର୍ମ କଥା କହି ମୁକ୍ତିର ମାର୍ଗ ଶିଖାଉଥିଲେ । କେଣୁ ସେ ଯେଉଁଠାରେ ବସୁଥିଲେ, ତାଙ୍କ ଚାରିପଟେ ଅନେକ ଲୋକ ଘେରି ଯାଉଥିଲେ ଏବଂ ଅନେକ ଜିନଷ—ଫଳମୂଳ ତଥା ଖାଦ୍ୟ ପଦାର୍ଥ ତାଙ୍କ ନିକଟରେ ଜମା ହୋଇଯାଉଥିଲା । ତାଙ୍କ ସହିତ ପ୍ରଥମ ସାକ୍ଷାତରେ ମୁଁ ଅନୁଭବ କଲି - ସେ ମୋର ପରମ ଆତ୍ମୀୟ । ସେ ମୋ' ପ୍ରତି ଏତେ କୃପା ପ୍ରଦର୍ଶନ କରିଥିଲେ ଯେ, ମୁଁ ତାହା ଭାଷାରେ ବ୍ୟକ୍ତ କରିପାରିବି ନାହିଁ । ସେ ପିତୃବତ୍ ମୋତେ ସ୍ନେହ କରୁଥିଲେ ଏବଂ ତାଙ୍କ ଶ୍ରୀଚରଣରେ ବସି ମୁଁ ମନରେ ନୂତନ ସ୍ଫୂର୍ତ୍ତି ଅନୁଭବ କରୁଥିଲି ।

ସେ ସମୟରେ ତାଙ୍କର ଯୁବକ ଅବସ୍ଥା ଏବଂ ମନରେ ତାଙ୍କର ଥିଲା— ତ୍ୟାଗର ପରାକାଷ୍ଠା । ଗୋଟିଏ କାଠର କମଣ୍ଡଳୁ ବ୍ୟତୀତ ସେ ଆଉ ନିଜ ପାଖରେ କିଛି ରଖୁ ନଥିଲେ । ସେ ନିଜେ ଘର ଘର ବୁଲି ଭିକ୍ଷା କରୁଥିଲେ । ଗ୍ରାମଘାଟ ନିକଟରେ ଗୋଟିଏ ତେନ୍ତୁଳି ଗଛ ମୂଳରେ ତାଙ୍କର ପର୍ଣ୍ଣକୁଟୀର ଥିଲା । ଭିତରେ ଖଣ୍ଡିଏ ଗ୍ରେଟ କାଠର ଆସନ, ଆଉ ଖଣ୍ଡିଏ ଚଟାଇ ପଡ଼ିଥିଲା । ଖଣ୍ଡିଏ ଲେଙ୍ଗୁଟି ଓ ଗୋଟିଏ କମଣ୍ଡଳୁ ଥିଲା—ତାଙ୍କର ସର୍ବସ୍ୱ । ଭଗବତୀ ଗଙ୍ଗାଙ୍କ ତଟରେ ଥିଲା— ସେହି ମହାନ୍ ଯୋଗୀଙ୍କର ପର୍ଣ୍ଣ କୁଟୀର । ସେ ଥିଲେ—ବୈରାଗ୍ୟର ସାକ୍ଷାତ୍ ପ୍ରତୀକ । ସେ ପ୍ରାତଃକାଳରେ କାହାରି ସହିତ ସାକ୍ଷାତ କରୁ ନଥିଲେ । ସେ ସକାଳୁ ପ୍ରାୟ ପାଞ୍ଚ ଛଅ ଘଣ୍ଟା ପର୍ଯ୍ୟନ୍ତ ଗୋଟିଏ ଆସନରେ ବସି ଧ୍ୟାନମଗ୍ନ ହୋଇଯାଉ- ଥିଲେ । ତେଣୁ ସକାଳଓଳି ତାଙ୍କ ନିକଟକୁ କେହି ଆସୁନଥିଲେ । ମଧ୍ୟାହ୍ନ ସମୟରେ ସେ ଭିକ୍ଷା କରିବା ଲାଗି ଗ୍ରାମ ଭିତରକୁ ଯାଉଥିଲେ ଏବଂ ଉପରଓଳି ଆଗନ୍ତୁ ଭକ୍ତମାନଙ୍କ ସହିତ ଧର୍ମଚର୍ଚ୍ଚା କରୁଥିଲେ ।

ସେହି ସମୟରେ ମୋ'ମନରେ ତ୍ୟାଗର ଏକ କ୍ଷୀଣରେଖା ଉଦିତ ହୋଇଥିଲା । ମୋ' ପରି ଗୋଟିଏ ଅଧମ ବ୍ୟକ୍ତି ପ୍ରତି ସେ ଏପରି ଦୟା ଦେଖାଇଲେ ଯେ, ମୁଁ ତାଙ୍କ ସ୍ନେହ ବାରିରେ ଆପ୍ଲୁତ ହୋଇଗଲି ।

ମହାରାଜ ଓଡ଼ିଆବାବା ସକାଳଓଳି କାହାରି ସହିତ କଥାବାର୍ତ୍ତା କରୁ- ନଥିଲେ ମଧ୍ୟ ତାଙ୍କ କୁଡ଼ିଆକୁ ଆସିବା ଲାଗି ମୋତେ ନିଷେଧ କରିନଥିଲେ । ତିନିକର କଥା—ମୁଁ ତାଙ୍କ ପାଖକୁ ଆସିବା ମାତ୍ରେ ସେ ମୌନ ଅବସ୍ଥାରେ ମୋତେ ଖଣ୍ଡିଏ ବୁଦ୍ଧଦେବଙ୍କର ଫଟୋ ଦେଖାଇଲେ, ଫଟୋଟି ଓଡ଼ିଆ ଭାଷାରେ ଲିଖିତ

ଖଣ୍ଡିଏ ଶ୍ରୀମଦ୍ ଭଗବତ୍ ଗୀତା ପୁସ୍ତକ ମଧ୍ୟରେ ରହିଥିଲା । ସେ ଚିତ୍ରରୁ ସ୍ପଷ୍ଟ ଜଣା ପଡ଼ୁଥିଲା — ତାହା ବୁଦ୍ଧ ଦେବଙ୍କର ତପସ୍ୟାକାଳୀନ ଚିତ୍ର । ତାଙ୍କ ଶରୀର ଶୁଷ୍କ ଏବଂ ଶରୀରରେ ଅସ୍ଥିମାତ୍ର ଅବଶେଷ ଥିଲା । ସେ ଚିତ୍ରଟି ଏପରି ଭାବ ପୂର୍ଣ୍ଣ ଥିଲା ଯେ ଜୀବନରେ ଆଉ ସେପରି ଫଟୋ ମୁଁ ଦେଖିନାହିଁ ।

ମୁଁ ସେ ସମୟରେ କାଶୀରେ ରହି ସାଧ୍ୱାଧ୍ୟକ ଜୀବନ ବିତାଉଥିଲି । ହଠାତ୍ ସେଥିରୁ ମୁକ୍ତ ହୋଇ ମୁଁ ହିମାଳୟ ଯାତ୍ରା ଆରମ୍ଭ କରିଦେବାକୁ ମନେ ମନେ ସ୍ଥିର କରିଥିଲି । ଭଗବତ୍ ପ୍ରାପ୍ତି ବିନା ମୁଁ ସେ ଯାତ୍ରାରୁ ଫେରିବି ନାହିଁ ବୋଲି ମଧ୍ୟ ମନରେ ସ୍ଥିର କରିଥିଲି । ଖୁବ୍ ସମ୍ଭବତଃ ମୋ' ମନର ଅବସ୍ଥାକୁ ଆହୁରି ଦୃଢ଼ କରିବା ପାଇଁ ସେ ମୋତେ ସେହି ଫଟୋଟି ଦେଇଥିଲେ ।

ଓଡ଼ିଆ ବାବାଙ୍କ ମୁଖ ମଣ୍ଡଳରୁ ଦିବ୍ୟତେଜ ନିର୍ଗତ ହେଉଥିଲା ଏବଂ ତାଙ୍କଠୁ କଥା ଶୁଣିଲେ ଯେ କୌଣସି ବ୍ୟକ୍ତି ତାଙ୍କ ପ୍ରତି ଆକୃଷ୍ଟ ହୋଇଉଠୁଥିଲା । ତାଙ୍କ ମୁହଁରୁ ଶ୍ଳୋକ ଶୁଣିଲେ ରୋମମୂଳ ଟାଙ୍କୁରି ଉଠୁଥିଲା । ସେ ତନ୍ମୟଭାବ ସହିତ ଗାନ କରୁଥିଲେ—

"ଇହାସନେ ଶୁଷ୍ୟତୁ ମେ ଶରୀରଂ
ତ୍ୱଗସ୍ଥି ମାଂସଂ ପ୍ରଳୟଂ ତୁ ଯାତୁ ।
ଅପ୍ରାପ୍ୟ ବୋଧଂ ବହୁକାଳ ଦୁର୍ଲଭଂ
ଇହାସନାନ୍ନୈବ ସମୁଚ୍ଚଳିଷ୍ୟେ" ।

ଅର୍ଥାତ୍—ଏହି ଆସନରେ ବସି ମୋ' ଶରୀର ଶୁଷ୍କ ହୋଇଯାଉ, ଚର୍ମ, ଅସ୍ଥି ଓ ମାଂସ ନଷ୍ଟ ହୋଇଯାଉ । ବହୁକାଳ ପର୍ଯ୍ୟନ୍ତ ଦୁଷ୍କର ତପଃ ସାଧନକରି ବୁଦ୍ଧତ୍ୱ ପ୍ରାପ୍ତି ନ ହେବା ଯାଏଁ ମୁଁ ଏହି ଆସନରୁ ଉଠିବି ନାହିଁ ।

ଓଡ଼ିଆ ବାବା ଗଙ୍ଗା ନଦୀର ଆଖ ପାଖ ଅଞ୍ଚଳରେ ପ୍ରାୟେ ବିଚରଣ କରୁଥିଲେ । କୁମ୍ଭମେଳା ସମୟରେ ହରିଦ୍ୱାର ଓ ଋଷିକେଶ ପର୍ଯ୍ୟନ୍ତ ଯାଇଥିଲେ । ସେ କହୁଥିଲେ- ବଦ୍ରୀନାଥଧାମ ଯାଇ ଆଉ କ'ଣ ଫେରିବା ଉଚିତ ? ଯେ ସେଠାକୁ ଯିବ, ସେ ଗଲା ବୋଲି ଜାଣ ! ମୋର ମନେଅଛି—ଥରେ ସେ ପାଦରେ ଚାଲିଚାଲି କାଶୀ ଯାଇଥିଲେ । ପ୍ରତିଦିନ ଦଶ ବାର କୋଶ ରାସ୍ତା ଚାଲିବା ତାଙ୍କ ପକ୍ଷରେ କିଛି ଅସୁବିଧାଜନକ ନଥିଲା । ସେ କୌପୀନ ଚଦର ଓ ଗୋଟିଏ କମଣ୍ଡଳୁ ବ୍ୟତୀତ ଆଉ

କୌଣସି ଜିନିଷ ସାଥିରେ ନେଉ ନଥିଲେ । ତାଙ୍କର ଯେତେବେଳେ ଇଚ୍ଛା ହେଉଥିଲା, ସେ କାହାରିକୁ କିଛି ନକହି ଚାଲିଯାଉଥିଲେ । କିନ୍ତୁ ତାଙ୍କ ଆଗମନ ବାର୍ତ୍ତା ପାଇବା ମାତ୍ରେ ହଜାର ହଜାର ଲୋକ ଆସି ତାଙ୍କୁ ଘେରି ଯାଉଥିଲେ ! ସେ ସାଧାରଣ ଲୋକଙ୍କ ସହିତ ଏପରି ଭାବରେ ଆତ୍ମୀୟତା ଦେଖାଇ ମିଳାମିଶା କରୁଥିଲେ ଯେ, ପ୍ରତ୍ୟେକ ବ୍ୟକ୍ତି ତାଙ୍କୁ ଅତି ଆପଣାର ଲୋକ ବୋଲି ଭାବୁଥିଲେ । ସେ କଥା ପ୍ରସଙ୍ଗରେ ଲୋକମାନଙ୍କୁ ନାନା ପ୍ରକାର ବିଷୟରେ ଉପଦେଶ ଦେଉଥିଲେ । ଏପରିକି, କାହାରି କାହାରି ଝିଅ ପାଇଁ ବରପାତ୍ର ଯୋଗାଡ଼ରେ ମଧ୍ୟ ସାହାଯ୍ୟ କରୁଥିଲେ, ମୋଟ ଉପରେ କହିବାକୁ ଗଲେ ଓଡ଼ିଆ ବାବା ଉଭୟ ଇହଲୋକ ଓ ପରଲୋକ ସମ୍ବନ୍ଧରେ ସମସ୍ତ ଉପଦେଶ ଦେଉଥିଲେ ।

ହିମାଳୟ ଯାତ୍ରାରୁ ଫେରି ମୁଁ ନିତାନ୍ତ ରୁଗ୍ଣାବସ୍ଥାରେ ଯାଇ ତାଙ୍କ-ଶ୍ରୀଚରଣରେ ପହଞ୍ଚି ନିଜ ଅସଫଳତା ସମ୍ବନ୍ଧରେ ଜଣାଇଲି । ସେ ମୋତେ ନାନା-ପ୍ରକାର ଉଦାହରଣ ସହିତ ବୁଝାଇବା ପରେ କହିଲେ – 'ତୁମେ ଜଣେ ଲେଖକ, କିଛି ଆଧ୍ୟାତ୍ମିକ ଚରିତ୍ରପୂର୍ଣ୍ଣ ପୁସ୍ତକ ଲେଖ ।' ମୁଁ ତାଙ୍କରି ପ୍ରେରଣାରେ 'ଚୈତନ୍ୟ ଚରିତାବଳୀ' ଲେଖିବା ଆରମ୍ଭ କଲି । ପ୍ରଥମଦିନ ମୁଁ ଜଣେ ଲୋକ ହାତରେ ଖବର ପଠାଇଲି— 'ମହାରାଜ, ଆପଣ ମୋତେ ଆଶୀର୍ବାଦ ଦିଅନ୍ତୁ' । ସେ ଗୋଟିଏ ଶ୍ଳୋକ ଲେଖି ପଠାଇଲେ , 'ତାହାକୁ ମୁଁ 'ଶ୍ରୀଚୈତନ୍ୟ ଚରିତାବଳୀ'ର ପ୍ରଥମ ଖଣ୍ଡରେ ଛପାଇଛି । ସେ ମୋ' ପ୍ରାର୍ଥନା ସ୍ୱୀକାର କରି 'ଶ୍ରୀହରି ବାବାଜୀ'ବନ୍ଧୁ ପାଖକୁ ଆସିଲେ । ସେଠାରେ ସେ କିଛିଦିନ ରହିଲେ । ମୁଁ ସେଠାରେ ରହି 'ଶ୍ରୀଚୈତନ୍ୟ ଚରିତାବଳୀ' ବହି ଲେଖୁଥାଏ । ଏହାପରେ ମୁଁ ଅନେକ ଥର ତାଙ୍କୁ ସାକ୍ଷାତ୍ କରିଛି । ମୋର କିଛି ଅସୁବିଧା ହେଲେ ମୁଁ ତାଙ୍କ ପରାମର୍ଶ ନିଏ ଏବଂ ସେ ମଧ୍ୟ ଅନୁଗ୍ରହ କରି ମୋତେ ସଦୁପଦେଶ ପ୍ରଦାନ କରନ୍ତି । ତାଙ୍କପରି ସହନଶୀଳ ବ୍ୟକ୍ତି ଆଜିଯାଏ ମୋ' ଦୃଷ୍ଟିକୁ ଆସିନାହାନ୍ତି । ସେ ଲୋକ ଦେଖି ଆଲୋଚନା କରନ୍ତି । ଯେ ଯେପରି ଭାବରେ ସନ୍ତୁଷ୍ଟ ହେବ, ସେହିପରି ଭାବରେ ସେ ଆଲୋଚନା କରନ୍ତି । ସେ ଯାହା କହୁଥିଲେ, ଯେତେ ଅସୁବିଧା ହେଲେ ମଧ୍ୟ ତାହାକୁ ପାଳନ କରୁଥିଲେ । ସେ ଥିଲେ ଅତ୍ୟନ୍ତ ଦୟାଳୁ । ତେଣୁ ତାଙ୍କର ବିରୋଧୀ ଲୋକଙ୍କୁ ମଧ୍ୟ ସେ କେବେହେଲେ କଠୋର ବାକ୍ୟ କହୁ ନଥିଲେ । ଥରେ ଜଣେ ତାଙ୍କୁ ପ୍ରହାର କରି ତାଙ୍କ ନାକରେ ଆଘାତ କରିଥିଲା, କିନ୍ତୁ ତାଙ୍କୁ ସେ ସର୍ବାନ୍ତଃକରଣରେ କ୍ଷମା ଦେଇଥିଲେ ।

ଓଡ଼ିଆ ବାବା ଥିଲେ ଅତ୍ୟନ୍ତ ସ୍ନେହୀ । ସେ ନିଜ ହାତରେ ଖାଦ୍ୟ ପରଶି ଅନ୍ୟଙ୍କୁ ଖାଇବାକୁ ଦେଉଥିଲେ । ସେ କାହାରଠାରୁ ସେବା ଗ୍ରହଣ କରିବାକୁ ଆଦୌ ଇଚ୍ଛା କରୁନଥିଲେ, ବରଂ ସମସ୍ତଙ୍କୁ ସେବା କରିବା ଲାଗି ସେ ଭଲ ପାଉଥିଲେ । ମୁଁ ତାଙ୍କ ପାଖକୁ ଯେତେବେଳେ ଯାଉଥିଲି, ସେ ମୋତେ ଖୁବ୍ ଖାତିର କରୁଥିଲେ ଏବଂ ମୋ' ପାଇଁ ବିଭିନ୍ନ ବ୍ୟବସ୍ଥା କରୁଥିଲେ । କେବଳ ମୋତେ ଯେ ସେ ଖୁବ୍ ଭଲପାଉଥିଲେ ତା' ନୁହେଁ, ସମସ୍ତଙ୍କ ପ୍ରତି ତାଙ୍କର ବ୍ୟବହାର ଥିଲା—ନିତାନ୍ତ ଉଦାର ।

ପରେ ପରେ ସେ ଶ୍ରୀହରିବାବାଙ୍କ ସହିତ ମିଶି ଅବସ୍ଥାନ କରିଥିଲେ । ଗଙ୍ଗା ଉପରେ ପୋଲ ହୋଇଯିବା ପରେ ଦୁଇଜଣ ଯାକ ମହାତ୍ମାଙ୍କର ମିଳନ ହେଲା । ତା'ପରେ ସେ ତାଙ୍କ ସହିତ କ୍ଷୀର ନୀର ପରି ମିଶିଗଲେ । ଭକ୍ତମାନେ ସେ ଦୁହିଁଙ୍କୁ 'ହରିହର' ରୂପେ ଆଦର ସତ୍କାର କରୁଥିଲେ । ଓଡ଼ିଆ ବାବା ଶ୍ରୀ ହରିବାବାଙ୍କଠାରୁ ନଅ ଦଶ ବର୍ଷ ବଡ଼ଥିଲେ । ତେଣୁ ଶ୍ରୀହରିବାବା ତାଙ୍କୁ ପୂଜ୍ୟ ରୂପେ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । କିନ୍ତୁ ଉଭୟଙ୍କ ମଧ୍ୟରେ ଗୋଟିଏ ସଙ୍କୋଚଭାବ ସର୍ବଦା ରହୁଥିଲା । ଉଭୟ ଉଭୟଙ୍କ ସମ୍ମୁଖରେ ସଙ୍କୋଚ କରୁଥିଲେ ।

ମୁଁ ଉଭୟଙ୍କୁ ଅତି ନିକଟରୁ ଦେଖିଛି । ଉଭୟଙ୍କ ସ୍ୱଭାବ ମଧ୍ୟରେ ଆକାଶ ପାତାଳ ପାର୍ଥକ୍ୟ ଥିଲେ ସୁଦ୍ଧା ଉଭୟେ ଅତି ଆନନ୍ଦରେ ଆତ୍ମୀୟତାର ସହିତ ଅବସ୍ଥାନ କରୁଥିଲେ ।

ଓଡ଼ିଆ ବାବା ଥିଲେ—ଅତ୍ୟନ୍ତ ମେଳାପୀ । ସେ ପ୍ରତ୍ୟେକଙ୍କ ସହିତ ଅତି ଖୋଲଖୋଲି ଭାବରେ ମିଶୁଥିଲେ । କିନ୍ତୁ ଶ୍ରୀହରିବାବା ଥିଲେ ଅତି ନିଷ୍ଠାପର । ତାଙ୍କର ଧରାବନ୍ଧା କାର୍ଯ୍ୟକ୍ରମ ଥିଲା । ସେ ସମୟାନୁବର୍ତ୍ତୀ ଥିଲେ । ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଦିଷ୍ଟ କାମ କରିବାକୁ ସେ ଭଲ ପାଉଥିଲେ । ଏପରି ପାର୍ଥକ୍ୟ ତାଙ୍କ ମଧ୍ୟରେ ରହିଥିଲେହେଁ, ଦୁହେଁ ଏକାକାର ହୋଇ ଯାଇଥିଲେ । ଓଡ଼ିଆ ବାବା ସର୍ବଦା ଶ୍ରୀହରିବାବାଙ୍କ ଇଚ୍ଛାନୁସାରେ କାର୍ଯ୍ୟ କରୁଥିଲେ । ନିଜର ସମସ୍ତ ଇଚ୍ଛାକୁ ସେ ଶ୍ରୀହରି ବାବାଙ୍କ ଇଚ୍ଛା ଉପରେ ନ୍ୟସ୍ତ କରି, ତାଙ୍କର ପରମବନ୍ଧୁ ହୋଇ ପାରିଥିଲେ । ତେଣୁ ଦୁହିଁଙ୍କର ମନର ମିଳନ ହୋଇପାରିଥିଲା । ଶ୍ରୀ ହରିବାବାଙ୍କ ମନରେ କୌଣସି ପ୍ରକାର କଷ୍ଟ ଜାତ ନହେଉ, ଏଥିପାଇଁ ଓଡ଼ିଆବାବା ସର୍ବଦା ସତର୍କତାର ସହିତ କାର୍ଯ୍ୟ କରୁଥିଲେ । କୌଣସି ସାମାନ୍ୟ ବିଷୟରେ ଶ୍ରୀ ହରିବାବାଙ୍କ ମନରେ କଷ୍ଟ ଜାତ ହେଲେ, ଓଡ଼ିଆ ବାବା ତାଙ୍କୁ ବୁଝାଇ ସୁଝାଇ ସନ୍ତୁଷ୍ଟ କରୁଥିଲେ ।

ଆଶ୍ରମରେ ଯେଉଁ ମେଳା ମହୋତ୍ସବ ହେଉଥିଲା—ସେଥିଲାଗି ସମସ୍ତ ଦାୟିତ୍ୱ ଓଡ଼ିଆବାବା ମୁଣ୍ଡାଇ ନେଉଥିଲେ । ଶ୍ରୀହରିବାବା କେବଳ କ'ଣ କ'ଣ କରାଯିବ, ସେ ବିଷୟରେ ସୂଚନା ମାତ୍ର ଦେଉଥିଲେ , କିନ୍ତୁ ସେଥିଲାଗି ଅର୍ଥ କେଉଁଠୁ ଆସିବ, କିପରି କାର୍ଯ୍ୟ ସମ୍ପନ୍ନ ହେବ, ସେ ସମସ୍ତ ଦାୟିତ୍ୱ ଓଡ଼ିଆବାବା ନିର୍ବାହ କରୁଥିଲେ । ସେ ଯାହାକୁ ଥରେ ମାତ୍ର ନିଜର ବୋଲି ଗ୍ରହଣ କରୁଥିଲେ, ଯେତେ ଯାହା ତାଙ୍କ ବିରୁଦ୍ଧରେ ଶୁଣାଇଲେ ମଧ୍ୟ ସେ ତାକୁ ତ୍ୟାଗ କରୁ ନଥିଲେ । ତା'ଠାରେ ଦୋଷ ଦେଖିଲେ ମଧ୍ୟ ସେ ଆଖି ବୁଜି ଦେଉଥିଲେ । କାହାର ପ୍ରତି ଦୁର୍ଭାବନା ତାଙ୍କ ମନରେ ସ୍ଥାନ ପାଉନଥିଲା । ତାଙ୍କପରି ସଦ୍ ଭାବନା ପୂର୍ଣ୍ଣ ବ୍ୟକ୍ତି ଅନ୍ୟ ଜଣେ ମିଳିବା ଅତ୍ୟନ୍ତ କଷ୍ଟସାଧ୍ୟ ।

ମୋ' ସହିତ ତାଙ୍କର ପିତା ପୁତ୍ର ପରି ସମ୍ପର୍କ ରହିଥିଲା । ସେ ବିନା ଦ୍ୱିଧାରେ ମୋର ସମସ୍ତ ଆପତ୍ତି ମାନି ନେଉଥିଲେ । ଥରେ ଆଲିଗଡ଼ରେ ଗୋଟିଏ ବୃହତ୍ ସଂକୀର୍ତ୍ତନ ଉତ୍ସବ ଅନୁଷ୍ଠିତ ହେଲା । ରାମସ୍ୱରୂପଜୀ କେଲା ସେହି ଉତ୍ସବର ଆୟୋଜନ କରିଥିଲେ । ସେହି ଉତ୍ସବକୁ ପୂର୍ଣ୍ଣପ୍ରାଣରେ ସଫଳ କରାଇବା ପାଇଁ ସେ ସମସ୍ତ ପ୍ରକାର ପ୍ରଚେଷ୍ଟା କରିଥିଲେ । ସେ ଅଞ୍ଚଳର ପ୍ରସିଦ୍ଧ ପ୍ରସିଦ୍ଧ ସନ୍ଥ, ମହାତ୍ମା ସେଠାରେ ଆସି ସମ୍ମିଳିତ ହୁଅନ୍ତୁ, ଏହାହିଁ ଥିଲା—ତାଙ୍କର ଏକମାତ୍ର ଇଚ୍ଛା । ପ୍ରକୃତରେ ତାହା ସମ୍ଭବ ହୋଇପାରିଥିଲା । ବୃନ୍ଦାବନରୁ ଗୋସ୍ୱାମୀ କୃଷ୍ଣାନନ୍ଦଜୀ, ଶ୍ରୀ ଓଡ଼ିଆବାବା, ସ୍ୱାମୀ ଏକରସାନନ୍ଦ, ପ୍ରଭୃତି ଯେତେ ମହାତ୍ମା ସେଠାରେ ସମବେତ ହୋଇଥିଲେ, ଆଜି ସେମାନଙ୍କ ମଧ୍ୟରୁ କେହି ଜଣେ ହେଲେ ଇହଧାମରେ ନାହାନ୍ତି ।

ସେହି ଅନୁଷ୍ଠାନକୁ ଶ୍ରୀହରିବାବା ମଧ୍ୟ ଆସିଥିଲେ । ମୁଁ ଓଡ଼ିଆବାବାଙ୍କୁ ସଙ୍ଗରେ ନେଇ ସ୍ୱାମୀ ଏକରସାନନ୍ଦଜୀଙ୍କ ସହିତ ସାକ୍ଷାତ୍ କରାଇଲି । ସ୍ୱାମୀ ଏକରସାନନ୍ଦଜୀ ଥିଲେ—ବୃଦ୍ଧ । ତାଙ୍କ ସହିତ ଅନେକ ଶିଷ୍ୟ ଆସିଥିଲେ । ସେ କାହାରିକୁ ସମ୍ବର୍ଦ୍ଧନା ଜଣାଇ ଆସନରୁ ଉଠୁ ନଥିଲେ । ଅବଶ୍ୟ ଏହା ଅନ୍ୟମାନଙ୍କୁ ଭଲ ଲାଗୁ ନଥିଲା । ତଥାପି ଦୁଇ ମହାତ୍ମା ଘଣ୍ଟା ଘଣ୍ଟା ଧରି ଆଲୋଚନା କରିଥିଲେ । ଏହା ଥିଲା ଏକ ଅପୂର୍ବ ସମ୍ମେଳନ ।

ଆଉ ଥରେ ଫରୁଖାବାଦରେ ଗୋଟିଏ ମହୋତ୍ସବ ହୋଇଥିଲା । ସେଠାକୁ ଓଡ଼ିଆବାବା ଓ ଶ୍ରୀ ହରିବାବା ଚାଲି ଚାଲି ଯାଇଥିଲେ । କିନ୍ତୁ ଉତ୍ସବଟି ସେପରି ଭଲ ଧରଣର ହୋଇ ନଥିଲା । ତେଣୁ ଶ୍ରୀ ହରିବାବା ଅସନ୍ତୁଷ୍ଟ ହୋଇଥିଲେ, ମାତ୍ର

ଓଡ଼ିଆବାବା ଅତ୍ୟନ୍ତ ସହୃଦୟତା ପ୍ରକାଶ କରି କହିଲେ — ହେଉ, ସେଥିରେ କ'ଣ ଅଛି ? ସାଧୁମାନଙ୍କର ପୁଣି ମାନ ଅପମାନ, କ'ଣ ? ମୋର ଏ ପ୍ରକାର ପ୍ରସଙ୍ଗରେ ଅବତାରଣା କରିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି—ଓଡ଼ିଆବାବା ମାନ, ଅପମାନ ସୁଖ ଦୁଃଖକୁ ସମଭାବରେ ଗ୍ରହଣ କରୁଥିଲେ ।

ଝୁସୀ ଆଶ୍ରମରେ ଥରେ ମୁଁ ଚଉଦ ମାସ ବ୍ୟାପୀ ଅଖଣ୍ଡ ନାମ କୀର୍ତ୍ତନର ଆୟୋଜନ କରିଥିଲି । ଓଡ଼ିଆବାବାଙ୍କୁ ସେଠାକୁ ଆସିବା ଲାଗି ଅନୁରୋଧ କରିଥିଲି । ସେ ମୋ' ଅନୁରୋଧ ସ୍ୱୀକାର କରି ଧାମଦାଝରୁ ଝୁସି ପର୍ଯ୍ୟନ୍ତ ପ୍ରାୟ ଅଢ଼େଇଶହ କୋଶ ବାଟ ପାଦରେ ଚାଲି ଚାଲି ଆସି ସେ ଅନୁଷ୍ଠାନରେ ଯୋଗଦାନ କରିଥିଲେ । ଯେତେଦୂର ମୋର ମନେପଡ଼ୁଛି—ତାହା ଥିଲା ତାଙ୍କର ପ୍ରଥମ ଓ ଅନ୍ତିମ ଆଗମନ । ସେ ଏଠାରେ ପ୍ରାୟ ଅଢ଼େଇମାସରୁ ତିନମାସ ରହିଥିଲେ । ମୁଁ ତାଙ୍କ ପାଇଁ ଗୋଟିଏ କୁଟୀର ନିର୍ମାଣ କରିଥିଲି । ସେ ସେଠାରେ ଅତ୍ୟନ୍ତ ଆନନ୍ଦ ସହକାରେ ଅବସ୍ଥାନ କରିଥିଲେ । ସେ ସମୟର ଦୃଶ୍ୟ ଏବେ ମଧ୍ୟ ମୋ' ଆଖି ଆଗରେ ନାଚି ଯାଉଛି । ସେ ସ୍ଥାନ ଉପରେ ମୋର ଦୃଷ୍ଟି ପଡିଲେ, ମୋ ହୃଦୟ ଦୁଃଖରେ ଅଭିଭୂତ ହୋଇଯାଏ ।

ସେ ଏଠାରୁ କାଶୀ ଯାଇ ବିଶ୍ୱନାଥଙ୍କୁ ଦର୍ଶନ କରିସାରି କହିଥିଲେ— "ବର୍ତ୍ତମାନ ସୁଦ୍ଧା ମୁଁ ବିଶ୍ୱନାଥଙ୍କୁ ଅଧେ ଦର୍ଶନ କରିଛି, ମାଳବୀୟଜୀଙ୍କ ଦର୍ଶନ ପାଇବା ପରେ ମୋର ଶ୍ରୀ ବିଶ୍ୱନାଥଙ୍କ ଦର୍ଶନ ସମ୍ପୂର୍ଣ୍ଣ ହେବ । ସେ ବିଶ୍ୱବିଦ୍ୟାଳୟକୁ ଯାଇ ମାଳବୀୟଜୀଙ୍କ ପାଖକୁ ଗଲେ । କିନ୍ତୁ ସେତେବେଳେ ମାଳବୀୟଜୀ ବିଶ୍ରାମ କରୁଥିବାରୁ ଶୁଣି ଫେରି ଆସୁଥିଲେ । ଏହି ସମୟରେ ମାଳବୀୟଜୀ ଖବର ପାଇ ବାହାରକୁ ଆସିଗଲେ । ଦୁହେଁ ଦୁହିଙ୍କୁ ଦେଖି ପରସ୍ପରର ଆଲିଙ୍ଗନ ପାଶରେ ଆବଦ୍ଧ ହୋଇଯାଇ ପ୍ରେମାଶ୍ରୁପୂର୍ଣ୍ଣ ଅଶ୍ରୁ ବୁହାଇବାରେ ଲାଗିଲେ ।

ଓଡ଼ିଆ ବାବା କାଶୀରୁ ଫେରି ପୁଣି ଝୁସୀ ଆସିବେ ଏବଂ ଅନୁଷ୍ଠାନ ଶେଷ ପର୍ଯ୍ୟନ୍ତ ରହି 'ରାମ ନବମୀ' ବେଳକୁ ଅଯୋଧ୍ୟା ଫେରିଗଲେ । ସେ ସମୟରେ ମୁଁ ତାଙ୍କ ସହିତ ଅଯୋଧ୍ୟା ଯାଇଥିଲି । ସେତିକିବେଳେ କଂଗ୍ରେସର ଅଧିବେଶନ ଲକ୍ଷ୍ନୌରେ ଅନୁଷ୍ଠିତ ହେଉଥିଲା । ଆମ ଅନୁରୋଧରେ ଓଡ଼ିଆବାବା ଲକ୍ଷ୍ନୌରେ ଅବସ୍ଥାନ କଲେ । ସେଠାରେ ଗାନ୍ଧିଜୀଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ତାଙ୍କର ତ୍ୟାଗ ଓ ବୈରାଗ୍ୟ ଦେଖି ମହାତ୍ମାଜୀ ଖୁବ୍ ପ୍ରଭାବିତ ହୋଇ ତାଙ୍କୁ ଭିକ୍ଷା କରିବା-ଲାଗି ଉପଦେଶ ଦେଲେ । ମହାତ୍ମାଙ୍କ ଅନୁରୋଧରେ ସେ ଘରେ ଘରେ ଖାଡିଏ

ଘରୁଘି ଘର ବୁଲି ଭିକ୍ଷା କରୁଥିଲେ । ମୁଁ ଥରେ ଥରେ ତାଙ୍କ ସଙ୍ଗରେ ଯାଉଥିଲି । କିନ୍ତୁ ମନେ ମନେ ବିରକ୍ତ ହୋଇ ଯାଉଥିଲି । ସେ ଆଦୌ ବିରକ୍ତ ନହୋଇ ପ୍ରତ୍ୟେକ ଘରକୁ ଯାଇ ସେମାନଙ୍କ ଦୁଃଖ ସୁଖ ବୁଝୁଥିଲେ ଏବଂ ଇଚ୍ଛା ନଥିଲେ ମଧ୍ୟ, କେହି ଆଗ୍ରହ ପ୍ରକାଶ କଲେ ତାଙ୍କ ଘରେ ଭୋଜନ କରୁଥିଲେ । ସେଇଥିପାଇଁ ତାଙ୍କର ପେଟରୋଗ ଜାତ ହୋଇଥିଲା । ଯାହାହେଉ ପଛକେ, ସେ କାହାର ଅନୁରୋଧ ବା ଆଗ୍ରହ ଟାଳି ଦେଉ ନଥିଲେ ।

ମୁଁ ବୃନ୍ଦାବନରେ ରହି ଶ୍ରୀକୃଷ୍ଣଲୀଳା ସମ୍ବନ୍ଧରେ ଲେଖୁଥିବା ସମୟରେ ତାଙ୍କୁ ସେଠାକୁ ଆସିବା ଲାଗି ଅନୁରୋଧ କରିଥିଲି । ସେ ମୋ' ଅନୁରୋଧ ରକ୍ଷାକରି ବୃନ୍ଦାବନ ଆସିଲେ । ସେଠାରେ ଖଣ୍ଡିଏ କୁଡ଼ିଆ ନିର୍ମାଣ କରି ରହିବାପାଇଁ ତାଙ୍କୁ କେତେକ ଭକ୍ତ ଅନୁରୋଧ କରିଥିଲେ । ମୁଁ ତା'ର ବିରୋଧ କରିଥିଲେହେଁ ସେ ଅନ୍ୟମାନଙ୍କ ଅନୁରୋଧ ରକ୍ଷାକରି ସେଠାରେ ଖଣ୍ଡିଏ କୁଡ଼ିଆ ପ୍ରସ୍ତୁତ କରି ରହିଥିଲେ । ସେଠାରେ ରହିବା ସମୟରେ ତାଙ୍କର ଖ୍ୟାତି ଚତୁର୍ଦ୍ଦିଗରେ ବ୍ୟାପିଗଲା । ରାମଘାଟ, କର୍ଣ୍ଣବାସ, ଅନୁପ ସହର ତଥା ଅନ୍ୟାନ୍ୟ କେତେକ ସ୍ଥାନରେ ତାଙ୍କ ନାମାନୁସାରେ ଆଶ୍ରମ ପ୍ରତିଷ୍ଠିତ ହେଲା । ସେ ଯେଉଁ ସ୍ଥାନକୁ ଥରେ ଭଲ ପାଉଥିଲେ, ସେଠାରେ ବିନା ବାଛ ବିଚାରରେ ଅବସ୍ଥାନ କରୁଥିଲେ । ତାଙ୍କ ନିକଟକୁ ଭିନ୍ନ ଭିନ୍ନ ପ୍ରକୃତିର ଲୋକ ଆସୁଥିଲେ । ସବୁ ବିଷୟ ଜାଣି ସୁଦ୍ଧା ସେ ଆଦୌ ବିବ୍ରତ ହେଉନଥିଲେ ।

ପ୍ରକୃତରେ ଦେଖିବାକୁ ଗଲେ, ସଂସାର ହେଉଛି—ଅନିତ୍ୟ. ତା' ସତ୍ତ୍ୱେ ମହାତ୍ମାମାନେ ଯେଉଁ ସ୍ଥାନରେ ଅବସ୍ଥାନ କରୁଥିଲେ, ସେ ସ୍ଥାନକୁ ସୁଖମୟ କରିଦେଉଥିଲେ । ଯେତେହେଲେ କ'ଣ ହେବ, ଏ' ସଂସାର ଦୁଃଖର ଆଗର । ଯେତେ ଯାହା କଲେ ମଧ୍ୟ ଏଠାରୁ ଦୁଃଖ ଦୂର ହୋଇପାରିବ ନାହିଁ । କୁକୁର ଲାଙ୍ଗୁଳକୁ ବାରବର୍ଷ କାଳ ସିଧାକରି ବାନ୍ଧି ରଖିଲେ ମଧ୍ୟ ସେ କେବେହେଲେ ସିଧା ହୋଇପାରିବ ନାହିଁ । ଭଗବାନ୍ ଏ' ସଂସାରରେ ବହୁବାର ଅବତୀର୍ଣ୍ଣ ହୋଇଛନ୍ତି, କିନ୍ତୁ କେବେହେଲେ ସଂସାରରୁ ଦୁଃଖ ଦୂର ହୋଇନାହିଁ । କେବଳ ସେତିକି ନୁହେଁ, ଭଗବାନ୍ ମଧ୍ୟ ଏଠାରେ ଅବତୀର୍ଣ୍ଣ ହୋଇ ଅନେକ ଦୁଃଖ ଭୋଗିଛନ୍ତି । ରାମ, କୃଷ୍ଣ, ପରଶୁରାମ, ପୃଥୁ ଓ ବ୍ୟାସ ପ୍ରଭୃତି ଏହି ଧରାଧାମରେ ଅବତୀର୍ଣ୍ଣ ହୋଇ ମନୁଷ୍ୟମାନଙ୍କ ଉନ୍ନତି କରିବା ପାଇଁ ଅନେକ କଷ୍ଟ ସହ୍ୟ କରିଛନ୍ତି ; କିନ୍ତୁ କୃତଘ୍ନ ମାନବଜାତି ସେମାନଙ୍କ ନାମରେ ଅନେକ କଳଙ୍କ ରଟାଇଛି । ପ୍ରତ୍ୟେକ ଅବତାର କିଛି ନା କିଛି ଅଘଟଣରେ

ଦେହ ତ୍ୟାଗ କରିଛନ୍ତି । ସଂସାରୀ ଲୋକମାନେ ତାଙ୍କ କାର୍ଯ୍ୟକୁ ଭୁଲ୍ ଅବତାରମାନଙ୍କୁ ନିଜର ଶତ୍ରୁ ବୋଲି ମନେ କରିଛନ୍ତି ଏବଂ ସ୍ଥଳ ବିଶେଷରେ ସେମାନଙ୍କ ଉପରେ ଆକ୍ରମଣ ଚଳାଇଛନ୍ତି । ସେମାନେ ଲୀଳାବତାରୀ; ତେଣୁ ବିଭିନ୍ନ ଲୀଳା ରଚିବା ସଙ୍ଗେ ସଙ୍ଗେ ମାନବ ସମାଜକୁ ବହୁବିଧ ଶିକ୍ଷା ଦେଇ ଯାଇଛନ୍ତି । ଲୋକମାନେ ସେ ଶିକ୍ଷାକୁ ଭୁଲିଯାଇ ବୁଦ୍ଧ ଓ ଶଙ୍କରାଚାର୍ଯ୍ୟଙ୍କ ପରି ମହାମାନବଙ୍କୁ ମଧ୍ୟ ବିଷ ଦେବାକୁ ପଛାଇ ନାହାନ୍ତି । ଏବଂ ଆଗ୍ରହ ହତ ହରିବଂଶଙ୍କ ପରି ମହାତ୍ମାଙ୍କର ଶିରଚ୍ଛେଦ କରିଛନ୍ତି । ମହାତ୍ମା ପଲଟୁ ଦାସଙ୍କୁ ଲୋକମାନେ ଜାଳିପୋଡ଼ି ମାରି ଦେଇଛନ୍ତି ।

ଅଳ୍ପଜ୍ଞାନୀ ଲୋକମାନେ ମହାତ୍ମାମାନଙ୍କର ଏ'ପ୍ରକାର ମୃତ୍ୟୁର ରହସ୍ୟ ସମ୍ବନ୍ଧରେ ଆଦୌ କିଛି ଜାଣିପାରନ୍ତି ନାହିଁ । ମହାତ୍ମା ଗାନ୍ଧୀଙ୍କର ମୃତ୍ୟୁ ଯଦି ସ୍ୱାଭାବିକ ଭାବରେ ହୋଇଥାନ୍ତା, ତେବେ ସେ କେବେହେଲେ ଏତେ ପ୍ରସିଦ୍ଧି ଲାଭ କରି ନଥା'ନ୍ତେ । ଓଡ଼ିଆ ବାବା କହୁଥିଲେ—"ମୁଁ ଯେତେବେଳେ ମହାତ୍ମାଙ୍କ ମୃତ୍ୟୁ ସମ୍ବାଦ ପାଇଲି, ନିଜକୁ ଆୟତ୍ତ କରିପାରିଲି ନାହିଁ । ମୁଁ ପିଲାଙ୍କପରି ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲି ।" କିନ୍ତୁ କିଏ ଜାଣିଥିଲା ସେ ମଧ୍ୟ ନିତାନ୍ତ ରୋଗଗ୍ରସ୍ତ ହୋଇ ପଞ୍ଚଭୌତିକ ଶରୀର ତ୍ୟାଗ କରିଦେବେ ?

ଓଡ଼ିଆ ବାବା କେତେଦିନ ଧରି ବହୁମୂତ୍ର ରୋଗରେ ପୀଡ଼ିତ ଥିଲେ । ତାଙ୍କର ଗୋଟିଏ ଗୋଡ଼ ମଧ୍ୟ ଫୁଲି ଯାଇଥିଲା । ସେ ଚାଲିବାରେ କଷ୍ଟ ଅନୁଭବ କରୁଥିଲେ ମଧ୍ୟ ସେହି ଅବସ୍ଥାରେ ଅନେକ ସ୍ଥାନ ପରିଭ୍ରମଣ କରୁଥିଲେ । ଥରେ ଅର୍ଦ୍ଧକୁମ୍ଭମେଳା ଅବସରରେ ପୂଜ୍ୟ ଶ୍ରୀହରି ବାବା ପ୍ରୟାଗ ଆସିଥିଲେ । ସେଠାରୁ ସେ ଶ୍ରୀ ଶ୍ରୀ ଆନନ୍ଦମୟୀ ମାଆଙ୍କୁ ତାଙ୍କ ଆଶ୍ରମର ଉତ୍ସବ ଉଦ୍ଦେଶ୍ୟରେ ନେଇ ଯାଇଥିଲେ । କିନ୍ତୁ ଅସୁସ୍ଥ ଥିବାରୁ, ଓଡ଼ିଆ ବାବା ସେଥିରେ ଯୋଗଦେଇ ପାରିଲେ ନାହିଁ । ନିର୍ଦ୍ଦିଷ୍ଟ ଅବସରରେ ସେ ନ ପହଞ୍ଚିବାରୁ ଶ୍ରୀ ହରିବାବା ଆନନ୍ଦମୟୀ ମାଆଙ୍କୁ ନେଇ ବୃନ୍ଦାବନ ଯାତ୍ରା କଲେ ଏବଂ ଓଡ଼ିଆ ବାବାଙ୍କୁ ମୋଟରରେ ଯାଇ ଉତ୍ସବରେ ଯୋଗଦେବା ଲାଗି ଅନୁରୋଧ କଲେ । ତହୁଁ ସେ ମୋଟରରେ ଯାଇ ଉତ୍ସବରେ ଯୋଗଦେଲେ । ଜୀବନରେ ପ୍ରଥମ ଥର ପାଇଁ ସେ ଯାନରେ ବସି ଯାତ୍ରା କରିଥିଲେ ।

ଉତ୍ସବ ଶେଷ ହେବାପରେ ଶ୍ରୀହରିବାବା ମାତା ଆନନ୍ଦମୟୀଙ୍କ ସହିତ ନୈନିତାଲ, ଅଲମୋଡ଼ା ଆଦି ସ୍ଥାନକୁ ଯାତ୍ରାକଲେ ଏବଂ ଓଡ଼ିଆବାବା ବୃନ୍ଦାବନ ଫେରିଆସିଲେ ।

ଗ୍ରୀଷ୍ମଋତୁ ପରେ ଶ୍ରୀହରିବାବା କାଶୀ ବାଟ ଦେଇ ପୁରୀରେ ଉପସ୍ଥିତ ହେଲେ ଏବଂ ସେଠାରେ ଏକବର୍ଷ ଅବସ୍ଥାନ କରିବା ପାଇଁ ଇଚ୍ଛା ପ୍ରକାଶ କଲେ । ସେହି ସମସ୍ତ ମଧ୍ୟରେ ତାଙ୍କୁ ଓଡ଼ିଆ ବାବା କେତେଥର ଡକାଇଥିଲେ ମଧ୍ଧ ସେ ଯାଇ ନପାରି ଖବର ପଠାଇଲେ-"ମୁଁ ଏଠାରେ ଏକବର୍ଷ ରହିବାପାଇଁ ସଙ୍କଳ୍ପ କରିଛି, ତେଣୁ ଯାଇପାରୁ ନାହିଁ ।"

କାର୍ତ୍ତିକ ମାସରେ ସେ ଶୁଣିବାକୁ ପାଇଲେ ଯେ ଓଡ଼ିଆବାବା ଖୁବ୍ ଅସୁସ୍ଥ ହୋଇପଡ଼ିଛନ୍ତି । ତା'ପରେ ସେ ଆଉ ପୁରୀରେ ରହିପାରିଲେ ନାହିଁ । ସେ ମାର୍ଗଶିରରେ ମାଆଙ୍କୁ ସାଥିରେ ନେଇ ବୃନ୍ଦାବନ ଚାଲିଗଲେ । ସେଠାକୁ ଗିବାପରେ ସ୍ଥିରହେଲା ଯେ, ଓଡ଼ିଆ ବାବାଙ୍କ ସମେତ ସମସ୍ତେ ମିଶି ଦିଲ୍ଲୀ, କୁରୁକ୍ଷେତ୍ର, ଖନ୍ନା, ହୋସିଆରପୁର ପ୍ରଭୃତି ସ୍ଥାନ ବୁଲି କୋଟକାଙ୍ଗଡ଼ା ଓ ଜ୍ୱାଳାମୁଖୀ ଆଦି ସ୍ଥାନକୁ ମୋଟରରେ ଯିବେ, ଏବଂ ସେଠାରୁ ଫେରି ଦୋଲବେଳକୁ ବୃନ୍ଦାବନରେ ପହଞ୍ଚିବେ । ସେହି ନିଷ୍ପତ୍ତି ଅନୁସାରେ ସେମାନେ ଯାତ୍ରା ଆରମ୍ଭ କଲେ ଏବଂ ଅଧିବାଟରୁ ଦୋଲ ବେଳକୁ ଓଡ଼ିଆ ବାବାଙ୍କ ପାଇଁ ବୃନ୍ଦାବନ ଫେରି ଆସିଲେ ଏବଂ ସେହିଠାରେ ହୋଲି ଉତ୍ସବ ପାଳନ କଲେ ।

ନବସମ୍ବତ୍ସର ଉତ୍ସବରେ ଶ୍ରୀହରିବାବାଙ୍କ ଉପସ୍ଥିତ ପାଇଁ ମୁଁ ତାଙ୍କୁ ଅନୁରୋଧ କରି ପତ୍ର ଲେଖିଲି । କିନ୍ତୁ ସେ ଉତ୍ତର ଦେଇ ଲେଖିଲେ—"ମୁଁ ତୁମର କାମପାଇଁ ବୃନ୍ଦାବନରେ ରହିଛି । ଓଡ଼ିଆବାବାଙ୍କୁ ନେଇ ଚୈତ୍ର ଉତ୍ସବରେ ଯୋଗଦେବି । ସେତିକବେଳେ ସେଠାରେ ଅଧିକ ଦିନ ଆମେ ରହିବୁ ।" ଏ'ସମ୍ବାଦ ପାଇ ମୁଁ ବିଶେଷ ଉତ୍ସାହିତ ହୋଇ ଚୈତ୍ର ଉତ୍ସବକୁ ଅଧିକ ଆଡ଼ମ୍ବରସହକାରେ ପାଳନ କରିବାପାଇଁ ଆୟୋଜନରେ ଲାଗିପଡ଼ିଲି । ପରେ ଖବର ମିଳିଲା ଯେ, ଓଡ଼ିଆବାବା ଖୁବ୍ ଅସୁସ୍ଥ ହୋଇଥିବାରୁ, ସେ ଉତ୍ସବରେ ଯୋଗଦେଇ ପାରିବେନାହିଁ, କେବଳ ଶ୍ରୀ ହରିବାବା ଆସିବେ । ଆମେମାନେ ଅତ୍ୟନ୍ତ ଉତ୍ସାହରେ ଉତ୍ସବର ଆୟୋଜନରେ ଲାଗି ପଡ଼ିଥିଲୁ, କିନ୍ତୁ ତାଙ୍କ ସ୍ୱାସ୍ଥ୍ୟ ସମ୍ବନ୍ଧରେ ଖବର ତାଙ୍କୁ ଆସିବା ପାଇଁ ବିଶେଷ ଅନୁରୋଧ କରିବା ଲାଗି ଉଚିତ ମନେ କଲୁନାହିଁ ।

ସମ୍ବତ୍ ୨୦୦୫ ବା ୧୯୦୮ ଚୈତ୍ର ଶ୍ରୀକୃଷ୍ଣ ତ୍ରୟୋଦଶୀ ରବିବାର ଦିନ ଓଡ଼ିଆ ବାବାଙ୍କ ଆଶ୍ରମରୁ ଶ୍ରୀ ହରିବାବା ପୁରୀ ଅଭିମୁଖେ ଯାତ୍ରାକଲେ । ଓଡ଼ିଆ ବାବା ତାଙ୍କୁ ଛାଡ଼ିବା ପାଇଁ ମୋଟର ପର୍ଯ୍ୟନ୍ତ ଆସିଥିଲେ ଏବଂ ପ୍ରସାଦ ପଠାଇ ସ୍ନେହଦ୍ରବିତ ହୃଦୟରେ ତାଙ୍କୁ ବିଦାୟ ଦେଇଥିଲେ ।

ଶ୍ରୀ ହରିବାବା ସୋମବାର ଦିନ ଝୁଁସୀରେ ପହଞ୍ଚିଥିଲେ । କିନ୍ତୁ ମଙ୍ଗଳବାର ଦିନ ତାରାବାର୍ତ୍ତାରେ ଓଡ଼ିଆବାବାଙ୍କ ମୃତ୍ୟୁ ସମ୍ବନ୍ଧରେ ଖବର ମିଳିଲା । ଏ ସମ୍ବାଦ ପାଇଁ ଆମେମାନେ ଅତ୍ୟନ୍ତ ଚିନ୍ତିତ ହୋଇ ନାନାପ୍ରକାର ଆଶଙ୍କା ପ୍ରକାଶ କଲୁ । ବୁଧବାର ଦିନ 'ଅମୃତ ବଜାର' ପତ୍ରିକାରୁ ଖବର ଜାଣିଲୁ ଯେ, ତାଙ୍କର କେହି ଜଣେ ଶିଷ୍ୟ ତାଙ୍କୁ ହତ୍ୟା କରିଛି । ଏ ଖବରର ସତ୍ୟତା ଜାଣିବା ପାଇଁ ଆମେ ଜଣେ ଲୋକକୁ ପଠାଇଲୁ । ସେ ମଧ୍ୟ ଖବର ଦେଲେ ଯେ, ଘଟଣା ସତ୍ୟ ! ପାଗଳ ସ୍ୱଭାବର ଜଣେ ବ୍ୟକ୍ତି ତାଙ୍କ କଣ୍ଠଦେଶରେ ଆଘାତ କରିବାରୁ ତାଙ୍କର ମୃତ୍ୟୁ ହୋଇଛି । ସେଠାକାର ଶିଷ୍ୟମଣ୍ଡଳୀ ଶ୍ରୀହରିବାବାଙ୍କୁ ଶୀଘ୍ର ବୃନ୍ଦାବନ ଆସିବା ଲାଗି ଅନୁରୋଧ କରୁଥିବାର ଖବର ପାଇ, ଶ୍ରୀହରିବାବା ଚୈତ୍ର ଶୁକ୍ଳ ତୃତୀୟା ଶୁକ୍ରବାର ଦିନ ଝୁଁସୀରୁ ବୃନ୍ଦାବନ ଯାତ୍ରାକଲେ ।

ଏହି ଘଟଣା ଫଳରେ ମୁଁ ଖୁବ୍ ବ୍ୟସ୍ତ ହୋଇପଡ଼ିଲି । ଭାବିଥିଲି—ତାଙ୍କ ଶରୀର ସୁସ୍ଥ ହୋଇଗଲେ ସେ ପୁଣି ଆସି ଆମ ଗହଣରେ ପହଞ୍ଚିବେ । କିନ୍ତୁ ଏ ଦୁର୍ଘଟଣା ଫଳରେ ମୋ' ମନର ଉତ୍ସାହ ମଳିନ ପଡ଼ିଗଲା । ମୁଁ ମଧ୍ୟ ଉତ୍ସବ ମଧ୍ୟରେ ଶ୍ରୀହରିବାବାଙ୍କ ସହିତ ବୃନ୍ଦାବନ ଯିବାଲାଗି ତାଙ୍କ ଅନୁମତି ପ୍ରାର୍ଥନା କଲି; କିନ୍ତୁ ସେ ମୋତେ ଉପଦେଶ ଦେଇ କହିଲେ—"ତୁମେ ଯାଇ କ'ଣ ଆଉ ଅଧିକ କରିପାରିବ ? ଯାହା ହେବାର କଥା ହୋଇଗଲାଣି, ଏଣିକି ଯାହା କିଛି କରିବ, ସବୁ କିଛି ସାଂସାରିକ ଶିଷ୍ଟାଚାର । ତୁମ ସଙ୍କଳ୍ପ ଅନୁଯାୟୀ ତୁମେ ଏହିଠାରେ ରୁହ ।" ମୁଁ ତାଙ୍କ ଉପଦେଶ ଶୁଣି ନୀରବ ରହିଲି, କିନ୍ତୁ ମୋ' ମନ ମଧ୍ୟରେ ତାଙ୍କର ସ୍ମୃତି ଚିରଜାଗ୍ରତ ହୋଇରହିଲା ।

ତା'ପରେ ମୁଁ ପଣ୍ଡିତ ବାଗୀଶଜୀ ଶାସ୍ତ୍ରୀଙ୍କଠାରୁ ଶୁଣିଲି ଯେ, ଓଡ଼ିଆବାବା ଶେଷ ପର୍ଯ୍ୟନ୍ତ ମୋ' ବିଷୟରେ ଚର୍ଚ୍ଚା କରୁଥିଲେ ଏବଂ ସେହି ଆଲୋଚନାରେ ନିମଗ୍ନ ଥିବା ସମୟରେ ପ୍ରାଣତ୍ୟାଗ କରିଥିଲେ । ଆଉ ମୁଁ ନିଜକୁ ଆୟତ୍ତ କରିପାରିଲିନାହିଁ । ଶନିବାର ଦିନ ସମସ୍ତ ଦିନଚର୍ଯ୍ୟାରୁ ନିବୃତ୍ତ ହୋଇ, ମୁଁ ଉଡ଼ାଜାହାଜରେ ଦିଲ୍ଲୀ ଯାଇ ସେଠାରୁ ବାବୁ ଆଦିତ୍ୟ ନାରାୟଣଙ୍କ ସହିତ ମୋଟରରେ ଯାଇ ସନ୍ଧ୍ୟା ସାତଟାରେ ବୃନ୍ଦାବନସ୍ଥିତ ଓଡ଼ିଆବାବାଙ୍କ ଆଶ୍ରମରେ ପହଞ୍ଚିଲି ।

ମୁଁ ଅନେକଥର ସେ ଆଶ୍ରମକୁ ଯାଇଛି, କିନ୍ତୁ ଏଥର କାହିଁକି କେଜାଣି ସେହି ଆଶ୍ରମକୁ ଯିବାଲାଗି ମୋ' ମନରେ ଭୟଜାତ ହୋଇଥିଲା । ମୋଟର ଯେତିକି ଯେତିକି ଆଗେଇ ଚାଲିଲା, ମୋ' ମନର ଉଦ୍‌ବେଗ ସେତିକି ବୃଦ୍ଧି ପାଇବାକୁ ଲାଗିଲା । ସେଠାରେ ପହଞ୍ଚି ମୁଁ ଲକ୍ଷ୍ୟ କଲି ଯେ, ଆଶ୍ରମର ଶ୍ରୀ ନଷ୍ଟ ହୋଇଯାଇଛି

ଏବଂ ସେଠାରେ ଏକ ଉଦାସୀନତାର ବାତାବରଣ ଘୃଇଯାଇଛି । ମୁଁ ସେଠାରେ ପହଞ୍ଚି ଯାଇ ରାମମନ୍ଦିରରେ ବସିପଡ଼ି କାନ୍ଦି କାନ୍ଦି ହୋଇ କାନ୍ଦିବାକୁ ଲାଗିଲି । ମୋ' ରୋଦନ ଶୁଣି ଶ୍ରୀହରିବାବା, ସ୍ୱାମୀ ଅଖଣ୍ଡାନନ୍ଦଜୀ, ସ୍ୱାମୀ କୃଷ୍ଣାନନ୍ଦଜୀ, ବାବୁ ରାମସହାୟଜୀ, ପଣ୍ଡିତ ସୁନ୍ଦରଲାଲଜୀ ତଥା ଅନ୍ୟାନ୍ୟ ଭକ୍ତବୃନ୍ଦ ଆସି ସେଠାରେ ଉପସ୍ଥିତ ହୋଇଗଲେ ।

ମୁଁ ସେଠାରେ ଓଡ଼ିଆବାବାଙ୍କ ସମ୍ବନ୍ଧରେ ଯାହା ଲୋକମାନଙ୍କଠାରୁ ଶୁଣିଲି, ସେଥିରେ ମୋ' ହୃଦୟ ଦ୍ରବିତ ହୋଇଗଲା ।

ଚତୁର୍ଦ୍ଦଶୀ ସୋମବାର ଦିନ ମଧ୍ୟାହ୍ନ ପରେ ସେ ନିତ୍ୟ ନିୟମାନୁସାରେ 'ସତ୍ସଙ୍ଗ ଭବନ'ରେ ଉପସ୍ଥିତ ହେଲେ । ସେଠାରେ ଆହୁରି ଲୋକ ବସିଥିଲେ । ଆନନ୍ଦଜୀ 'ଭାଗବତ କଥା' ପାଠକରିବା ଲାଗି ଆସି ପହଞ୍ଚିବାମାତ୍ରେ ସେ ତାଙ୍କୁ ଝୁସୀ ଆଶ୍ରମର ଉତ୍ସବ ସମ୍ବନ୍ଧରେ ଅନେକ କଥା ପଚାରି ବୁଝିଲେ । ଶେଷରେ ସେ କହିଲେ—"ମୁଁ ଯାଇପାରି ନ ଥିବାରୁ ସେ ଦୁଃଖିତ ହୋଇନାହାନ୍ତି ତ ?" ତାଙ୍କୁ ଉତ୍ତର ଦେଇ କହିଲେ ଆନନ୍ଦଜୀ—"ଶ୍ରୀହରିବାବା, ମାତା ଆନନ୍ଦମୟୀ ପ୍ରଭୃତି ସେଠାରେ ପହଞ୍ଚିଗଲେଣି । ଶ୍ରୀରାମଦାସ ଶାସ୍ତ୍ରୀଙ୍କର ମଧ୍ୟ ଯିବାର ଅଛି । ଉତ୍ସବ ଅତ୍ୟନ୍ତ ଆନନ୍ଦସହକାରେ ଚାଲିଛି । ଏଠାରୁ ନିତ୍ୟାନନ୍ଦଜୀ ମଧ୍ୟ ଯାଇଛନ୍ତି; ଆପଣ ସେଥିଲାଗି ଚିନ୍ତା କରନ୍ତୁ ନାହିଁ ।"

ତା'ପରେ 'ଭାଗବତ କଥା'ର ସ୍କନ୍ଧ ଖଣ୍ଡ ପାଠ ଆରମ୍ଭ ହେଲା । ପ୍ରହ୍ଲାଦଙ୍କ ସମ୍ବନ୍ଧରେ ଅଧ୍ୟାୟ ପାଠ ଚାଲିଥିଲା । ସେହି ଅଧ୍ୟାୟଟି ଶେଷ ହେବାକୁ ଆଉ ମାତ୍ର ଗୋଟିଏ ପୃଷ୍ଠା ଥିଲା, ଏହି ସମୟରେ ଗୋଟିଏ ପାଗଳ ବ୍ୟକ୍ତି କମ୍ବଳ ଘୋଡ଼ହୋଇ ଖଣ୍ଡିଏ କଟୁରି ଲୁଚାଇ ଧରି ତାଙ୍କ ପାଖରେ ପହଞ୍ଚିଲା । ମହାରାଜ ଆଖିବୁଜି ଧ୍ୟାନମଗ୍ନ ହୋଇ କଥା ଶୁଣୁଥିଲେ । ଏହି ସମୟରେ ସେ ବ୍ୟକ୍ତି ଓଡ଼ିଆବାବାଙ୍କ ମୁଣ୍ଡରେ ଶୀଘ୍ର ଶୀଘ୍ର ଦି'ଚାରି ପାହାର କସିଦେଲା । ହଠାତ୍ ମହାରାଜ ହାତ ଟେକି ଦେବାରୁ ତାଙ୍କ ଆଙ୍ଗୁଳିଗୁଡ଼ିକ କଟିଗଲା । ଦୁର୍ଘଟଣାଟି ଏପରି ଆକସ୍ମିକ ଭାବରେ ଘଟିଗଲା ଯେ, ହତ୍ୟାକାରୀକୁ ହଠାତ୍ କେହି ଅଟକାଇ ପାରିଲେ ନାହିଁ । ଜଣେ ବୁଢ଼ା ଉଠିଯାଇ ହତ୍ୟାକାରୀକୁ ଧରିପକାଇଲେ । ତା'ପରେ ସମସ୍ତେ ଉଠିଯାଇ ସେ ଲୋକକୁ ଏତେ ପ୍ରହାର କଲେ ଯେ, ତତ୍କ୍ଷଣାତ୍ ସେ ଲୋକର ମୃତ୍ୟୁ ସେହିଠାରେ ହୋଇଗଲା । ମହାରାଜଙ୍କ ମୁଣ୍ଡରୁ ରକ୍ତର ସୁଅ ଛୁଟୁଥିଲା । ତାଙ୍କ ଶରୀରର ବସ୍ତ୍ର ରକ୍ତ ରଞ୍ଜିତ ହୋଇଯାଇଥିଲା । ଏହା ଶୁଣିବା ପରେ ମୁଁ ଭାବିଲି—'ହାୟରେ ଦଇବ, ଯେଉଁ

ଶିରରେ ଗଦାଗଦା ଫୁଲ ପଡ଼ୁଥିଲା, ତା'ର ଉପରେ ନର୍ଦ୍ଦୟ ପ୍ରହାର ପଡ଼ିଲା ? ଯେଉଁ ଭୂମି ନିତ୍ୟ ହରିକଥା କୀର୍ତ୍ତନ, ରାମଲୀଳା ଓ ରାସଲୀଳା ଆଦିରେ ଅନୁରଣିତ ହେଉଥିଲା ଏବଂ ଚନ୍ଦନ, କର୍ପୂର, ଗୋଲାପ ଜଳ ଓ ଅତରରେ ସିକ୍ତ ହେଉଥିଲା, ସେହି ଭୂମି ମହାରାଜଙ୍କ ରକ୍ତରେ ରଞ୍ଜିତ ହୋଇଗଲା ।'

ଓଡ଼ିଆ ବାବାଙ୍କ ଅନ୍ତରଙ୍ଗ ବ୍ୟକ୍ତିଙ୍କଠାରୁ ଶୁଣିଲି ଯେ, ସେ କହୁଥିଲେ— "ମୁଁ କ'ଣ ଏମିତି ସହଜରେ ମରିବି କି ? ରକ୍ତର ନଦୀ ପ୍ରବାହିତ କରାଇ ମରିବି ! ମୁଁ କହୁଛି—ମୋ' କଥା କେହି ଶୁଣୁନାହାଁନ୍ତି, କାମିନୀ କାଞ୍ଚନର ମୋହରେ ସମସ୍ତେ ଧାଇଁଛ, ତୁମରମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବାଲାଗି ମୋତେ କିଛି କରିବାକୁ ପଡ଼ିବ ! ତାହା ଫଳରେ ହୁଏତ ତୁମମାନଙ୍କୁ ଶିକ୍ଷା ମିଳିପାରେ !"

ପ୍ରକୃତ ଘଟଣା ହେଉଛି—ମହାପୁରୁଷଙ୍କ ଜୀବନର କାର୍ଯ୍ୟାବଳୀରୁ ଅନେକ କିଛି ଶିକ୍ଷା ମିଳିଥାଏ । ସେମାନେ ପ୍ରାଣୀମାନଙ୍କ ଉଦ୍ଧାର ନିମିତ୍ତ ନିଜେ ଅନେକ କଷ୍ଟ ସହନ କରନ୍ତି । ପ୍ରଭୁ ଯୀଶୁଖ୍ରୀଷ୍ଟ ହସି ହସି ଶୂଳୀରେ ବସିପଡ଼ିଲେ । ତାଙ୍କର ବଳିଦାନ ଫଳରେ ଖ୍ରୀଷ୍ଟଧର୍ମର ମହାନ ଉଦ୍ଦେଶ୍ୟ ସାଧିତ ହେଲା । ମହାତ୍ମାଗାନ୍ଧୀଙ୍କୁ ତାଙ୍କର ଦେଶବାସୀ ହତ୍ୟାକଲେ । ଦେଵୀ ଜୋଆନ୍‌ଙ୍କୁ ତାଙ୍କର ଲୋକମାନେ ପୋଡ଼ି ପକାଇଥିଲେ । ଏହାହିଁ ହେଉଛି—ସାଂସାରିକ ଭାବ । ସାଂସାରିକ ପ୍ରାଣୀ-ମାନେ ତାଙ୍କର ପରମହିତୈଷୀ ମହାପୁରୁଷମାନଙ୍କୁ ଏହିପରି ଭାବରେ ପାରିତୋ-ଷିକ ଅର୍ପଣ କରିଛନ୍ତି !

ମହାପୁରୁଷମାନଙ୍କ ଜୀବନର ଦୁଇଟି ଭାଗ ରହିଛି—ହେୟ ଓ ଉପାଦେୟ । ଲୌକିକ ଦୃଷ୍ଟିରେ ଯଦି ତାଙ୍କ ଜୀବନରେ କିଛି ଧର୍ମବିରୋଧି କାର୍ଯ୍ୟ ଦେଖାଯାଏ, ତାହା ଆଦୌ ଅନୁକରଣୀୟ ନୁହେଁ ଏବଂ ଆଗ୍ରର ତଥା ଧର୍ମ ଅନୁମୋଦିତ ଯେଉଁ କାର୍ଯ୍ୟ ତାଙ୍କର କାର୍ଯ୍ୟକ୍ରମରୁ ସୂଚିତ ହୁଏ, ତାହା ଉପାଦେୟ ବୋଲି ମନେକରି ଗ୍ରହଣ କରାଯିବା ଉଚିତ । ଏ' ସମ୍ବନ୍ଧରେ ଶ୍ରୀମଦ୍‌ ଭାଗବତରେ ସ୍ପଷ୍ଟ କୁହାଯାଇଛି—

"ଧର୍ମୋ ବ୍ୟତିକ୍ରମୋ ଦୃଷ୍ଟ ଈଶ୍ୱରାଣାଂ ଚ ସାହସଂ
ତେଜୀୟସାଂ ନ ଦୋଷାୟ ବହ୍ନେଃ ସର୍ବଭୁଜୋ ଯଥା ।।
ନୈତତ୍ ସମାଚରେଦ୍ ଜାତୁ ମନସା ପି ହ୍ୟନୀଶ୍ୱରଃ ।
ବିନଶ୍ୟତ୍ୟାଚରନ୍ ମୌଢ୍ୟାଦ୍‌ ଯଥା ରୁଦ୍ରୋଽବ୍ଧିଜଂ ବିଷମ୍ ।।

( ଶ୍ରୀମଦ୍‌ ଭାଗବତ ୧୦ । ୩୩ । ୩୦, ୩୧ )

ଅର୍ଥାତ୍—ସମର୍ଥ ବ୍ୟକ୍ତିମାନଙ୍କ ଜୀବନରେ ଯେଉଁ ଧର୍ମ ବ୍ୟତିକ୍ରମ କାର୍ଯ୍ୟକ୍ରମ ଦେଖାଯାଏ, ତାହା ସେମାନଙ୍କର ସାହସିକ କାର୍ଯ୍ୟ ବୋଲି ଗ୍ରହଣ କରାଯାଏ । ତାହା ସେମାନଙ୍କର ଆଦୌ ଦୋଷ ନୁହେଁ; କାରଣ ଅଗ୍ନି ଯେପରି ସବୁକିଛୁ ଦହନ କରିପାରେ, ସେମାନେ ମଧ୍ୟ ଅନୁରୂପ କାର୍ଯ୍ୟ କରିପାରନ୍ତି ।

ଯେଉଁମାନେ ସମର୍ଥ ନୁହନ୍ତି, ସେମାନେ ତା'ର ଅନୁକରଣ କରିବା ଉଚିତ ନୁହେଁ । ମୂର୍ଖତାବଶତଃ ଯଦି କେହି ତା'ର ଅନୁକରଣ କରେ, ତେବେ ସେ ମୃତ୍ୟୁମୁଖରେ ପତିତ ହୋଇଥାଏ । କାରଣ କାଳକୂଟ ବିଷକୁ ଶିବ ପାନ କରିପାରନ୍ତି ଅନ୍ୟ କେହି ନୁହେଁ ।

ଋଷି ମୁନିମାନେ ହେଉଛନ୍ତି—ସର୍ବଜ୍ଞ ତଥା ବ୍ରହ୍ମବାଦୀ । ସେମାନେ ନିଜର ଶକ୍ତି ବଳରେ ଯାହା କରିପାରନ୍ତି, ତାହା ସାଧାରଣଙ୍କ ପକ୍ଷରେ ସମ୍ଭବ ନୁହେଁ । ଯଦି ସାମାଜିକତା ଦୃଷ୍ଟିରୁ ତାଙ୍କ ଜୀବନର କୌଣସି କାର୍ଯ୍ୟ ଅନୁଚିତ ବୋଧ ହୁଏ, ତେବେ ତାହା ଆଦୌ ଅନୁକରଣୀୟ ନୁହେଁ । ସେଥିଲାଗି କୁହାଯାଇଛି—

"ଯେଽସ୍ମାକଂ ସୁଚରିତାନି ତାନି ତ୍ୱୟୋ ପାସିତବ୍ୟାନି ନେତରାଣି ।"

ଅର୍ଥାତ୍—ଯାହା ଆମର ସୁଚରିତ ତାହାକୁ ତୁମେ ଅନୁକରଣ କର, ଅନ୍ୟଗୁଡ଼ିକ ଗ୍ରହଣ କରନାହିଁ ।

ମହାରାଜ ଓଡ଼ିଆବାବା ସାରାଜୀବନ ପରୋପକାର କରିବାରେ ବିତାଇ ଦେଇଥିଲେ । ନିରାଶ୍ରିତର ଆଶ୍ରୟ, ଦୀନଜନତାର ବନ୍ଧୁ, ମୁକ୍ତିକାମୀର ସର୍ବସ୍ୱ ଥିଲେ ଓଡ଼ିଆବାବା । ତାଙ୍କ ଆଶ୍ରମରେ ସଦାସର୍ବଦା କିଛି ନା କିଛି ଅନୁଷ୍ଠାନ ଚାଲିଥିଲା । ବିଭିନ୍ନ ସ୍ୱଭାବର ବ୍ୟକ୍ତି ତାଙ୍କ ସାନ୍ନିଧ୍ୟ ଲାଭ କରିବାର ସୁଯୋଗ ପାଉଥିଲେ । ପରସ୍ପର ବିରୋଧୀ ବ୍ୟକ୍ତିମାନେ ମଧ୍ୟ ତାଙ୍କ ପାଖରେ ରହିପାରୁଥିଲେ । ସେ ଥିଲେ—ଅତ୍ୟନ୍ତ ସହିଷ୍ଣୁ, ଧୈର୍ଯ୍ୟବାନ ଓ ନିର୍ଭୀକ ବ୍ୟକ୍ତି । ସାରାଜୀବନ ସେ ପରମାର୍ଥରେ ବିତାଇ ଦେଇଥିଲେ । ମୃତ୍ୟୁବେଳକୁ ତାଙ୍କର ବୟସ ପ୍ରାୟ ଅଶୀ ବର୍ଷ ହୋଇଥିଲା । ତଥାପି ଜ୍ଞାନାର୍ଜନର ପିପାସା ତାଙ୍କ ମନରେ ବଳବତୀ ହୋଇଥିଲା । ସେ ପ୍ରତିଦିନ କିଛି ନା କିଛି ନୂଆ କଥା, ନୂତନ ତଥ୍ୟ ସମ୍ବନ୍ଧରେ ଜ୍ଞାନାର୍ଜନ କରୁଥିଲେ । ସେ ବହୁ ଶ୍ଳୋକ କଣ୍ଠସ୍ଥ କରିଥିଲେ । ମୁଁ ତାଙ୍କ ନିକଟରେ ପହଞ୍ଚିଗଲେ, ସେ ସଙ୍ଗେ ସଙ୍ଗେ ତାଙ୍କ ଡାଏରୀଟିକୁ ମୋତେ ବଢ଼ାଇ ଦେଇ କହୁଥିଲେ—"ତୁମେ କି ଭଲ ଭଲ ଶ୍ଳୋକ ଜାଣିଛ, ଏଥିରେ ଲେଖିଦିଅ ।" ସେ ଶ୍ଳୋକଗୁଡ଼ିକ ସୁନ୍ଦର ଭାବରେ ଆବୃତ

କରୁଥିଲେ । ଭକ୍ତମାନେ ତାଙ୍କ 'ଜୀବନ ଚରିତ' ଲେଖିଛନ୍ତି । ମୁଁ ଏଠାରେ କେବଳ ମାତ୍ର ତାଙ୍କୁ ସ୍ମରଣ କରୁଛି । ସେ ପ୍ରଥମେ 'ଭାଗବତ କଥା' ଲେଖିବାରେ ଉତ୍ସାହିତ ହୋଇଛି । 'ଭାଗବତ କଥା'ର ନୂତନ ଖଣ୍ଡ ପ୍ରକାଶ ପାଇବା ମାତ୍ରେ ମୁଁ ସର୍ବପ୍ରଥମେ ଓଡ଼ିଆବାବା ଓ ଶ୍ରୀହରି ବାବାଙ୍କ ନିକଟକୁ ପଠାଇ ଦେଉଥିଲି । ତାଙ୍କପରି ମହା-ପୁରୁଷ ମୋ' ପୁସ୍ତକଟିକୁ ଆନନ୍ଦରେ ସହିତ ଶୁଣୁଛନ୍ତି, ଏହା ମୋ ପକ୍ଷରେ କମ୍ ସୌଭାଗ୍ୟର ବିଷୟ ନୁହେଁ । ଏହା ଫଳରେ ମୁଁ ନୂତନ ଭାଗ ଲେଖିବାରେ ଆଗ୍ରହୀ ହୋଇ ଉଠୁଥିଲି, ଏଥିରେ ସନ୍ଦେହ ନାହିଁ । ମୋର ଇଚ୍ଛା—ଶୀଘ୍ର ମୁଁ 'ଭାଗବତ କଥା' ଶେଷ କରିଦେବି । ଯେବେ ସୁବିଧା ହେବ ଛପାଯିବ । ମୁଁ ଆଜିକାଲି ଦଶମ-ସ୍କନ୍ଧର ପୂର୍ବାର୍ଦ୍ଧରୁ ଅକ୍ରୂରଙ୍କ ଗୋପପୁର ଆଗମନ ପ୍ରସଙ୍ଗ ଲେଖୁଛି । ପୁସ୍ତକଟିକୁ ସମ୍ପୂର୍ଣ୍ଣ କରିବାର ବାସନା ମୋତେ ଏ' କାର୍ଯ୍ୟରେ ବାନ୍ଧି ରଖିଛି । ପୁସ୍ତକ ପ୍ରକାଶନ ସମ୍ବନ୍ଧରେ ମୋତେ ଯେଉଁ ପ୍ରକାର ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଛି, ତାହା ପାଠକ ପାଠିକାମାନେ ଆଦୌ ଅନୁମାନ କରି ପାରିବେ ନାହିଁ । ଲୋକମାନେ ଅନେକ ପ୍ରକାର ଅଭିଯୋଗ କରି ପତ୍ର ଲେଖୁଛନ୍ତି । ମୁଁ ସେମାନଙ୍କୁ ଗୋଟିଏ ମାତ୍ର ଉତ୍ତର ଦେଉଛି—'ସଙ୍କୀର୍ତ୍ତନ ଭବନ'ର ଯେଉଁସବୁ ଅସୁବିଧାକୁ ଏଡ଼ାଇ ମୁଁ 'ଭାଗବତକଥା' ଲେଖିପାରୁଛି, ତାହାହିଁ ବଡ଼କଥା । ଯଦି ଏହି ପୁସ୍ତକର ଦୁଇ ତିନି ହଜାର ନିୟମିତ ଗ୍ରାହକ ହୋଇ ପାରନ୍ତେ । କିମ୍ବା ଏହାର ପ୍ରକାଶନ ପାଇଁ ଯେତିକି କ୍ଷତି ସହିବାକୁ ପଡ଼ୁଛି, ତାକୁ ଯଦି କେହି ବହନ କରନ୍ତା, ତେବେ ଏହା ସୁଚାରୁ-ରୂପେ ପ୍ରକାଶ ପାଇ ପାରନ୍ତା।

'ଭାଗବତ କଥା'ରେ ଭାଗବତ୍ ପ୍ରେମୀମାନଙ୍କ ପ୍ରସଙ୍ଗ ରହିଛି । ଓଡ଼ିଆବାବା ଜଣେ ଭାଗବତ୍ ପରାୟଣ ସାଧୁ ମହାତ୍ମା ଥିଲେ; ତେଣୁ ତାଙ୍କୁ ସ୍ମରଣ କରି ମୁଁ ପ୍ରାକ କଥନରେ ତାଙ୍କର ବିଷୟରେ କିଛି ଲେଖିଛି । ମୁଁ ତାଙ୍କ ଶ୍ରୀଚରଣରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ମୋର ବକ୍ତବ୍ୟ ଶେଷ କରୁଛି ।

ସଙ୍କୀର୍ତ୍ତନ ଭବନ, ଝୁସୀ

ପ୍ରୟାଗ, ପ୍ରଭୁଦତ୍ତ

ଶ୍ରୀରାମ ନବମୀ, ଶୁକ୍ରବାର, ସମ୍ବତ୍ ୨୦୦୬. ( ୧୯୪୯ )

## ମୋହିନୀ ଚରିତର ପରିସମାପ୍ତି

'ଅସତ୍‌ବିଷୟ୍ୟ ମଙ୍ଘ୍ରିଂ ଭାବଗମ୍ୟଂ ପ୍ରପନ୍ନା
ନମୃତ ମମର ବର୍ଯ୍ୟ ନାଶୟ୍ୟସ୍ତି ସିନ୍ଧୁମଥ୍ୟମ୍‌ ।
କପଟଯୁବତୀବେଶୋ ମୋହୟନ୍‌ ଯଃ ସୁରାରୀଂ—
ସ୍ତମହମୁପ ସୃତାନାଂ କାମପୂରଂ ନତୋଽସ୍ମି ॥

(ଭା. ୮ । ୧୨ । ୪୭)

### ଛପ୍‌ପୟ

"ଚଲୀ ମୋହିନୀ ଲାଗି ଉମାପତି ଦୌରେ ପକରନ ।
ନଦୀ ସରୋବର ଶୈଲ ଫିରେ ଦୋନୋ ବନ ଉପବନ ॥
ଋଷି ମୁନି ଆଶ୍ରମ ଜାଇ ଦରଶ ଦେ କରେ କୃତାରଥ ।
ହର ହର ଦରଶନ ହୋହିଁ ୟହୀ ଜଗ ସାଁଚେ ସ୍ୱାରଥ ॥
ତେଜ ପତତ ପୃଥିବୀ ଭୟୌ, ସ୍ୱର୍ଣ୍ଣରୂପ୍ୟ ଆଲୟ୍ୟ ଭୟେ ।
ସମୁଝୀ ମାୟା ମୋହିନୀ, ନବୃତ ତୁରତ ହର ହ୍ୱୈ ଗୟେ ॥"

ଅର୍ଥାତ୍‌—ସେହି ପ୍ରଭୁ କେବଳ ଭକ୍ତମାନଙ୍କଦ୍ୱାରା ପ୍ରାପ୍ୟ ଏବଂ ଅସତ୍‌ ବ୍ୟକ୍ତିମାନଙ୍କଦ୍ୱାରା ଅପ୍ରାପ୍ୟ ଅଟନ୍ତି । ତାଙ୍କଠାରେ ଶରଣ ପଶିଥିବା ଦେବଗଣଙ୍କୁ ସେ ସମୁଦ୍ରରୁ ବାହାରିଥିବା ଅମୃତ ପିଆଇ ତୃପ୍ତ କରିଥିଲେ ଏବଂ କପଟରେ ମୋହିନୀ ବେଶ ଧାରଣ କରି ଅସୁରମାନଙ୍କୁ ମୋହିତ କରିଥିଲେ । ଶରଣାଗତମାନଙ୍କର ସମସ୍ତ କାମନା ପୂର୍ଣ୍ଣକାରୀ ପ୍ରଭୁଙ୍କୁ ମୁଁ ପ୍ରଣାମ କରୁଛି ।

ମନୁଷ୍ୟ ମନରେ ଭ୍ରମ ଜାତ ହେଲେ' ସେ କାଠ ଗଣ୍ଡିଟିକୁ ଭୂତବୋଲି ମନେକରେ । ସେଥିରେ ଲମ୍ବ ଲମ୍ବ ଦାନ୍ତ, ହାତ, ଗୋଡ଼ ଓ ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟଙ୍ଗ ଥିବାର ପ୍ରତୀତ ହୁଏ । ତାର ଫଳରେ ମନରେ ଭୟ ଜାତ ହୁଏ । ଆଲୋକ ସାହାଯ୍ୟରେ କିମ୍ବା ଅନ୍ୟ କେହି ବତାଇ ଦେଲେ ଆମର ସେହି ସନ୍ଦେହ ଦୂର ହୋଇଥାଏ ।

ଶ୍ରୀ ଶୁକମୁନି କହିଲେ—ହେ ରାଜନ୍‌ ଶିବଙ୍କ ମନରୁ ଯେତେବେଳେ ଭ୍ରମ ଦୂର ହୋଇଗଲା, ସେ ଭଲଭାବରେ ଜାଣି ପାରିଲେ ଯେ, ମୋହିନୀ ହେଉଛନ୍ତି

ସ୍ୱୟଂ ବିଷ୍ଣୁ । ସେ ମୋହିନୀ ରୂପରେ ଆମକୁ ଦର୍ଶନ ଦେଇଛନ୍ତି । ତା' ପରେ ସେ ମଧୁସୂଦନଙ୍କ ଅଚିନ୍ତ୍ୟ ମାହାତ୍ମ୍ୟ ଅନୁଭବ କରିପାରିଲେ ଏବଂ ଭ୍ରମବଶତଃ ଯାହା ଯାହା କରୁଥିଲେ, ସେଥିରୁ ନିବୃତ୍ତ ହୋଇଥିଲେ ।

ଭଗବାନ ଭୂତନାଥ ଏଥିଲାଗି ଆଦୌ ଦୁଃଖିତ କିମ୍ବା ଲଜ୍ଜିତ ହେଲେ ନାହିଁ । ସେ ପ୍ରକୃତିସ୍ଥ ହୋଇ ଭଗବାନଙ୍କ ଧ୍ୟାନରେ ମଗ୍ନ ହୋଇଗଲେ ଏବଂ ବାରମ୍ବାର ମୋହିନୀରୂପୀ ବିଷ୍ଣୁଙ୍କୁ ସ୍ମରଣ କରିବାକୁ ଲାଗିଲେ । ଏତିକିରେ ବିଷ୍ଣୁ ହସି ହସି ତାଙ୍କ ଆଗରେ ଛିଡ଼ା ହୋଇଗଲେ । ସେତେବେଳେ ସେ ଥିଲେ ମୋହିନୀମୋହନ । ଶାଢ଼ୀ ବଦଳରେ ପୀତାମ୍ବର ତାଙ୍କ ଅଙ୍ଗରେ ଶୋଭା ପାଉଥିଲା ଏବଂ କନ୍ଦୁକ ବଦଳରେ ତାଙ୍କ ହସ୍ତ ସୁଦର୍ଶନ ଚକ୍ର ଧାରଣ କରିଥିଲା । ତାଙ୍କର ମନୋହାରିଣୀ ବେଣୀ ସୁନ୍ଦର କୁଞ୍ଚୁକୁଞ୍ଚିଆ କେଶରେ ପରିଣତ ହୋଇଗଲା । ସେ ହସି ହସି କହିଲେ—ମହାଦେବ, ଆପଣ ମୋର ମୋହିନୀ ମୂର୍ତ୍ତି ଦେଖିଲେତ ?

ଦେବାଧି ଦେବ ଭକ୍ତିରେ ଗଦ୍‌ ଗଦ୍‌ ହୋଇ କହିଲେ—ହଁ, ପ୍ରଭୋ ମୁଁ ଆପଣଙ୍କ ମାୟାମୟ ମୋହିନୀରୂପକୁ ଦେଖି ବିଭ୍ରାନ୍ତ ହୋଇ ଯାଇଥିଲି ଆପଣଙ୍କ ମୋହିନୀରୂପର ମୋହରେ ମୁଁ ଆସକ୍ତ ହୋଇ ପଡ଼ିଥିଲି । ହେ ପ୍ରଭୋ, କେବଳ ଆପଣଙ୍କ ଅନୁଗ୍ରହରୁ ହିଁ ମୁଁ ଉଦ୍ଧାର ପାଇଗଲି, ନଚେତ୍ ଆପଣ ଯାହାକୁ ଅନ୍ଧକୂପ ମଧ୍ୟକୁ ଟାଣିନେବାକୁ ଇଚ୍ଛା କରିବେ, ସେ କିପରି ଉଦ୍ଧାର ପାଇ ପାରିବ ?

ବିଷ୍ଣୁ ହସିହସି କହିଲେ—ହେ ଭୋଳା ମହେଶ, ଆପଣ ଧନ୍ୟ । ଆପଣ ପ୍ରକୃତରେ ମହାଦେବ, ନଚେତ୍ କ୍ଷଣକାଳ ଲାଗି ଆପଣ ମୋହିତ ହୋଇ ଯାଇଥିଲେ-ହେଁ, ନିଜକୁ ସମ୍ଭାଳି ନେଇଆନ୍ତେ କିପରି ? ଯେ ମୋର ମାୟାରୂପକ ଅନ୍ଧକାର ଗହ୍ୱରରେ ପଡ଼ିଯିବ ତାର ଉଦ୍ଧାର ପାଇବା ଅତ୍ୟନ୍ତ ଦୁଷ୍କର ! ଭଗବନ୍, ମାଛ ବନଶୀ କଣ୍ଟାକୁ ଖାଦ୍ୟ ବୋଲି ମନେକରି ଭ୍ରମରେ ତାକୁ ଗିଳିଦିଏ ; କିନ୍ତୁ ସାଧାରଣ ଲୋକମାନେ ଜାଣିଶୁଣି ମାୟାମୋହରେ ପଡ଼ିଯାଆନ୍ତି । ସେମାନେ ହସି ହସି, ବାଜା ବଜାଇ ମାୟାର ଫାଶରେ ଆବଦ୍ଧ ହୋଇପଡ଼ନ୍ତି ଏବଂ ସେଥିରେ ଛନ୍ଦି ହୋଇ ସାରା ଜୀବନ ଧନ୍ଦି ହେଉଥାନ୍ତି । ସେମାନେ ସେହି ମାୟାର ସ୍ମରଣ ପୂର୍ବକ ଇହ ଜୀବନ ବିତାଇବା ପରେ, ପୁଣି ପରଜନ୍ମରେ ସେହି ମାୟାକୁ ଜାବୁଡ଼ି ଧରିଥାଆନ୍ତି । ଆପଣ ସର୍ବଜ୍ଞ ହୋଇଥିବାରୁ କ୍ଷଣକାଳ ଲାଗି ବିଭ୍ରାନ୍ତ ହୋଇଥିଲେ ମଧ୍ୟ ନିଜକୁ ଆୟତ୍ତ କରିନେଲେ" ।

ଶିବ ଅତ୍ୟନ୍ତ ସଙ୍କୋଚରେ ସହିତ କହିଲେ—"ପ୍ରଭୋ, ମୁଁ ବିବେକ ହରାଇ ବସିଥିଲି । ଆପଣଙ୍କ ମୋହିନୀ ମୂର୍ତ୍ତିକୁ ଦେଖି କାମାତୁର ହୋଇ ଉଠିବା ସଙ୍ଗେ ସଙ୍ଗେ ନିର୍ଲଜ୍ଜ ଭାବରେ ଧାଇଁଥିଲି । ଆପଣ କୃପାକରି ମୋତେ ଉଦ୍ଧାର କରିଦେଲେ ଏବଂ ମାୟାର ରହସ୍ୟ ସମ୍ବନ୍ଧରେ ବୁଝାଇ ଦେଲେ ।"

ଏହାଶୁଣି ଶ୍ରୀହରି କହିଲେ — ମୋର ଦୁର୍ଜ୍ଜୟ ମାୟାର କବଳରୁ ଉଦ୍ଧାର ପାଇବା ଭଳି ଶକ୍ତି ଆପଣଙ୍କ ବ୍ୟତୀତ ଆଉ କାହାର ଅଛି ? ସାଧାରଣ କାମୀ ପୁରୁଷ ପକ୍ଷରେ ଏହା ଅତ୍ୟନ୍ତ କଠିନ କାର୍ଯ୍ୟ । ଥରେ ମାତ୍ର ମାୟାର ସୁଦୃଢ଼ ବନ୍ଧନରେ ବନ୍ଦୀ ହୋଇ ପ୍ରାଣୀ ସେଥିରୁ ଉଦ୍ଧାର ପାଇ ପାରେନାହିଁ ।

ଶିବ କହିଲେ — ମୋର ମନେହୁଏ— ଆପଣଙ୍କ ମାୟା ଅତ୍ୟନ୍ତ ବଳବତୀ । ସେ ଆପଣଙ୍କଠାରୁ ମଧ୍ୟ ଶକ୍ତିଶାଳିନୀ ।

ବିଷ୍ଣୁ ହସି ହସି କହିଲେ— ଦେବାଧିଦେବ, ମାୟା ମୋର ଗୋଟିଏ ଅଂଶମାତ୍ର । ଯେଉଁମାନେ ସେଥିରେ ଥରେ ମାତ୍ର ପଡ଼ିଯାଆନ୍ତି, ସେମାନେ ମୋର ପରିପୂର୍ଣ୍ଣ ସ୍ୱରୂପର ଦର୍ଶନ ପାଇପାରନ୍ତି ନାହିଁ । ମୋର ସାମାନ୍ୟ ଗୋଟିଏ ଅଂଶରେ ଯଦି ଏତେ ଆକର୍ଷଣୀ ଶକ୍ତି ରହିଛି, ତେବେ ମୋର ପରିପୂର୍ଣ୍ଣ ସ୍ୱରୂପର ମୋହିନୀ ଶକ୍ତି କେତେ, ତାହା ସାଧାରଣ ଲୋକେ ଆଦୌ ହୃଦୟଙ୍ଗମ କରିପାରନ୍ତି ନାହିଁ । ମୁଁ ଆଜି ଆପଣଙ୍କୁ ଏହି ବରଦାନ ଦେଉଛି ଯେ, ମୋର ମାୟା ଆପଣଙ୍କୁ ଆଉ କୌଣସିମତେ ବିଭ୍ରାନ୍ତ କରିପାରିବ ନାହିଁ ।

ଶୁକଦେବ କହିଲେ' 'ହେ ପରୀକ୍ଷିତ''—ଏତିକି କହି ବିଷ୍ଣୁ ଶିବଙ୍କୁ ସାଥିରେ ଘେନି ପାର୍ବତୀଙ୍କ ନିକଟକୁ ଆସିଲେ । ସେଠାରେ ସେ ପ୍ରମଥଗଣଙ୍କ ଗହଣରେ ଶିବଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ବିଷ୍ଣୁଙ୍କ ଠାରୁ ଅନୁମତି ନେଇ, ଶିବ ପାର୍ବତୀ ଓ ପ୍ରମଥଗଣଙ୍କ ସହିତ କୈଳାସପୁରୀକୁ ଚାଲିଗଲେ ।

ମାର୍ଗମଧ୍ୟରେ ପାର୍ବତୀ ହସି ହସି ପଚାରିଲେ "ହେ ସ୍ୱାମୀନ୍ ! ଆପଣ ଏ କ'ଣ କଲେ ? ଚାହୁଁ ଚାହୁଁ ଆପଣ ମନ୍ତ୍ରବଳରେ ଉଚ୍ଚାଟ ହେଲାପରି ଧାଇଁବାରେ ଲାଗିଲେ ।"

ଶିବ ଗମ୍ଭୀର ହୋଇ କହିଲେ—ଦେବି ! ଚାଲ ମୁଁ କୈଳାସରେ ପହଞ୍ଚି ତୁମକୁ ସବୁ କଥା ବିସ୍ତୃତ ଭାବରେ କହିବି ।

ସେମାନେ କ୍ଷଣକାଳ ମଧ୍ୟରେ କୈଳାସରେ ପହଞ୍ଚିଗଲେ । ସେଠାରେ ସନକାଦି ମହର୍ଷି ତଥା ଅନ୍ୟାନ୍ୟ ଋଷିମାନେ ଶିବଙ୍କ ଅପେକ୍ଷାରେ ବସିଥିଲେ ।

ସେମାନେ ସମ୍ମୁଖରେ ଭବ ଓ ଭବାନୀଙ୍କୁ ଦେଖି, ଆସନରୁ ଉଠି ତାଙ୍କ ପାଦ ପଦ୍ମରେ ପ୍ରଣାମ ଜଣାଇଲେ । ତା'ପରେ ଶିବ ପାର୍ବତୀଙ୍କ ସହିତ ଆସନ ଗ୍ରହଣ କରନ୍ତେ "ମୁନି ଋଷିଗଣ ସେହିଠାରେ ଉପବେଶନ କଲେ । ତା' ପରେ ଶିବ ହସି ହସି କହିଲେ—ଦେବି ତୁମେ ପରମ ପୁରୁଷଙ୍କ ମାୟାର ଚମତ୍କାରିତା ଦେଖିଲତ" ?

ପାର୍ବତୀ ସଙ୍ଗେ ସଙ୍ଗେ ଉତ୍ତର ଦେଇ କହିଲେ— ପ୍ରଭୋ, ମୁଁ ଚରାଚର ନାଥଙ୍କ ମାୟା ଓ ଆପଣଙ୍କ ଅବସ୍ଥା ଉଭୟ ପ୍ରତ୍ୟକ୍ଷ କଲି !"

ମହାଦେବ ଗମ୍ଭୀର ହୋଇଯାଇ କହିଲେ—"ଦେବି ତୁମେ ପରିହାସ କର ନାହିଁ ! ପରାତ୍ପର ନାଥଙ୍କ ମାୟାର ଶକ୍ତି କେଡ଼େ ପ୍ରବଳ, ତାହାହିଁ ହୃଦୟଙ୍ଗମ କର । ମୁଁ ବିଷ୍ଣୁଙ୍କ କଳା ମଧ୍ୟରେ ସର୍ବଶ୍ରେଷ୍ଠ ତଥା ସ୍ୱତନ୍ତ୍ର ଦେବ । ମୋ' ପରି ବ୍ୟକ୍ତିହିଁ ଯଦି ଏହିପରି ଭାବରେ ପରାଭବ ହୋଇପାରେ, ଅନ୍ୟ ସାଧାରଣ ବ୍ୟକ୍ତି ମାୟାର ଦାସ ହୋଇଯିବାରେ ଆଶ୍ଚର୍ଯ୍ୟ କ'ଣ ? ତୁମେ ଯଦି ଇଚ୍ଛା କରୁଥାଅ, ତେବେ ମୁଁ ତୁମର ଗୋଟିଏ ପୁରୁଣା ପ୍ରଶ୍ନର ଉତ୍ତର ଦେବି ।

ପାର୍ବତୀ ବିସ୍ମିତା ହୋଇ ପ୍ରାଚୀନକାଳର ପ୍ରଶ୍ନ ସମ୍ବନ୍ଧରେ ଜିଜ୍ଞାସା କରନ୍ତେ ସଦାଶିବ କହିଲେ—"ଦେବି, ଥରେ ମୁଁ ସହସ୍ର ବର୍ଷ ଧ୍ୟାନସ୍ଥ ହେବାପରେ ଯେତେବେଳେ ସମାଧିରୁ ଜାଗ୍ରତ ହେଲି, ସେତେବେଳେ ତୁମେ ପଚାରିଥିଲ ଯେ, ମୁଁ କାହାକୁ ଧ୍ୟାନ କରୁଛି ଏବଂ ମୋର ପ୍ରଭୁ କିଏ ? ମୁଁ ସେ ସମୟରେ ଏହାର ଉତ୍ତର ଦେଇ ନଥିଲି । ବର୍ତ୍ତମାନ ସେହି ପ୍ରଶ୍ନର ଉତ୍ତର ଦେଉଛି । ମୋର ସେହି ପ୍ରଭୁ ହେଉଛନ୍ତି ସ୍ୱୟଂ ଚରାଚର ନାଥ ବିଷ୍ଣୁ ! ସେ ହେଉଛନ୍ତି କାଳର ମହାକାଳ ! ବେଦ ତାଙ୍କ ସମ୍ବନ୍ଧରେ କହିବାକୁ ସମ୍ପୂର୍ଣ୍ଣ ଅସମର୍ଥ । ତେଣୁ ଦର୍ଶନଶାସ୍ତ୍ରରେ 'ତାଙ୍କୁ ନେତି · · · ନେତି' କୁହାଯାଇଛି । ଯାହାଙ୍କ ମାୟାର ପ୍ରଭାବ ଏତେ, ସେ ନିଜେ କେତେ ପ୍ରଭାବଶାଳୀ ହୋଇ ନଥିବେ । ଏଇଥିରୁହିଁ ତୁମେ ଅନୁମାନ କରିପାର !"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ମୁଁ ଭଗବାନଙ୍କ ଅମିତ ଶକ୍ତିଯୁକ୍ତ ସମୁଦ୍ର ମନ୍ଥନର ଆଖ୍ୟାୟିକା ଆପଣଙ୍କୁ ଶୁଣାଇଲି । ଏହି ଅବସରରେ ଅଜିତ, କଚ୍ଛ, ଧନ୍ୱନ୍ତରି ଓ ମୋହିନୀ ପ୍ରମୁଖ ବହୁବେଶି ଅବତାର ଗ୍ରହଣ କରି ପ୍ରଭୁ ବିଭିନ୍ନ ଲୀଳା

କରିଥିଲେ । ସେଥିମଧ୍ୟରେ ମୋହିନୀ ଅବତାରର ଲୀଳା ଅତ୍ୟନ୍ତ କୌତୂହଳପ୍ରଦ । ଏହି ଲୀଳାଗୁଡ଼ିକର ଆଶ୍ଚର୍ଯ୍ୟକିା ଶ୍ରବଣରେ ସମସ୍ତ ପ୍ରକାର ସାଂସାରିକ କଳୁଷ ଦୂରୀଭୂତ ହୋଇଥାଏ ।"

ସୂତ ମହର୍ଷି କହିଲେ "ହେ ଶୌନକ",—"ମୋର ଗୁରୁଦେବ ମୋହିନୀ ଲୀଳା ସମାପ୍ତ କରି ଭଗବାନଙ୍କ ମାୟାଯୁକ୍ତ ଅଲୌକିକ ସ୍ୱରୂପକୁ ପ୍ରଣାମ ଜଣାଇଲେ ।"

ତା'ପରେ ଶୌନକଙ୍କ ପ୍ରଶ୍ନ ଅନୁସାରେ ସୂତମୁନି କହିଲେ—"ହେ ମହର୍ଷିଗଣ, ମନ୍ୱନ୍ତର କଥା ଏବେ ସୁଦ୍ଧା ସମ୍ପୂର୍ଣ୍ଣ ହୋଇନାହିଁ । ଗୋଟିଏ କଳ୍ପରେ ଚଉଦଟି ମନ୍ୱନ୍ତର ହୋଇଥାଏ । ସେଥିମଧ୍ୟରୁ ଅଦ୍ୟାପି କେବଳ ଛଅଟି ମନ୍ୱନ୍ତର ବିଷୟରେ କୁହାଯାଇଛି । ଅବଶିଷ୍ଟ ଆଠଟି ମନ୍ୱନ୍ତର କଥା ଶ୍ରୀ ଶୁକଦେବ ମହାରାଜ ପରୀକ୍ଷିତଙ୍କୁ ଯେପରି ଭାବରେ ଶୁଣାଇଥିଲେ, ତାହା ମୁଁ ଆପଣମାନଙ୍କ ସମ୍ମୁଖରେ ବ୍ୟାଖ୍ୟା କରୁଛି । ଆପଣମାନେ ସାବଧାନ ହୋଇ ଶ୍ରବଣ କରନ୍ତୁ ।"

## ଛପ୍ପୟ

"ତବ ବୋଲେ ଭଗବାନ୍ ମୋହିନୀ ଦେଖି ଶଙ୍କର ।
କହେଁ ଶମ୍ଭୁ ହୁସବାର ତୁହ୍ମାରୀ ମାୟା ପ୍ରଭୁବର ॥
ଅବ ନ ପରଭବ କରୈ ହୋହି ମାୟାତବ ଚେରୀ
ହୈ ତ୍ରୁଷ୍ୟକ ହୁସ୍ତାର କହେ ହରି ମାୟା ମେରୀ ॥
ଆୟେ ଶିବ କୈଲାସ ପୁନ, ବୃଷ ମୁନିଜନ ସନ ସବ କହେଁୟା ।
ପରମ ମନୋହର ମୋହିନୀ, କୋ ଚରିତ୍ର ପୂରନ ଭୟୋ ॥"



# ବୈବସ୍ୱତ ମନ୍ୱନ୍ତର

"ମନୁର୍ବିବସ୍ୱତଃ ପୁତ୍ରଃ ଶ୍ରାଦ୍ଧଦେବ ଇତି ଶ୍ରୁତଃ ।
ସପ୍ତମୋ ବର୍ତ୍ତମାନୋ ଯସ୍ତଦପତ୍ୟାନି ମେ ଶୃଣୁ ।।
(ଭା· ୮ । ୧୩ । ୧)

## ଛପ୍ପୟ

ବିବସ୍ୱାନ ସୁତ ଭୟେ ସାତୱେଂ ମନୁ ସୁଖଦାଈ
ବାମନ ବନି ଭଗବାନ ଠଗେ ବଲି ଦେହ ବଢ଼ାଈ ।।
ସଂଜ୍ଞା ଛାୟା ସଂଗ ବ୍ୟାହ ଦିନକର ନେ କୀନ୍ହେଁ । ।
ଶ୍ରାଦ୍ଧଦେବ, ଯମ, ଯମୀ ଭୟେ ସଂଜ୍ଞା କେ ତୀନୋଂ ।।
ଛାୟା କୀ ତପତୀ ସୁତା, ସୁତ ସାବର୍ଣ୍ଣୀ ଶନୈଶ୍ଚର ।
କରେଂ ସୌତୟା ତାହି ଜବ, ସମୁଝେ ସବ ତବ ଦିବାକର "।

ଅର୍ଥାତ୍— ଶ୍ରୀ ଶୁକଦେବ କହିଲେ— ହେ ରାଜନ୍, ସପ୍ତମ ମନୁ ବିବସ୍ୱାନ୍‌ଙ୍କ ପୁତ୍ର ଶ୍ରାଦ୍ଧଦେବ ନାମରେ ପ୍ରଖ୍ୟାତ ହୋଇଥିଲେ । ସେ ଥିଲେ ସେହି ମନ୍ୱନ୍ତରର ଅଧିପତି । ତାଙ୍କ ସନ୍ତାନମାନଙ୍କ ସମ୍ବନ୍ଧରେ ବିବରଣ ଶୁଣନ୍ତୁ ।

ସଂସାରରେ ଯେତେ କିଛି ଈଶ୍ୱର ନିର୍ମିତ ପଦାର୍ଥ ରହିଛି, ପ୍ରତ୍ୟେକର କିଛି ନା କିଛି ସଂଜ୍ଞା ରହିଛି । ଜଗତରେ ସଂଜ୍ଞାବିହୀନ କୌଣସି ପଦାର୍ଥ ନାହିଁ । ପ୍ରତ୍ୟେକ ସଂଜ୍ଞାର ଛାୟା ରହିଛି । ଅନ୍ଧକାର ମଧ୍ୟରେ ପ୍ରତ୍ୟେକ ପଦାର୍ଥ ଯଥାସ୍ଥାନରେ ରହିଥିଲେ ମଧ୍ୟ ତାର ସଂଜ୍ଞା ନଥାଏ । ଅର୍ଥାତ୍ ଅନ୍ଧକାର ମଧ୍ୟରେ ସେଗୁଡ଼ିକର ସଂଜ୍ଞା ଅବ୍ୟକ୍ତ ହୋଇଥାଏ । କିନ୍ତୁ ପ୍ରକାଶ ବ୍ୟତୀତ ଛାୟା ବ୍ୟକ୍ତ ହୁଏ ନାହିଁ । ଏଣୁ ସଂଜ୍ଞା ଓ ଛାୟାର ସ୍ୱାମୀ ହେଉଛନ୍ତି— ବିବସ୍ୱାନ୍ ସୂର୍ଯ୍ୟଦେବ ତାଙ୍କଠାରୁ ଶ୍ରାଦ୍ଧଦେବ, ପ୍ରଭୃତି ଧର୍ମପ୍ରବର୍ତ୍ତକମାନଙ୍କର ଉତ୍ପତ୍ତି ହୋଇଛି ।

ଭାଗବତର ବିବରଣୀ ଆରମ୍ଭ କରି ଶୁକଦେବ କହିଲେ—"ହେ ରାଜନ୍ ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଏହି ଚାରିଟି ଯୁଗ ମିଶି ଯେତେବେଳେ ସହସ୍ରବାର ଭୋଗ ହୋଇସାରିବେ, ସେତେବେଳେ ବ୍ରହ୍ମାଙ୍କର ଗୋଟିଏ ଦିନ ଭୋଗ ହେବ । ଏହି ବିବର୍ତ୍ତନକୁ 'କଳ୍ପ' ନାମରେ ନାମିତ କରାଯାଏ ।

ପ୍ରତ୍ୟେକ କଳ୍ପରେ ଚଉଦଟି ମନ୍ୱନ୍ତର ଥାଏ । ପ୍ରତ୍ୟେକ ମନ୍ୱନ୍ତରରେ ଭଗବାନ୍ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଅବତାରରୂପେ ଆବିର୍ଭୂତ ହୋଇ ଲୀଳା ବିସ୍ତାର କରିଥାଆନ୍ତି । ପ୍ରଥମରେ ସ୍ୱାୟମ୍ଭୁବ ମନ୍ୱନ୍ତର, ସେଥିରେ ଭଗବାନ୍‌ଙ୍କ ଯଜ୍ଞ ସ୍ୱରୂପହିଁ ମନ୍ୱାବତାର ରୂପେ ପ୍ରସିଦ୍ଧି ଅର୍ଜନ କରିଥିଲେ । ସ୍ୱାରୋଚିଷ ନାମକ ଦ୍ୱିତୀୟ ମନ୍ୱନ୍ତରରେ ବିଭୁ, ଉତ୍ତମ ମନ୍ୱନ୍ତରରେ ସତ୍ୟସେନ, ତାମସ ମନ୍ୱନ୍ତରରେ ଗଜ ଉଦ୍ଧାରକାରୀ ହରି, ରୈବତ ମନ୍ୱନ୍ତରରେ ବୈକୁଣ୍ଠ, ଚାକ୍ଷୁଷ ମନ୍ୱନ୍ତରରେ ଅଜିତ ନାମକ ମନ୍ୱାବତାରୀ ବିଷ୍ଣୁ, ବିଭିନ୍ନ ଲୀଳା ସମ୍ପାଦନ କରି ଯାଇଅଛନ୍ତି । ବର୍ତ୍ତମାନ ହେଉଛି— ବୈବସ୍ୱତ ମନ୍ୱନ୍ତର, ସେଥିରେ ପୂର୍ଣ୍ଣସ୍ୱରୂପୀ ନନ୍ଦନନ୍ଦନ ମନ୍ୱାବତାର ରୂପେ ଅବତୀର୍ଣ୍ଣ ହୋଇଛନ୍ତି ।

ପରୀକ୍ଷିତ ମହାରାଜ ଆଗ୍ରହରେ ପ୍ରଶ୍ନ କଲେ—ହେ ମହର୍ଷି ! ଏ ମନ୍ୱନ୍ତର ନାମ କ'ଣ ? ଏହାର ଅଧିପତି କିଏ ଏବଂ ବିଷ୍ଣୁଙ୍କର କେଉଁ ସ୍ୱରୂପ ଏହି ମନ୍ୱନ୍ତରରେ ଅବତୀର୍ଣ୍ଣ ହୋଇଥିଲେ । ଏହା ବ୍ୟତୀତ ଇନ୍ଦ୍ର, ମନୁପୁତ୍ର, ସପ୍ତର୍ଷି ଓ କେଉଁ ଦେବଗଣ ଆବିର୍ଭୂତ ହୋଇଥିଲେ, ତାହା ଦୟାକରି ମୋ' ଆଗରେ ପ୍ରକାଶ କରନ୍ତୁ ।

ଏହା ଶୁଣି ଶ୍ରୀ ଶୁକଦେବ କହିଲେ — ହେ ରାଜନ୍, ଏହି ସପ୍ତମ ମନ୍ୱନ୍ତରର ଅଧିପତି ବିବସ୍ୱାନଙ୍କ ପୁତ୍ର ଶ୍ରାଦ୍ଧଦେବ ଅଟନ୍ତି । ଏହାଙ୍କର ଇକ୍ଷ୍ୱାକୁ, ନଭଗ, ଧୃଷ୍ଟ, ଶର୍ଯ୍ୟାତି, ନରିଷ୍ୟନ୍ତ, ନାଭାଗ, ଦିଷ୍ଟ, କରୂଷ, ପୃଷଧ୍ର ଓ ବସୁମାନ୍ ପ୍ରମୁଖ ଦଶଜଣ ପୁତ୍ର ଥିଲେ । ଏହି ପୁତ୍ରମାନଙ୍କର ବଂଶଧର-ଗଣ ବର୍ତ୍ତମାନ ସୁଦ୍ଧା ପୃଥିବୀରେ ରାଜତ୍ୱ କରୁଛନ୍ତି । ତୁମେ ଏହିମାନଙ୍କର ବଂଶଧର । ଏହି ମନ୍ୱନ୍ତରରେ ଆଦିତ, ବସୁ, ରୁଦ୍ର ବିଶ୍ୱଦେବା ମରୁଦ୍‌ଗଣ ଏବଂ ଅଶ୍ୱିନୀ କୁମାର, ବିଭୁଗଣ ପ୍ରଭୃତି ଦେବଗଣ ଅଟନ୍ତି ତଥା ଇନ୍ଦ୍ରଙ୍କ ନାମ ହେଉଛି— ପୁରନ୍ଦର । ଏହି ସମୟରେ କଶ୍ୟପ, ଅତ୍ରି, ବଶିଷ୍ଠ, ବିଶ୍ୱାମିତ୍ର ଗୌତମ, ଜମଦଗ୍ନି ଓ ଭରଦ୍ୱାଜ ମହର୍ଷି ନାମରେ ଖ୍ୟାତି ଅର୍ଜନ କରିଛନ୍ତି । କାଶ୍ୟପ ଓ ଅଦିତିଙ୍କ ଗର୍ଭସମ୍ଭୂତ ବାମନ ଏହି ମନ୍ୱନ୍ତରରେ ଅବତାର ଗ୍ରହଣ କରିଛନ୍ତି । ଇନ୍ଦ୍ରଙ୍କର ସାନଭାଇ ହୋଇଥିବାରୁ ଏହାଙ୍କୁ ଉପେନ୍ଦ୍ର ନାମରେ ନାମିତ କରାଯାଇଛି ।

"ହେ ରାଜନ୍, ଅଷ୍ଟମ ମନ୍ୱନ୍ତର ସମ୍ବନ୍ଧରେ ମଧ୍ୟ ଭଗବାନ୍ ବ୍ୟାସଦେବ ବର୍ଣ୍ଣନା କରିଅଛନ୍ତି । ଆଗାମୀ ମନ୍ୱନ୍ତରରେ ଅଧିପତି ହେବେ ବିବସ୍ୱାନଙ୍କ ପୁତ୍ର ସାବର୍ଣ୍ଣି, ସେ ଶ୍ରାଦ୍ଧଦେବ ମନୁଙ୍କର କନିଷ୍ଠ ଭ୍ରାତା । ଏହାଙ୍କ ପିତା ବିବସ୍ୱାନ ହୋଇଥିଲେହେଁ ମାତା ପୃଥକ୍" ।

ଏହା ଶୁଣିବା ପରେ ପରୀକ୍ଷିତ କହିଲେ—"ହେ ମହର୍ଷି, ଯେଉଁ ବିବସ୍ୱାନଙ୍କର ଦୁଇଟି ପୁତ୍ର ମନୁରୂପେ ପ୍ରସିଦ୍ଧି ଅର୍ଜନ କରିଛନ୍ତି, ତାଙ୍କ ବଂଶର ବିଶଦ ପରିଚୟ କରାଇବା ପରେ ଆପଣ ଅଷ୍ଟମ ମନ୍ୱନ୍ତର ସମ୍ବନ୍ଧରେ ବ୍ୟାଖ୍ୟାନ କରନ୍ତୁ ।

ଶୁକଦେବ କହିଲେ "ହେ ରାଜନ୍" - ଏହା ଅତ୍ୟନ୍ତ ଦୀର୍ଘ କାହାଣୀ । ତଥାପି ମୁଁ ଏହି ସମସ୍ତ ବିଷୟ ସଂକ୍ଷେପରେ ବର୍ଣ୍ଣନା କରି ଆପଣଙ୍କ ଉଦ୍ଦେଶ୍ୟ ପୂରଣ କରିବି ।

ମୁଁ ପ୍ରଥମରୁ କହି ସାରିଛି— ମହର୍ଷି କଶ୍ୟପଙ୍କ ପତ୍ନୀ ଅଦିତିଙ୍କ ଗର୍ଭରୁ ବିବସ୍ୱାନ, ଅର୍ଯ୍ୟମା, ପୂଷା, ତ୍ୱଷ୍ଟା, ସବିତା, ଧାତା, ବିଧାତା, ବରୁଣ, ମିତ୍ର, ଶକ୍ର ଓ ବାମନ ଆଦି ଦ୍ୱାଦଶ ଆଦିତ୍ୟ ଜନ୍ମଗ୍ରହଣ କରିଥିଲେ । ଜ୍ୟେଷ୍ଠପୁତ୍ର ବିବସ୍ୱାନ ପ୍ରଜାପତି ବିଶ୍ୱକର୍ମାଙ୍କ ପୁତ୍ରୀ ସଂଜ୍ଞାଙ୍କୁ ବିବାହ କରିଥିଲେ ।

ଏହା ଶୁଣିବାମାତ୍ରେ ମହର୍ଷି ଶୌନକ କହିଲେ—"ହେ ସୂତ ମହର୍ଷି, ଆମେମାନେ ପୂର୍ବରୁ ଶୁଣିଥିଲୁ - ବିବସ୍ୱାନ୍‌ଙ୍କର ଛାୟା, ସଂଜ୍ଞା ଓ ବଡ଼ବା ନାମରେ ତିନଗୋଟି ପତ୍ନୀ ଥିଲେ, କିନ୍ତୁ ଆପଣ କହୁଛନ୍ତି— ସଂଜ୍ଞା କେବଳ ତାଙ୍କର ଏକମାତ୍ର ପତ୍ନୀ ଥିଲେ ।"

ଶୌନକଙ୍କୁ ଉତ୍ତର ଦେଇ ସୂତ ମହର୍ଷି କହିଲେ - ମହର୍ଷି ଶୌନକ, ଆପଣ ଠିକ୍ କଥା କହୁଛନ୍ତି, କିନ୍ତୁ ସେହି ତିନିଜଣ ଯାକ ଏକ । ସଂଜ୍ଞା ଭିନ୍ନ ଭିନ୍ନ ରୂପରେ ସନ୍ତାନ ଜାତ କରିଥିବାରୁ, ତାଙ୍କର ନାମ ମଧ୍ୟ ଭିନ୍ନ । ମୁଁ ଆପଣମାନଙ୍କ ଆଗ୍ରହ ଅନୁସାରେ ସଂଜ୍ଞାଙ୍କର ଭିନ୍ନ ଭିନ୍ନ ନାମ ତଥା କାର୍ଯ୍ୟ ସମ୍ବନ୍ଧରେ ଶୁଣାଉଛି ।

ବିବସ୍ୱାନ୍ ହେଉଛି— ସୂର୍ଯ୍ୟଙ୍କର ଅପର ନାମ । ସେ ଅତ୍ୟନ୍ତ ପ୍ରକାଶବାନ୍ ତେଣୁ ତାଙ୍କର ତେଜ ଅସହ୍ୟ । ବିଶ୍ୱକର୍ମାଙ୍କ ପୁତ୍ରୀ ସଂଜ୍ଞା ସେହି ବିବସ୍ୱାନ୍‌ଙ୍କ ସହିତ ବିବାହ କରିଥିଲେ । ପତିପତ୍ନୀଙ୍କ କେତୋଟି ଗୁଣ ସମାନ ନହେଲେ ସେ ପ୍ରକାର ମିଳନ ସୁଖକର ହୁଏ ନାହିଁ । ତେଣୁ ସମାନ କୁଳ ଓ ସ୍ଥିତିରେହିଁ ବିବାହ ସମ୍ପାଦନ କରାଯାଇଥାଏ । ବିଶ୍ୱକର୍ମା ସେଥିପ୍ରତି ଆଦୌ ଦୃଷ୍ଟି ନଦେଇ ବିବସ୍ୱାନ୍‌ଙ୍କ ସହିତ ସଂଜ୍ଞାର ବିବାହ କରାଇଦେଲେ । ସଂଜ୍ଞା ସୂର୍ଯ୍ୟଦେବଙ୍କର ତେଜ ସହ୍ୟ କରିପାରିଲେ ନାହିଁ । ଏହିପରି ଅବସ୍ଥାରେ ମଧ୍ୟ

ସୂର୍ଯ୍ୟଙ୍କ ଔରସରୁ ସଂଜ୍ଞା ଶ୍ରାଦ୍ଧଦେବ, ଯମ ଓ ଯମୁନାଙ୍କୁ ଜନ୍ମ ଦେଇଥିଲେ । ଦୀର୍ଘଦିନର ସହାବସ୍ଥାନ ପରେ ମଧ୍ୟ ସଂଜ୍ଞା ସୂର୍ଯ୍ୟଙ୍କ ସମ୍ମୁଖୀନ ହେବାକୁ ଅତ୍ୟନ୍ତ ଭୟ କରୁଥିଲେ ।

ଦିନେ ସଂଜ୍ଞା ଚିନ୍ତାକଲେ – 'ଏ' ଘରେ ନିର୍ବାହ ହେବା ମୋ' ପକ୍ଷରେ ସମ୍ଭବ ନୁହେଁ । ସ୍ୱାମୀଙ୍କର ତେଜ ମୁଁ ଆଉ ସହ୍ୟ କରିପାରିବି ନାହିଁ । ସେ ନିଜ ଛାୟାରୁ ଠିକ ନିଜ ଅନୁରୂପ ଗୋଟିଏ ସ୍ତ୍ରୀ ନିର୍ମାଣ କରିଦେଲେ । ଦେବଶିଳ୍ପୀ ବିଶ୍ୱକର୍ମାଙ୍କ ପୁତ୍ରୀ ହୋଇଥିବାରୁ, ଆଉ ଗୋଟିଏ ନାରୀମୂର୍ତ୍ତି ଗଠନ କରିବା ସଂଜ୍ଞାଙ୍କ ପକ୍ଷରେ ଆଦୌ ଅସୁବିଧାଜନକ ହେଲା ନାହିଁ । ଛାୟାରୁ ଗଠିତ ମୂର୍ତ୍ତି ଓ ସଂଜ୍ଞାଙ୍କ ରୂପ ମଧ୍ୟରେ କୌଣସି ପାର୍ଥକ୍ୟ ନଥିବାରୁ, ସୂର୍ଯ୍ୟ ହଠାତ୍ ଏହା ଜାଣିପାରିଲେ ନାହିଁ । ତେଣୁ ସଂଜ୍ଞା ଛାୟାକୁ ନିଜ ସନ୍ତାନମାନଙ୍କ ଦାୟିତ୍ୱ ଦେଇ, ଦିନେ ସେଠାରୁ ଚାଲିଗଲେ । ସ୍ୱାମୀଙ୍କ ଗୃହରୁ ବାହାରି ସଂଜ୍ଞା ପିତାଙ୍କ ଗୃହରେ ପହଞ୍ଚିଲେ । କାରଣ ନାରୀର ଗୋଟିଏ ଆଶ୍ରୟସ୍ଥଳ ହେଉଛି—ପତିଗୃହ ଏବଂ ଅନ୍ୟଟି ହେଉଛି ପିତୃଗୃହ । ତେଣୁ ସଂଜ୍ଞା ପିତାଙ୍କ ଗୃହରେ ଉପସ୍ଥିତ ହୋଇ, ବିଶ୍ୱକର୍ମାଙ୍କ ଆଗରେ ସତ୍ୟ କଥା ବଖାଣି ଗଲେ ।

ବିଶ୍ୱକର୍ମା ପୁତ୍ରୀର ଆଚରଣରେ ନିତାନ୍ତ କ୍ରୁଦ୍ଧ ହୋଇ କହିଲେ—"ମାଆ, ମୁଁ ତୋର ଏ'ପ୍ରକାର ଆଚରଣକୁ ଆଦୌ ସମର୍ଥନ କରିପାରିବି ନାହିଁ । ବିବାହିତା ନାରୀ କୌଣସିମତେ ନିଜ ସ୍ୱାମୀଙ୍କ ଗୃହ ତ୍ୟାଗ କରି ଅନ୍ୟତ୍ର ଆସିବା ଉଚିତ ନୁହେଁ । ତୋର ଏଠାରେ ରହିବା ଆଦୌ ନ୍ୟାୟସଙ୍ଗତ କାର୍ଯ୍ୟ ହେବ ନାହିଁ । ସୂର୍ଯ୍ୟନାରାୟଣ ଏହା ଶୁଣିଲେ, ମୋ' ଉପରେ କ୍ରୋଧ ପ୍ରକାଶ କରିବେ ।

ପିତାଙ୍କ ଭର୍ତ୍ସନାରେ ଦୁଃଖିତ ହୋଇ ସଂଜ୍ଞା ସ୍ୱାମୀଙ୍କ ଗୃହକୁ ଫେରି ନ ଯାଇ ଘୋର ଅରଣ୍ୟାନୀକୁ ଚାଲିଗଲେ । ବନ ମଧ୍ୟରେ ଯୁବତୀ ସ୍ତ୍ରୀ ନିରାପଦରେ ରହିବା ସମ୍ଭବ ନୁହେଁ; ତେଣୁ ସେ ଗୋଟିଏ ଘୋଡ଼ୀ ରୂପରେ ସେଠାରେ ଅବସ୍ଥାନ କଲେ ।

ଏଣେ ଛାୟା ଠିକ୍ ସଂଜ୍ଞାଙ୍କ ପରି ସ୍ୱାମୀ ଓ ସନ୍ତାନମାନଙ୍କ ପରିଚର୍ଯ୍ୟା କରିବାରେ ଲାଗିପଡ଼ିଲେ । ତାଙ୍କ ରୂପ ତଥା ଆଚରଣ ଅବିକଳ ସଂଜ୍ଞାଙ୍କ ପରି ହୋଇଥିବାରୁ ସୂର୍ଯ୍ୟଙ୍କ ମନରେ କୌଣସି ସନ୍ଦେହ ଜାତ ହେଲା ନାହିଁ । ସମୟକ୍ରମେ ଛାୟାଙ୍କ ଗର୍ଭରୁ ସାବର୍ଣ୍ଣି, ଶନୈଶ୍ଚର ଓ ତପତୀ ନାମକ ତିନୋଟି

ପୁତ୍ର ଓ ଗୋଟିଏ କନ୍ୟା ଜାତ ହୋଇଥିଲେ । ସଂଜ୍ଞା ଓ ଛାୟାଙ୍କ ସନ୍ତାନଗଣ ଛାୟାଙ୍କୁ ହିଁ ନିଜର ଜନ୍ମଦାତ୍ରୀ ବୋଲି ମନେକଲେ ।

ଯେତେ ଯାହାହେଲେ ମଧ୍ୟ ପର ଆପଣାର ଭେଦ ପ୍ରତ୍ୟେକଙ୍କ ମନରେ ରହିଛି । ବିଶେଷତଃ ନାରୀମାନେ ଶତ ଚେଷ୍ଟା କଲେ ମଧ୍ୟ ସପତ୍ନୀର ସନ୍ତାନମାନଙ୍କୁ ନିଜ ସନ୍ତାନ ତୁଳନାରେ ଶ୍ରଦ୍ଧା ଓ ସ୍ନେହ କରିପାରେ ନାହିଁ । ତା'ହାହିଁ ଛାୟାଙ୍କଠାରେ ପ୍ରତିଫଳିତ ହେଲା । ସେ ସଂଜ୍ଞାଙ୍କ ସନ୍ତାନମାନଙ୍କୁ ସସ୍ନେହ ଦୃଷ୍ଟିରେ ଦେଖିପାରିଲେ ନାହିଁ । କନ୍ୟାମାନେ ବିମାତାଙ୍କ ଅନାଦରକୁ କୌଣସିମତେ ସହ୍ୟ କରିଯାଆନ୍ତି, କିନ୍ତୁ ପୁତ୍ରମାନେ ଏହା ଆଦୌ ସହିପାରନ୍ତି ନାହିଁ । ଯମୁନା ଛାୟାଙ୍କ ବ୍ୟବହାର କୌଣସିମତେ ନୀରବରେ ସହି କାଳାତିପାତ କଲେ ଏବଂ ଶ୍ରାଦ୍ଧଦେବ ଅତ୍ୟନ୍ତ ବୁଦ୍ଧିମାନ ହୋଇଥିବାରୁ, ସେ ମଧ୍ୟ ବିମାତାଙ୍କ ଅତ୍ୟାଚାର ସହ୍ୟ କରିଗଲେ । କିନ୍ତୁ ଯମ ଥିଲେ–ନିତାନ୍ତ ଅସହିଷ୍ଣୁ ଓ କ୍ରୋଧୀ । ଦିନେ ଗୋଟିଏ ସାମାନ୍ୟ ଘଟଣାରେ ଯମ ନିଜର ଉଦ୍ଦଣ୍ଡତା ପ୍ରଦର୍ଶନ କରିଦେଲେ । ଯମଙ୍କ ବ୍ୟବହାରରେ ଅସନ୍ତୁଷ୍ଟ ହୋଇ ଛାୟା ତାଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ । ଏଥିରେ ଯମ ନିତାନ୍ତ କ୍ରୁଦ୍ଧହୋଇ ଛାୟାଙ୍କୁ ପାଦ ପ୍ରହାର କରିବାକୁ ଉଦ୍ୟତ ହେଲେ ।

ଯମଙ୍କ ବ୍ୟବହାର ଦେଖି, ଛାୟା କ୍ରୋଧରେ ଜର୍ଜରିତା ହୋଇ କହିଲେ— "ତୁ ମୋତେ ଗୋଇଠା ମାରିବା ପାଇଁ ଯେଉଁ ପାଦଟି ଉଠାଇଛୁ, ସେହି ପାଦରେ ଗଳିତ କୁଷ୍ଠବ୍ୟାଧି ହୋଇଯାଉ ।"

ଯମ ମାତାଙ୍କ ଅଭିଶାପରେ ଭୟଭୀତ ହୋଇ ପିତାଙ୍କ ନିକଟରେ ସବୁ କଥା ଜଣାଇଦେଲେ । ପୁତ୍ରଙ୍କଠାରୁ ଅଭିଯୋଗ ଶୁଣି ସୂର୍ଯ୍ୟ କହିଲେ –"ପୁତ୍ର, ତୁମେ ନିଶ୍ଚୟ କିଛି ଅପରାଧ କରିଛ, ଅନ୍ୟଥା ମାତା କ୍ରୁଦ୍ଧହୋଇ ଅଭିଶାପ ପ୍ରଦାନ କରନ୍ତେ କାହିଁକି ?"

କାନ୍ଦି କାନ୍ଦି ଯମ ଉତ୍ତର ଦେଲେ—"ପିତୃଦେବ, ମୁଁ ସେପରି କିଛି ଗୁରୁତର ଅପରାଧ କରିନାହିଁ । ମାତା ସବୁବେଳେ ଆମ ତିନି ଭାଇ ଭଉଣୀଙ୍କ ପ୍ରତି ଦୁର୍ବ୍ୟବହାର କରି ଆସୁଛନ୍ତି । ସେ ସାବର୍ଣ୍ଣି, ଶନୈଶ୍ଚର ଓ ତପତୀଙ୍କୁ ଅଧିକ ସ୍ନେହ କରୁଛନ୍ତି ଏବଂ ଭଲ ଭଲ ଦ୍ରବ୍ୟ ସେମାନଙ୍କୁ ଖୁଆଉଅଛନ୍ତି । ଶେଷକୁ ଅଇଁଠା, ବାସୀ ତଥା ଦୁର୍ଗନ୍ଧପୂର୍ଣ୍ଣ ଖାଦ୍ୟ ସେ ଆମ ତିନିଜଣଙ୍କୁ ଦେଉଥିବାରୁ, ଆଜି ମୁଁ ତା'ର ପ୍ରତିବାଦ କଲି । ସେ ମୋ' ପ୍ରତିବାଦ ଶୁଣି କ୍ରୋଧରେ ଜଳି

ଉଠି ମୋତେ କଦର୍ଯ୍ୟ ଭାଷାରେ ଗାଳିମନ୍ଦ କଲେ । ମୁଁ ବାଳଚପଳତାବଶତଃ ତାଙ୍କୁ ମାରିବା ପାଇଁ ପାଦଟି ଉଠାଇ ଦେଲି । ତହୁଁ ସେ ମୋତେ ଏହି ଦାରୁଣ ଅଭିଶାପରେ ଦଣ୍ଡିତ କଲେ । ଶାସ୍ତ୍ରରେ ଅଛି—ପୁତ୍ର କୁପୁତ୍ର ହୋଇପାରେ, କିନ୍ତୁ ମାତା କେବେହେଲେ କୁମାତା ହୋଇପାରେ ନାହିଁ । ଆଜି ସେ ମୋ' ପ୍ରତି ଯେଉଁ ବ୍ୟବହାର ଦେଖାଇଲେ, ସେ ଆମର ଜନ୍ମିତ ମାତା ବୋଲି ମୋ' ମନରେ ସନ୍ଦେହ ଜାତ ହେଉଛି ।''

ପୁତ୍ରର ଅଭିଯୋଗରେ ସୂର୍ଯ୍ୟଙ୍କ ମନରେ ସନ୍ଦେହ ଜାତ ହେଲା । ତେଣୁ ସେ ଧ୍ୟାନରେ ବସି ଛାୟାଙ୍କର ପ୍ରକୃତ ସ୍ୱରୂପ ସମ୍ବନ୍ଧରେ ଜାଣିପାରିଲେ । ତହୁଁ ସେ ଛାୟାଙ୍କ ନିକଟକୁ ଆସି ଉତ୍ତେଜିତ ହୋଇ କହିଲେ —''ଦୁଷ୍ଟା, ତୁ କିଏ ? ତୁ ଶୀଘ୍ର ସତ୍ୟକଥା ପ୍ରକାଶ ନ କଲେ, ତା'ର ପରିଣତି ସଙ୍ଗେ ସଙ୍ଗେ ଭୋଗ କରିବୁ ।''

ଛାୟା ସୂର୍ଯ୍ୟଙ୍କ କୋପମୂର୍ତ୍ତି ଦେଖି ଭୟରେ ଥରି ଥରି ସମସ୍ତ ତଥ୍ୟ ପ୍ରକାଶ କରିଦେଲେ । ତହୁଁ ସୂର୍ଯ୍ୟଦେବ ଆହୁରି କୋପରେ ପ୍ରଜ୍ୱଳିତ ହୋଇ କହିଲେ— ''ପାପିୟସୀ, ତୁ ଏ ସମ୍ବନ୍ଧରେ ମୋତେ ପୂର୍ବରୁ ଜଣାଇଲୁ ନାହିଁ କାହିଁକି ?''

ଛାୟା କ୍ରନ୍ଦନପୂର୍ବକ ଗଦ୍ ଗଦ୍ କଣ୍ଠରେ କହିଲେ—''ସ୍ୱାମିନ୍, ମୋର ଏଥିରେ କିଛି ଦୋଷ ନାହିଁ । ମୋତେ ଶପଥ ଦେଇ ସଂଜ୍ଞାଦେବୀ ପ୍ରକୃତ ତଥ୍ୟ ପ୍ରକାଶ କରିବାକୁ ବାରଣ କରିଥିଲେ । ଆଜି ଆପଣଙ୍କ କ୍ରୋଧରେ ଭୟଭୀତା ହୋଇ ମୁଁ ପ୍ରକୃତ ତଥ୍ୟ ଜଣାଇଦେଲି । ଏବେ ଆପଣ ଯାହା ଉଚିତ ମନେ କରୁଛନ୍ତି, ତାହାହିଁ କରନ୍ତୁ । ମୋତେ ଆପଣ ଦଣ୍ଡ ଦେଇପାରନ୍ତି, କିନ୍ତୁ ଏଥିରେ ମୋର କିଛି ଦୋଷ ନାହିଁ ।''

ଛାୟାର ଉତ୍ତରରେ ସନ୍ତୁଷ୍ଟ ହୋଇ ସୂର୍ଯ୍ୟଦେବ ସଂଜ୍ଞାଙ୍କୁ ଅନୁସନ୍ଧାନ କରିବା ପାଇଁ ବିଶ୍ୱକର୍ମାଙ୍କ ଭବନରେ ପଦାର୍ପଣ କଲେ । ସେ କ୍ରୋଧ ପ୍ରକାଶ କରି ବିଶ୍ୱକର୍ମାଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ । ବିଶ୍ୱକର୍ମା ଜ୍ୱାଇଁଙ୍କର ଅଭିଯୋଗ ଜାଣି ଅତ୍ୟନ୍ତ ସ୍ନେହପୂର୍ଣ୍ଣ ସ୍ୱରରେ କହିଲେ—''ସୂର୍ଯ୍ୟଦେବ, ତୁମେ କ୍ରୋଧ ତ୍ୟାଗ କର । ସଂଜ୍ଞା ଅବଶ୍ୟ ପ୍ରଥମେ ମୋ' ଘରକୁ ଆସିଥିଲା, କିନ୍ତୁ ମୁଁ ତାକୁ ବୁଝାଇ ଶୁଝାଇ ଏଠାରୁ ଫେରାଇ ଦେଇଛି । ସେ ତୁମ ଘରକୁ ଯାଇନାହିଁ ବୋଲି ମୁଁ ତୁମରି ମୁହଁରୁ ଶୁଣୁଛି ।''

ବିଶ୍ୱକର୍ମାଙ୍କ ଉତ୍ତରରେ ସୂର୍ଯ୍ୟ ଅତ୍ୟନ୍ତ କ୍ଷୁଣ୍ଣ ହୋଇ କହିଲେ—''ମୋ' ଗୃହ ତ୍ୟାଗର କାରଣ ମୁଁ ଜାଣିପାରୁ ନାହିଁ । ମୋ' ଘରେ ଅବା ଅଭାବ କ'ଣ ?''

ଏହାଶୁଣି ବିଶ୍ୱକର୍ମା ଗମ୍ଭୀର ହୋଇ କହିଲେ—"ସୂର୍ଯ୍ୟଦେବ, ତୁମେ ଖରାପ ଭାବିବ ନାହିଁ । ସ୍ତ୍ରୀ ଧନରତ୍ନ ତଥା ବସନଭୂଷଣ କିମ୍ବା ପାନ ଭୋଜନରେ ଆଦୌ ପରିତୃପ୍ତ ହୁଏନାହିଁ, ସେ ସର୍ବଦା ଲୋଡ଼େ ସ୍ୱାମୀର ସ୍ନେହ । ସ୍ନେହ ଓ ପ୍ରେମରେ ନାରୀ ସଦାସର୍ବଦା ବନ୍ଦିନୀ ହୋଇଥାଏ । ସଂଜ୍ଞା ତୁମର ପ୍ରଚଣ୍ଡ ତେଜକୁ ସହ୍ୟ କରିପାରୁ ନାହିଁ । ଉଭୟଙ୍କ ମଧ୍ୟରେ ବିଷମତା ରହିଥିବାରୁ ତୁମ ଦୁହିଙ୍କ ପ୍ରେମ ଆଦୌ ସଫଳ ହୋଇପାରୁ ନାହିଁ । ତୁମେ ନିଜର ତେଜ କ୍ଷୀଣ କରି ସଂଜ୍ଞାକୁ ଅରଣ୍ୟରେ ଅନ୍ୱେଷଣ କର ।"

ଏହାଶୁଣି ସୂର୍ଯ୍ୟଦେବ ଘୋଡ଼ାରୂପ ଧାରଣ କରି ଅରଣ୍ୟରେ ବୁଲି ନିଜ ପତ୍ନୀଙ୍କୁ ଅନ୍ୱେଷଣ କଲେ । ଶେଷରେ ସେ ଘୋଡ଼ୀରୂପ ଧରି ବନରେ ବୁଲୁଥିବା ନିଜ ପତ୍ନୀ ସହିତ ମିଳିତ ହେଲେ । ଉଭୟଙ୍କ ସଙ୍ଗମ ଫଳରେ ଦେବତୁଲ୍ୟ ଦୁଇଟି ପୁତ୍ର ଉତ୍ପନ୍ନ ହେଲେ । ତାଙ୍କର ନାମ ହେଲା ଅଶ୍ୱିନୀ କୁମାର । ସେ ଦୁଇଜଣ ସବୁବେଳେ ଏକତ୍ର ବିଚରଣ କରନ୍ତି ଏବଂ ଦୁହେଁ ହେଉଛନ୍ତି – ଦେବବୈଦ୍ୟ ।

ଏହାପରେ ପତି ପତ୍ନୀ ଦୁହେଁ ବିଶ୍ୱକର୍ମାଙ୍କ ନିକଟକୁ ଫେରି ଆସିଲେ । ସୂର୍ଯ୍ୟଙ୍କ ଅନୁରୋଧ ଅନୁସାରେ ବିଶ୍ୱକର୍ମା ତାଙ୍କୁ ଚତୁଃପାର୍ଶ୍ୱରୁ କିଛି କିଛି ଅଂଶ କାଟି ସୁନ୍ଦର କରି ତାଙ୍କ ତେଜ ଊଣା କରିଦେବାର ଆୟୋଜନ କଲେ । ତଥାପି ତାଙ୍କ ତେଜ ଊଣା ନ ହେବାରୁ, ସେ ସୂର୍ଯ୍ୟଙ୍କୁ ଦ୍ୱାଦଶ ଭାଗରେ ବିଭକ୍ତ କରିଦେଲେ । ସୂର୍ଯ୍ୟଙ୍କ ଶରୀରର ଯେଉଁ ଅଂଶତକ ବିଶ୍ୱକର୍ମା କାଟି ଦେଇଥିଲେ, ସେଥିରୁ ସେ ବିଷ୍ଣୁଙ୍କ ସୁଦର୍ଶନ ଚକ୍ର, ଶିବଙ୍କ ତ୍ରିଶୂଳ ଓ ଅଜଗବ ଧନୁ ଏବଂ ଇନ୍ଦ୍ରଙ୍କ ନିମିତ୍ତ ବଜ୍ର ନିର୍ମାଣ କରିଦେଲେ ।

ଏହାଶୁଣି ଶୌନକ ଋଷି ହସି କହିଲେ "ସୂତମୁନି, ସୂର୍ଯ୍ୟ କ'ଣ ଗୋଟିଏ ଲୌହପିଣ୍ଡ ନା, ଅନ୍ୟ କୌଣସି ଧାତୁରେ ତିଆରି ଗୋଟିଏ ଦ୍ରବ୍ୟ ? ସେଥିରୁ କିଛି ଅଂଶ କଟାଯାଇ ପାରିଲା କିପରି ?"

ଶୌନକଙ୍କ ମନରୁ ସନ୍ଦେହ ମୋଚନ କରି ସୂତ ମହର୍ଷି କହିଲେ—"ହେ ମୁନିଶ୍ରେଷ୍ଠ, ସଂସାରର ପ୍ରତ୍ୟେକ ବସ୍ତୁକୁ ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ଦୃଷ୍ଟିରୁ ବିଚାର କରାଯାଇଛି । ପ୍ରତ୍ୟେକଙ୍କଠାରେ ଗୋଟିଏ ରୂପକ ଆରୋପ କରାଯାଇଛି । ଏହି ସଂସାର ହେଉଛି— ଗୋଟିଏ କାଳଚକ୍ର । ଏହି କାଳଚକ୍ରରେ ବସି ଯେଉଁମାନେ ପରୋପକାରରେ ନିଜର ଅଂଶକୁ ବିନିଯୋଗ ନ କରନ୍ତି । ସେମାନେ ସର୍ବାନ୍ତର୍ଯ୍ୟାମୀ ପରମେଶ୍ୱରଙ୍କୁ ସନ୍ତୁଷ୍ଟ କରିପାରନ୍ତି ନାହିଁ । ତେଣୁ ପ୍ରତ୍ୟେକଙ୍କର

କର୍ତ୍ତବ୍ୟ ହେଉଛି—ନମ୍ରହୋଇ ସଦାସର୍ବଦା ପରୋପକାରରେ ନିଜକୁ ବିନିଯୋଗ କରିବା । ଆଧିଦୈବିକ ଦୃଷ୍ଟିରୁ ଦେବତାମାନଙ୍କୁ ଯେ କୌଣସି ରୂପରେ ପରମାତ୍ମା ନିର୍ମାଣ କରିପାରନ୍ତି । ”

ସୂତଙ୍କ ମୁଖରୁ ଏ ପ୍ରକାର ଉତ୍ତର ଶୁଣି ଶୌନକ ସନ୍ତୁଷ୍ଟ ହୋଇ ପରବର୍ତ୍ତୀ ବିଷୟ ଶୁଣିବା ଲାଗି ଅନୁରୋଧ କଲେ । ତହୁଁ ସୂତ ମହର୍ଷି ଆଲୋଚନା ଆରମ୍ଭ କରି କହିଲେ “ବିବସ୍ୱାନ୍‌ଙ୍କର ଜ୍ୟେଷ୍ଠପୁତ୍ର ଶ୍ରାଦ୍ଧଦେବ ଏହି ମନ୍ୱନ୍ତରରେ ମନୁ ପଦରେ ଅଧିଷ୍ଠିତ ହୋଇଥିଲେ । ଅନ୍ୟତମ ପୁତ୍ର ଯମ କଠୋର ତପଃସାଧନରେ ବ୍ରତୀହୋଇ ଲୋକପାଳ ପଦଲାଭ କରିଥିଲେ । ସେ ଲୋକମାନଙ୍କ ପାପପୁଣ୍ୟର ବିଗ୍ଭର କରି ତଦନୁସାରେ ଶାସନ କଲେ । ଯମଙ୍କର ଭଗିନୀ ଯମୁନା ବିଷ୍ଣୁଙ୍କ ପାଟରାଣୀ ହୋଇ ପାପୀମାନଙ୍କୁ ଉଦ୍ଧାର କଲେ । ଛାୟାଙ୍କର ପ୍ରଥମ ପୁତ୍ର ସାବର୍ଣ୍ଣି ଅଦ୍ୟାପି ସୁମେରୁ ପର୍ବତରେ ତପସ୍ୟା କରୁଛନ୍ତି । ସେ ଆଗାମୀ ମନ୍ୱନ୍ତରରେ ମନୁରୂପେ ଅଧିଷ୍ଠିତ ହେବେ । ତାଙ୍କର ଅନ୍ୟତମ ପୁତ୍ର ଶନୈଶ୍ଚର ଗ୍ରହ ରୂପେ ବିରାଜମାନ କରିଛନ୍ତି । ସେ ଶନୈଃ ଶନୈଃ ଅର୍ଥାତ୍ ଧୀରେ ଧୀରେ ବିଚରଣ କରୁଥିବାରୁ ତାଙ୍କ ନାମ ଶନୈଶ୍ଚର ହୋଇଛି । ଜ୍ୟୋତିଶ୍ଚକ୍ରର ପରିକ୍ରମା କରିବାଲାଗି ଅନ୍ୟାନ୍ୟ ଗ୍ରହ-ମାନଙ୍କୁ ଅଢ଼େଇଦିନ, ଏକମାସ, ଏକବର୍ଷ ସମୟ ଲାଗୁଥିବାବେଳେ ଶନୈଶ୍ଚରଙ୍କୁ ଅଢ଼େଇ ବର୍ଷ ସମୟ ଲାଗେ । ଏହି ଚଳନ ସମୟରେ ସେ ଯାହା ଆଡ଼କୁ ଦୃଷ୍ଟି ଦିଅନ୍ତି, ତା'ର ମହାନ୍ ଅନିଷ୍ଟ ଘଟିଥାଏ । ଏହାଙ୍କ ଭଗିନୀ ତପତୀ ରାଜା ସମ୍ବରଣଙ୍କୁ ବିବାହ କରିଥିଲେ ଏବଂ ସେ ପରବର୍ତ୍ତୀ କାଳରେ ଗୋଟିଏ ନଦୀ ହୋଇ ପ୍ରବାହିତ ହୋଇଥିଲେ ।

ଏହି ଭାଇମାନେ ପ୍ରତ୍ୟେକ ନିଜ ନିଜ କାର୍ଯ୍ୟରେ ଅଧିଷ୍ଠିତ ହୋଇ ଜନ-ସାଧାରଣଙ୍କୁ କର୍ମ ଅନୁସାରେ ଫଳ ପ୍ରଦାନ କରୁଥିଲେ । ଯମୁନା ଯମର ଭଗିନୀ ହୋଇଥିବାରୁ, ସେ ନିଜ ଭାଇଙ୍କଠାରୁ କେତେକ ସୁବିଧା ହାସଲ କରିଥିଲେ । ତା'ର ଫଳରେ ସେ ପାପୀମାନଙ୍କୁ ଅନାୟାସରେ ଉଦ୍ଧାର କରିଦିଅନ୍ତି । ସେ ସର୍ବଦା ଯମଙ୍କ କ୍ରୂର—ବ୍ୟବହାରରେ ମନେ ମନେ ବିଚଳିତ ହୋଇ ପଚାରନ୍ତି—“ଭାଇ, ତୁମେ ଏତେ ନିର୍ଦ୍ଦୟ ହୋଇପାରୁଛ କିପରି ?

ଯମରାଜ ସାନ ଭଉଣୀର ପିଲାଳିଆ ପ୍ରଶ୍ନରେ ବିରକ୍ତି ପ୍ରକାଶ କରି କହନ୍ତି— “ତୁ ଗୋଟିଏ ସାମାନ୍ୟ ନାରୀ, ତୋର ଏତେ ବୁଦ୍ଧି ଆସିବ କୁଆଡ଼ୁ ? ମୁଁ

ବିନା କାରଣରେ କାହାରିକୁ ଦଣ୍ଡ ଦିଏ ନାହିଁ । ଲୋକମାନେ ଯେପରି କାର୍ଯ୍ୟ କରନ୍ତି, ମୁଁ ସେହି ଅନୁସାରେ ସେମାନଙ୍କୁ ଫଳଦେଇ ମୋର କର୍ତ୍ତବ୍ୟ ସମ୍ପାଦନ କରେ । ଏହାହିଁ ହେଉଛି—ମୋର ଧର୍ମ ।”

ଯମଦେବଙ୍କ ଉତ୍ତରରେ ବିସ୍ମିତା ଯମୁନା କିଛି ସମୟ ନୀରବ ହୋଇଯାଇ ପୁଣି ନିଜ ଘରକୁ ଫିରିବାପାଇଁ ଯମଙ୍କୁ ଅନୁରୋଧ କରେ । କିନ୍ତୁ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତରହି ଯମ ଆଦୌ ଭଉଣୀର ଅନୁରୋଧ ରକ୍ଷା କରିପାରନ୍ତି ନାହିଁ ।

ଦିନେ ଯମରାଜ ସମସ୍ତ କାର୍ଯ୍ୟ ଶେଷ କରି ଯମୁନାର ଅନୁରୋଧ ରକ୍ଷା କରିବା ଲାଗି ତା' ଗୃହରେ ଉପସ୍ଥିତ ହେଲେ । ଯମୁନା ଭାଇଙ୍କୁ ଦେଖି ମନେ ମନେ ଆନନ୍ଦିତା ହୋଇ, ତାଙ୍କୁ ଆଦରର ସହିତ ସତ୍କାର କରିବାକୁ ଲାଗିଲା । ସେ ନିଜ ହାତରେ ଅନେକ ପ୍ରକାର ସୁସ୍ୱାଦୁ ମିଷ୍ଟାନ୍ନ ଓ ବ୍ୟଞ୍ଜନ ପ୍ରସ୍ତୁତ କଲେ । ସେ ଯମରାଜଙ୍କୁ ପୁଷ୍ପମାଲ୍ୟ, ଚନ୍ଦନ ଦେଇ ଅଭ୍ୟର୍ଥନା କରିବା ସଙ୍ଗେ ସଙ୍ଗେ ଭୋଜନ କରାଇଲେ । ଯମୁନାର ସତ୍କାରରେ ଯମରାଜ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ଭଗିନୀର ଇଚ୍ଛାନୁସାରେ ବର ପ୍ରଦାନ କରିବାକୁ ପ୍ରତିଶ୍ରୁତି ଦେଲେ । ତହୁଁ ଯମୁନା ପ୍ରୀତ ହୋଇ କହିଲେ—“ଭାଇ, ଆଜି ଯେଉଁ ଭଉଣୀମାନେ ଭାଇମାନଙ୍କୁ ଭୋଜନ ପାନରେ ସନ୍ତୁଷ୍ଟ କରାଇବେ, ସେହି ଭାଇ ଓ ଭଉଣୀମାନେ ଯମ ଯାତନାରୁ ମୁକ୍ତି ଲାଭ କରିବା ଲାଗି ମୋତେ ବର ପ୍ରଦାନ କରନ୍ତୁ ।”

ଯମ ଏହା ଶୁଣି ହସି ହସି କହିଲେ—“ଯମୁନା, ତୁ ମୋତେ ଠକାଇ-ଦେଇ ମୋ'ଠାରୁ ଗୋଟିଏ ଅଦ୍‌ଭୁତ ବର ମାଗିନେଲୁ । ଆଜି ହେଉଛି—ଦୀପାବଳୀର ପରବର୍ତ୍ତୀ ଶୁକ୍ଳ ଦ୍ୱିତୀୟା । ଏହି ଦିନଟି ଆଜିଠାରୁ 'ଭ୍ରାତୃଦ୍ୱିତୀୟା' ନାମରେ ପ୍ରଖ୍ୟାତି ଅର୍ଜ୍ଜନ କରୁ ।”

ସୂତମୁନି କହିଲେ “ହେ ଶୌନକ,”—“ସେହି କାଳରୁ ଭ୍ରାତୃଦ୍ୱିତୀୟା ପର୍ବ ଜନସମାଜରେ ପାଳିତ ହୋଇ ଆସୁଛି । ସେହି ପବିତ୍ର ଦିବସରେ ଭଉଣୀମାନେ ଭାଇମାନଙ୍କୁ ଦିବ୍ୟ ଭୋଜନରେ ତୃପ୍ତ କରାଇ ଯଥାଶକ୍ତି ଦକ୍ଷିଣା ପ୍ରଦାନ କରନ୍ତି । ତାହା ଫଳରେ ଭାଇଭଉଣୀ ଉଭୟେ ଯମଯାତନାରୁ ମୁକ୍ତ ହୋଇଥାଆନ୍ତି । ସେହିଦିନ ଲୋକମାନେ ଯମୁନାରେ ସ୍ନାନ କରନ୍ତି ଏବଂ ଭଉଣୀମାନେ ଯମୁନା ନଦୀ କୂଳରେ ଭାଇମାନଙ୍କୁ ଖୁଆଇବା ପାଇଁ ଚେଷ୍ଟା କରନ୍ତି । ତାହା ଯଦି ସମ୍ଭବ ନ ହୁଏ, ତେବେ ସେମାନେ ନିଜ ନିଜ ଗୃହରେ ଭାଇମାନଙ୍କୁ ଭୋଜନ ଓ ପାନରେ ପରିତୃପ୍ତ କରନ୍ତି ।

"ହେ ମୁନିଗଣ, ମୁଁ ଆପଣମାନଙ୍କ ଆଗରେ ସୂର୍ଯ୍ୟଦେବ ଓ ତାଙ୍କ ପରିବାର ସମ୍ପର୍କରେ ବିଶେଷ ବିବରଣୀ ପ୍ରଦାନ କଲି । ଏହାପରେ ମୁଁ ଅନ୍ୟାନ୍ୟ ମନ୍ୱନ୍ତର ସମ୍ପର୍କରେ ଆପଣମାନଙ୍କୁ ଶୁଣାଇବି "

## ଛପ୍ପୟ

"ସଂଜ୍ଞା ଛାୟା ଛାଡ଼ି ଗଲେ ବନ ବଡ଼ବାବନି କେ ।
ଦୁଃଖିତ ଦିବାକର ଭେଟୟି ସଶ୍ୱରଙ୍କୁ ସବ କହୁ ସୂନକେ ।
ସୃଜିବା ବନ କେ ବୈଦ୍ୟ ଅଶ୍ୱିନୀ କୁମାର ଜନାୟେ ।
ସଂଜ୍ଞା କଁଲେ ସଙ୍ଗ ସଶ୍ୱର ଡ଼ିଁଗସୂରିଜ ଆୟେ ।
ସଶ୍ୱର କରେ୍ୟ କୁଛତେଜ କମ, ରବି ଦ୍ୱାଦଶ ହୈଗୟେ ତବ ।
ବିବସ୍ୱାନ କୋ ବଂଶ ଯୁହ, ରାଜନ୍; ତୁମତୋଂ କହେ୍ୟ ସବ ॥



# ସପ୍ତମନ୍ୱନ୍ତରକଥା

'ଋକଂଶ୍ଚତୁର୍ଦ୍ଦଶୈତାନି ତ୍ରିକାଳାନୁଗତାନି ତେ ।
ପ୍ରୋକ୍ତା ନେଭିର୍ମିତଃ କଲ୍ପୋ ଯୁଗସାହସ୍ର ପର୍ଯ୍ୟୟଃ ।''
(ଭା. ୮: ୧୩. ୩୬.)

## ଛପ୍ପୟ

'"ଅଷ୍ଟମ ମନୁ ସାବର୍ଣ୍ଣି ହୋଇଁଗେ ସାବଭୌମ ହରି ।
ନଓେଁ ଦକ୍ଷସାବର୍ଣ୍ଣି ପ୍ରକଟ ହରି ଋଷଭ ନାମ ଧରି ।
ଦଶମ ବ୍ରହ୍ମ ସାବର୍ଣ୍ଣି ବିଶ୍ୱସେନହୁ ହୋଁଗେ ବିଭୁ ।
ଏକାଦଶ ସାବର୍ଣ୍ଣି ଧର୍ମ ମନୁ ଧର୍ମସେତୁ ପ୍ରଭୁ ।
ରୁଦ୍ରସବର୍ଣ୍ଣି ବାରଓେଂ ଅଂଶ ସୁଧାମା ଶ୍ୟାମକେ ।
ଦେବସବର୍ଣ୍ଣୀ ତେରଓେଂ ଯୋଗେଶ୍ୱର ହରି ନାମ କେ ।'

ଅର୍ଥାତ୍—ଶୁକଦେବ କହିଲେ ''ହେ ରାଜନ''—ଏହିପରି ଭାବରେ ଭୂତ, ଭବିଷ୍ୟ ତଥା ବର୍ତ୍ତମାନ କାଳର ଚତୁର୍ଦ୍ଦଶମନୁଙ୍କ କଥା ଶୁଣାଇଲି । ଏଥିରୁ ହିଁ ସହସ୍ର ଯୁଗ ପର୍ଯ୍ୟନ୍ତ ଅଧିଷ୍ଠିତ ବ୍ରହ୍ମାଙ୍କର ଗୋଟିଏ ମାତ୍ର ଦିନ ହୋଇଥାଏ । ତାହାର ନାମ ହେଉଛି—କଳ୍ପ ।

କଥା ଶୁଣିବାବେଳେ ଲୋକମାନେ ବଂଶାବଳୀ ଶୁଣିବା ଲାଗି ବିଶେଷ ଆଗ୍ରହୀ ହୁଅନ୍ତି ନାହିଁ । କାରଣ କିଏ କାହା ପୁତ୍ର, କିଏ କାହା ନାତି କିମ୍ବା ମନ୍ତ୍ରୀ ଓ ପୁରୋହିତଙ୍କ ନାମ ଶୁଣିବାରେ ସେମାନଙ୍କ ମନରେ ରସାନୁଭୂତି ହୁଏ ନାହିଁ । କଥା ମଧ୍ୟରେ ଯଦି କିଛି ବିଶେଷ ଘଟଣା ଥାଏ, ତେବେ ମନରେ ସେହି ଅଂଶତକ ଶୁଣିବା-ଲାଗି ଆଗ୍ରହ ଜାତ ହୋଇଥାଏ । କିନ୍ତୁ କଥା ପ୍ରସଙ୍ଗରେ ବଂଶାବଳୀର ଆବଶ୍ୟକତା ରହିଛି । ବଂଶାବଳୀ ମଧ୍ୟରେ ବହୁ ବିଶିଷ୍ଟ ପୁଣ୍ୟାତ୍ମାଙ୍କର ନାମ ଶୁଣିବାକୁ ମିଳେ ଏବଂ ସେହି ନାମ ଶ୍ରବଣରେ ମୁକ୍ତି ଲାଭ ହୋଇଥାଏ । ତା' ବ୍ୟତୀତ ବଂଶାବଳୀର ବର୍ଣ୍ଣନା ନ କଲେ, ଆଗକୁ କଥାର ଧାରା କିପରି ପ୍ରବାହିତ ହେବ ? ମୂଳ ବୀଜ

ପୋତା ନ ଗଲେ, ମହାଦ୍ରୁମ ଶାଖା ପ୍ରଶାଖା ପ୍ରସାର କରି ବଢ଼ିବ କିପରି ? ତେଣୁ ବଂଶାବଳୀ ଚରିତ ବିରକ୍ତିକର ହେଲେ ମଧ୍ୟ ତାହାକୁ ଧୈର୍ଯ୍ୟର ସହିତ ଶୁଣିବା ଉଚିତ ।"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ମୁଁ ବର୍ତ୍ତମାନ ଯୁଦ୍ଧା ଆପଣଙ୍କ ଆଗରେ ସାତଗୋଟି ମନ୍ୱନ୍ତର ସମ୍ବନ୍ଧରେ କହିସାରିଲିଣି । ଅବଶିଷ୍ଟ ସାତୋଟି ମନ୍ୱନ୍ତର ବିଷୟରେ ଆପଣଙ୍କୁ ଶୁଣାଇବି ।"

ଏହା ଶୁଣିବାମାତ୍ରେ ରାଜା ପରୀକ୍ଷିତ କହିଲେ —"ହେ ଭଗବାନ୍, ବର୍ତ୍ତମାନ ଆପଣ ଯେଉଁ ସପ୍ତମ ମନ୍ୱନ୍ତର କଥା କହିଲେ, ତାହା ଅତି ସଂକ୍ଷେପରେ ବର୍ଣ୍ଣନା କରିଗଲେ । ଏହି ମନ୍ୱନ୍ତରରେ ଜାତ ହୋଇଥିବା ବାମନଙ୍କ ଚରିତ ଆପଣ ବର୍ଣ୍ଣନା କଲେ ନାହିଁ । ଏ'ଗୁଡ଼ିକୁ ଆପଣ ଟିକିଏ ବିସ୍ତାରପୂର୍ବକ ବର୍ଣ୍ଣନା କରନ୍ତୁ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍, ବୈବସ୍ୱତ ମନୁଙ୍କ ବଂଶର ବର୍ଣ୍ଣନା ମୁଁ ବିସ୍ତାର ପୂର୍ବକ ଆପଣଙ୍କ ଆଗରେ କରିବି । ବାମନଙ୍କ ଚରିତ ମଧ୍ୟ ଆପଣଙ୍କୁ ଶୁଣାଇବି । କିନ୍ତୁ ଆଉ ଯେଉଁ ସାତୋଟି ମନୁ ରହିଲେ ସେମାନଙ୍କ ଚରିତ ଆପଣ ସଂକ୍ଷେପରେ ଶୁଣନ୍ତୁ ।"

ରାଜା ପରୀକ୍ଷିତ ଅତ୍ୟନ୍ତ ପ୍ରୀତ ହୋଇ କହିଲେ—"ହେ ମୁନିବର, ଯାହା ଆପଣଙ୍କ ଇଚ୍ଛା, ସେହିପରି ଭାବରେ ମୋତେ ଭାଗବତ୍ ଚରିତ ଶୁଣାଇ ଦିଅନ୍ତୁ ।"

ରାଜା ପରୀକ୍ଷିତଙ୍କ ଉତ୍ତର ଶୁଣି ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ଛାୟାଦେବୀଙ୍କ ସୁତ ସାବର୍ଣ୍ଣି ଅଷ୍ଟମ ମନୁରୂପେ ପ୍ରତିଷ୍ଠିତ ହେବେ । ତାଙ୍କଠାରୁ ନିର୍ମୋହ ଓ ବିରଜସ୍କ ପୁତ୍ର ଜାତ ହେବେ । ବିରୋଚନଙ୍କ ପୁତ୍ର ବଳି ସେହି ମନ୍ୱନ୍ତରରେ ଇନ୍ଦ୍ର ହୋଇ ସ୍ୱର୍ଗ ପ୍ରତିପାଳନ କରିବେ । ପରେ ସେ ଇନ୍ଦ୍ରପଦ ତ୍ୟାଗ କରି ମୁକ୍ତିପ୍ରଦ ମାର୍ଗର ପଥିକ ହେବେ, ସେହି ଅବସରରେ ଗାଲବ, ଦୀପ୍ତିମାନ୍, ପରଶୁରାମ, ଅଶ୍ୱତ୍ଥାମା, କୃପାଚାର୍ଯ୍ୟ, ଋଷ୍ୟଶୃଙ୍ଗ ଓ ବ୍ୟାସଦେବ ସପ୍ତର୍ଷି ନାମରେ କଥିତ ହେବେ । ବ୍ୟାସଦେବ ପ୍ରମୁଖ ଋଷିଗଣ ବର୍ତ୍ତମାନ ନିଜ ନିଜ ଆଶ୍ରମରେ ସମାଧି ଅବସ୍ଥାରେ ରହିଛନ୍ତି । ସେହି ମନ୍ୱନ୍ତରରେ ଭଗବାନ୍ 'ସାର୍ବଭୌମ' ନାମରେ ଅବତାର ଗ୍ରହଣ କରିବେ ତାଙ୍କ ମାତା ପିତାଙ୍କ ନାମ ଯଥାକ୍ରମେ ସରସ୍ୱତୀ ଓ ଦେବଗୁହ୍ୟ ହେବ । ସେ ବର୍ତ୍ତମାନର ଇନ୍ଦ୍ରଙ୍କଠାରୁ ଇନ୍ଦ୍ରପଦ ଛଡ଼ାଇ ଆଣି, ସେଠାରେ ବଳିଙ୍କୁ ଇନ୍ଦ୍ର ରୂପେ ଅଧିଷ୍ଠିତ କରାଇବେ ।

ନବମ ମନୁରୂପେ ପ୍ରଖ୍ୟାତ ଅର୍ଜନ କରିବେ ବରୁଣଙ୍କ ପୁତ୍ର ଦକ୍ଷସାବର୍ଣ୍ଣି । ତାଙ୍କଠାରୁ ଭୂତକେତୁ ଓ ଦୀପ୍ତକେତୁ ନାମରେ ପୁତ୍ର ଜାତ ହେବେ । ପାର ଓ ମରୀଚଗର୍ଭ ଆଦି ଦେବଗଣମାନେ ସେହି ସମୟରେ ପ୍ରଖ୍ୟାତ ଅର୍ଜନ କରିବେ । ଇନ୍ଦ୍ରଙ୍କ ନାମ ହେବ—ଅଦଭୁତ ଏବଂ ଦ୍ୟୁତିମାନ୍ ଆଦି ଋଷିଗଣ ସପ୍ତର୍ଷିରୂପେ ପରିଗଣିତ ହେବେ । ସେହି ମନ୍ୱନ୍ତରରେ ଭଗବାନ୍ ଆୟୁଷ୍ମାନ୍ ଓ ଭଗବତୀ ଅମ୍ବୁଧାରାଙ୍କଠାରୁ 'ଋଷଭ' ଅବତାର ଗ୍ରହଣ କରିବେ । ସେ ଇନ୍ଦ୍ରଙ୍କୁ ତ୍ରୈଲୋକ୍ୟର ଅଧିକାର ପ୍ରଦାନ କରିବେ ।

ଦଶମ ମନୁରୂପେ ପ୍ରତିଷ୍ଠା ଅର୍ଜନ କରିବେ ଉପଶ୍ଳୋକଙ୍କ ପୁତ୍ର ବ୍ରହ୍ମସାବର୍ଣ୍ଣି । ତାଙ୍କଠାରୁ ଭୂରିଷେଣ ଆଦି ପୁତ୍ର ଜାତ ହେବେ ଏବଂ ସେହି ସମୟରେ ହବିଷ୍ମାନ୍, ସୁକୃତ, ସତ୍ୟ, ଜୟ ଓ ମୂର୍ତ୍ତି ଆଦି ମୁନିମାନେ ସପ୍ତର୍ଷି ନାମରେ ନାମିତ ହେବେ । ସୁବାସନ ଓ ବିରୁଦ୍ଧ ଆଦି ଦେବଗଣ ତଥା ଶମ୍ଭୁ ନାମକ ଇନ୍ଦ୍ର ସ୍ୱର୍ଗରେ ଅଧିଷ୍ଠିତ ହେବେ । ଏହି ମନ୍ୱନ୍ତରରେ ଭଗବାନ୍ ବିଶ୍ୱକ୍ସେନ ଭଗବତୀ ବିଷୂଚି ଓ ବିଶ୍ୱସୃଷ୍ଟାଙ୍କ କୋଳ ମଣ୍ଡନ କରି ଜନ୍ମଗ୍ରହଣ କରିବା ସଙ୍ଗେ ସଙ୍ଗେ ଶମ୍ଭୁ ନାମକ ଇନ୍ଦ୍ରଙ୍କୁ ଶତକ୍ରତୁ ନାମରେ ପ୍ରଖ୍ୟାତ କରାଇବେ ।

ଏକାଦଶ ମନୁରୂପେ ପ୍ରତିଷ୍ଠିତ ହେବେ—ଧର୍ମସାବର୍ଣ୍ଣି । ତାଙ୍କଠାରୁ ସତ୍ୟ ଓ ଧର୍ମ ଆଦି ଦଶଗୋଟି ପୁତ୍ର ଜାତ ହେବେ । ସେ ସମୟରେ ବିହଙ୍ଗମ, କାମଗମ ଓ ନିର୍ବାଣ ରୁଚି ପ୍ରଭୃତି ଦେବଗଣରୂପେ ପ୍ରଖ୍ୟାତି ଅର୍ଜନ କରିବେ ଏବଂ ଇନ୍ଦ୍ରଙ୍କ ନାମ ହେବ—ବୈଧୃତ । ଅରୁଣ ଆଦି ମୁନିଗଣ ସପ୍ତର୍ଷି ମଣ୍ଡଳରେ ଅଧିଷ୍ଠାନ କରିବେ । ଭଗବାନ୍ ଆର୍ଯ୍ୟକଙ୍କ ଔରସ ତଥା ବୈଧୃତାଙ୍କ ଗର୍ଭରୁ ମନ୍ୱନ୍ତରାବତାର ଧର୍ମସେତୁ ଅବତାର ଗ୍ରହଣ କରି ଇନ୍ଦ୍ରଙ୍କୁ ସାହାଯ୍ୟ ପ୍ରଦାନ କରିବେ ।

ଦ୍ୱାଦଶ ମନୁଙ୍କର ନାମ ହେବ ରୁଦ୍ରସାବର୍ଣ୍ଣି । ତାଙ୍କଠାରୁ ଦେବବାନ୍, ଉପଦେବ ଓ ଦେବଶ୍ରେଷ୍ଠ ଆଦି ପୁତ୍ର ଜାତ ହୋଇ ପୃଥିବୀ ପ୍ରତିପାଳନ କରିବେ । ସେହି ସମୟରେ ଋତଧାମା ଇନ୍ଦ୍ରପଦରେ ପ୍ରତିଷ୍ଠିତ ହେବେ । ସେହି ମନ୍ୱନ୍ତରରେ ହରିତ ଆଦି ଦେବଗଣ ତଥା ତପୋମୂର୍ତ୍ତି, ତପସ୍ୱୀ ଓ ଆଗ୍ନୀଧ୍ରକ ଆଦି ସପ୍ତମୁନି ସପ୍ତର୍ଷି ନାମରେ କଥିତ ହେବେ । ସତ୍ୟସହ ନାମକ ମୁନିଙ୍କ ଔରସରୁ ତାଙ୍କ ପତ୍ନୀ ସୁନୃତାଙ୍କ ଗର୍ଭରୁ ଭଗବାନ୍ 'ସ୍ୱଧାମ' ନାମରେ ଜନ୍ମଗ୍ରହଣ କରିବେ । ସେ ସୁଧାମା ନାମ ଧାରଣ କରି ସେହି ମନ୍ୱନ୍ତରରେ ଅଂଶାବତାର ରୂପେ ପୂଜିତ ହେବେ ।

ତ୍ରୟୋଦଶ ମନୁରୂପେ ଦେବସାବର୍ଣ୍ଣି ଅଧିଷ୍ଠିତ ହେବେ । ଚିତ୍ରସେନ ଓ ବିଚିତ୍ର ଆଦି ମନୁଙ୍କର ପୁତ୍ର ହେବେ । ସେହି ସମୟରେ ସୁକର୍ମ ଓ ସୁତ୍ରାମ ନାମକ ଦେବଗଣ ଓ ଇନ୍ଦ୍ରଙ୍କ ନାମ ହେବ ଦିବସ୍ପତି । ନିର୍ମୋକ ଏବଂ ତତ୍ତ୍ୱଦର୍ଶ ଆଦି ମହର୍ଷିଗଣ ସପ୍ତର୍ଷିରୂପେ ସେହି ସମୟରେ ପ୍ରତିଷ୍ଠିତ ହେବେ । ଦିବସ୍ପତି ଇନ୍ଦ୍ରଙ୍କୁ ତାଙ୍କ ପଦରେ ସାହାଯ୍ୟ କରିବା ଲାଗି 'ଯୋଗେଶ୍ୱର' ଭଗବାନ୍‌ଙ୍କ ଅବତାର ରୂପେ ଆବିର୍ଭୂତ ହେବେ । ତାଙ୍କ ମାତା ପିତାଙ୍କ ନାମ ହେବ ବୃହତୀ ଓ ଦେବହୋତ୍ର ।

ଚତୁର୍ଦ୍ଦଶ ମନୁ ରୂପେ ଇନ୍ଦ୍ର ସାବର୍ଣ୍ଣି ଅବତୀର୍ଣ୍ଣ ହେବେ । ଉରୁ ଓ ଗମ୍ଭୀର ବୁଦ୍ଧି ଆଦି ତାଙ୍କର ପୁତ୍ର ରୂପେ ଜନ୍ମଗ୍ରହଣ କରିବେ । ସେହି ସମୟ ମଧ୍ୟରେ ପବିତ୍ର ଓ ଚାକ୍ଷୁସ ଆଦି ଦେବଗଣ ଏବଂ ଶୁଚି ଇନ୍ଦ୍ର ପଦରେ ଅଧିଷ୍ଠିତ ହେବେ । ସପ୍ତର୍ଷି-ରୂପେ ସେହି ସମୟ ମଧ୍ୟରେ ଅଗ୍ନିବାହୁ, ଶୁଚି, ଶୁଦ୍ଧ ଏବଂ ମାଗଧ ପ୍ରତିଷ୍ଠା ଲାଭ କରିବେ । "ହେ ରାଜନ, ସେହି ମନ୍ୱନ୍ତରରେ ସତ୍ରାୟଣଙ୍କ ଔରସ ତଥା ମହାଭାଗ୍ୟବତୀ ବିତାନାଙ୍କ ଗର୍ଭରୁ ବୃହଦ୍‌ଭାନୁ ବିଷ୍ଣୁଙ୍କ ଅଂଶାବତାର ରୂପେ ଆବିର୍ଭୂତ ହୋଇ ମନ୍ୱନ୍ତର ତଥା ସଂସାରକୁ ପ୍ରତିପାଳନ କରିବେ ।"

"ହେ ରାଜନ୍," କହିଲେ ଶ୍ରୀ ଶୁକଦେବ—"ମୁଁ ଆପଣଙ୍କ ଆଗରେ ଅତୀତର ଛଅଜଣ, ଭବିଷ୍ୟତର ସାତଜଣ ତଥା ବର୍ତ୍ତମାନର ଜଣେ ମନୁଙ୍କ ସମ୍ବନ୍ଧରେ ବର୍ଣ୍ଣନା କଲି । ବ୍ରହ୍ମାଙ୍କର ଗୋଟିଏ ଦିବସରେ ଚଉଦଜଣ ମନୁ । ଚଉଦଜଣ ଇନ୍ଦ୍ର ତଥା ସପ୍ତର୍ଷି, ଦେବଗଣ, ମନୁ ପୁତ୍ର ତଥା ଚଉଦଜଣ ଅଂଶାବତାର ଭୋଗ କରିବେ । ଏହି ଚଉଦଟି ମନ୍ୱନ୍ତରରେ ଗୋଟିଏ 'କଳ୍ପ' ହୋଇଥାଏ । କଳ୍ପ ଶେଷରେ ତ୍ରିଲୋକ ନଷ୍ଟ ହୋଇଯାଏ ଏବଂ ନୈମିତ୍ତିକ ପ୍ରଳୟ ସଙ୍ଘଟିତ ହୋଇଥାଏ । ଏତିକ ସମୟ ଅତିବାହିତ ହେଲେ ବ୍ରହ୍ମାଙ୍କର ଗୋଟିଏ ରାତ୍ର ହୋଇଥାଏ । ଏହିପରି ଭାବରେ ତିନିଶହ ଷାଠିଏ ଦିବସ ଓ ରାତ୍ରି ମିଶି ବ୍ରହ୍ମାଙ୍କର ଗୋଟିଏ ବର୍ଷ ଅତିବାହିତ ହୁଏ । ନିଜ ବର୍ଷ ଗଣନାରେ, ବ୍ରହ୍ମା ଶହେ ବର୍ଷ ପର୍ଯ୍ୟନ୍ତ ଅଧିଷ୍ଠିତ ହୋଇଥାଆନ୍ତି । ଶହେ ବର୍ଷ ବିତିଯିବା ପରେ ଆଉଜଣେ ବ୍ରହ୍ମା ବ୍ରହ୍ମଲୋକରେ ଅଧିଷ୍ଠିତ ହୁଅନ୍ତି । ତାଙ୍କଠାରୁ ପୁଣି ପୂର୍ବପରି ସୃଷ୍ଟିର କ୍ରମ ଚାଲିଥାଏ । ଏହି କ୍ରମ ଅନାଦି କାଳରୁ ଚାଲିଆସୁଛି ଏବଂ ଅନନ୍ତକାଳ ପର୍ଯ୍ୟନ୍ତ ଏହା ନିରବଚ୍ଛିନ୍ନ ଭାବରେ ଚାଲିବ । ଏହାର କୌଣସି ବ୍ୟତିକ୍ରମ ହେବ ନାହିଁ । ଏହି କାଳଚକ୍ରରେ ପଡ଼ି ଯେଉଁ ମନୁଷ୍ୟ ମାତ୍ର ଶହେବର୍ଷ ବଞ୍ଚିରହେ ତା' ମନରେ ଗର୍ବ ଜାତ ହୋଇଥାଏ । ଏପରି ଅଭିମାନ କରିବା ନିତାନ୍ତ ପାପ କାର୍ଯ୍ୟ । ଶତାୟୁ ବ୍ୟକ୍ତି ଏହି ଅନନ୍ତ ସାଗର ମଧ୍ୟରେ ଗୋଟିଏ କ୍ଷୁଦ୍ରାତିକ୍ଷୁଦ୍ର ବିନ୍ଦୁ ତୁଲ୍ୟ । ସେଥିରେ

ଅଭିମାନର ଅବକାଶ ନାହିଁ । ଏଣୁ ହେ ରାଜନ୍, ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ ହେଉଛି—ମନରୁ ଅଭିମାନ ତଥା ଅହଂକାର ପରିତ୍ୟାଗ କରି ସେହି କାଳରୂପୀ କୃଷ୍ଣଙ୍କ ନାମ ସଂକୀର୍ତ୍ତନ କରିବା—

## ଛପ୍‌ପୟ

“ଚୈଦହବେଂ ସ ବର୍ତ୍ତି ଇନ୍ଦ୍ର ମନ୍ ହୋହି ତପସ୍ୱୀ ।
ସତ୍ରାୟଣ ପୁତ୍ର ବୃହଦ୍‌ଭାନୁ ହରି ହୋହି ଯଶସ୍ୱୀ ।।
ସ୍ୟୋଂ ଭବିଷ୍ୟ ଅଦ୍ଭୁତ କହେ ସ୍ୟେ ମନ୍ୱନ୍ତର ସବ ।
ଇନ୍ ସବକୋ କାକାଜ କରୁଁ ତାକୋ ବର୍ଣ୍ଣନ ଅବ ।।
ମନ୍ୱନ୍ତର କୀ ପୁଣ୍ୟମୟ ସୁନୈ କଥା ଜେ ପ୍ରେମ ଟେଂ ।
ହରି ପଦ ପାବେଂ କରେଁ ଜେ କଥା କୀରତନ ନେମ ଟେଂ ।।”



# ମନ୍ୱନ୍ତରର ମନୁ ଆଦିଙ୍କ କାର୍ଯ୍ୟ

"ମନ୍ୱନ୍ତରେଷୁ ଭଗବାନ୍ ଯଥା ମନ୍ୱାଦୟସ୍ତ୍ୱିମେ ।
ଯସ୍ମିନ୍ କର୍ମଣି ଯେ ଯେନ ନିଯୁକ୍ତାସ୍ତଦ୍ ବଦସ୍ୱ ମେ" ॥
(ଭା ୮।୧୪।୧)

"ମନ୍ୱନ୍ତର ପର୍ଯ୍ୟନ୍ତ କରେଁ ପାଳନ ମନୁ ଜଗ କୁଂ ।
ସବ ସପ୍ତର୍ଷି ସମୂହ ବତାୱେଂ ଶ୍ରୁତ କେ ମଗ କୁଂ ॥
ପୃଥିବୀ ପାଲନ କରେଁ ହୋହିଁ ଜେ ମନୁ କେ ବଂଶଜ ।
ଲେ କେଂ ହରି ଅବତାର କରୈଂ ପାଲନ ସୁରପତ ଅଜ ॥
ପୱେଂ ସବ ହୀଁ ଦେବଗନ ଭାଗ ଯଜ୍ଞ ଅରୁ ହୱ୍ୟ ମହିଁ ।
ସୁରପତ ବନ ଦେବେନ୍ଦ୍ର ହ୍ୱ ପୂଜିତ ହୋୱେଂ ସୁରନ ମହିଁ ॥"

ଅର୍ଥାତ୍ ରାଜା ପରୀକ୍ଷିତ ଶ୍ରୀ ଶୁକଦେବଙ୍କୁ ପଚାରିଲେ—"ହେ ଭଗବାନ୍, ଆପଣ ମନ୍ୱନ୍ତରର ମନୁ ତଥା ଇନ୍ଦ୍ରାଦିଙ୍କ ସମ୍ବନ୍ଧରେ ବର୍ଣ୍ଣନା କଲେ । ଭିନ୍ନ-ଭିନ୍ନ ମନ୍ୱନ୍ତରରେ ଯାହାଦ୍ୱାରା ଯେଉଁ କାର୍ଯ୍ୟ ସମାହିତ ହୋଇଛି, ଆପଣ ସେ ସମ୍ବନ୍ଧରେ ବର୍ଣ୍ଣନା କରନ୍ତୁ ।

ଏହି ଜଗତ ଗୋଟିଏ ନିୟମରେ ପରିଚାଳିତ ହେଉଛି । ସମସ୍ତଙ୍କର କାର୍ଯ୍ୟ ନିର୍ଦ୍ଦିଷ୍ଟ ତଥା କାର୍ଯ୍ୟକାଳ ମଧ୍ୟ ସୁନିର୍ଦ୍ଧାରିତ । ପ୍ରତ୍ୟେକଙ୍କର ଆୟୁଷ ଏବଂ ସୁଖ ଆଦି ପୂର୍ବରୁ ଲିପିବଦ୍ଧ ହୋଇଛି । ଯଦି ଏହା ହୋଇ ନଥାନ୍ତା, ତେବେ ଜ୍ୟୋତିଷ ଆଦି ସମସ୍ତ ଶାସ୍ତ୍ର ବ୍ୟର୍ଥ ହୋଇ ଯାଆନ୍ତା ! ଆମେମାନେ ଅଜ୍ଞତାବଶତଃ ଭବିଷ୍ୟ କର୍ମଚିନ୍ତା ସମ୍ପର୍କରେ ଜାଣୁ ନଥାଉଁ; ତେଣୁ ଅନ୍ଧକାରରେ ପଥଭ୍ରଷ୍ଟ ହେବା, ଆମ ପକ୍ଷରେ ଅତି ସହଜ ହେଉଛି । ଆମେମାନେ ତ୍ରିକାଳଜ୍ଞ ହୋଇଥିଲେ, ଆଉ ଆଶ୍ଚର୍ଯ୍ୟ ହୁଅନ୍ତେ ନାହିଁ । କିନ୍ତୁ ଜୀବ ଭ୍ରମପ୍ରମାଦବଶତଃ ଦୁଃଖ ଓ ସୁଖ ସମୟରେ ମ୍ରିୟମାଣ ଆନନ୍ଦିତ

ହୋଇଥାଏ । ସେମାନେ ସୃଷ୍ଟିର ରହସ୍ୟକୁ ଭଲଭାବରେ ହୃଦୟଙ୍ଗମ କରିପାରିଲେ, ତାହାର ମନରେ କୌଣସି ପ୍ରକାର ଚିନ୍ତା ଉଦ୍ରେକ ହୁଅନ୍ତା ନାହିଁ । ସେଇଥିପାଇଁ ଶାସ୍ତ୍ରମାନଙ୍କରେ ସୃଷ୍ଟିର ରହସ୍ୟ ସମ୍ବନ୍ଧରେ ବାରମ୍ବାର କୁହାଯାଇଛି । ଏହି ରହସ୍ୟକୁ ଭେଦ କରିପାରିଲେ ପ୍ରାଣୀ ଅନାୟସରେ ଶୋକ, ମୋହ, ଆନନ୍ଦ ତଥା ବିସ୍ମୟ ଆଦି ପ୍ରକ୍ରିୟାରୁ ମୁକ୍ତିଲାଭ କରିପାରିବ ।

ଭୂତ, ଭବିଷ୍ୟ ଓ ବର୍ତ୍ତମାନର ମନୁ, ମନୁପୁତ୍ର ତଥା ଅଂଶାବତାର ପ୍ରଭୃତିଙ୍କ ସମ୍ବନ୍ଧରେ ଶୁଣିବା ପରେ ମହାରାଜ ପରୀକ୍ଷିତ ପ୍ରଶ୍ନ କଲେ "ହେ ପ୍ରଭୋ, ମୁଁ ଆପଣଙ୍କ ଶ୍ରୀମୁଖରୁ ସବୁ ଶୁଣିଲି ସତ, କିନ୍ତୁ ମୁଁ କେବଳ ଏତିକିମାତ୍ର ବୁଝିଲି ଯେ, ସବୁକିଛି ଭଗବାନଙ୍କର ଲୀଳା ଖେଳା । ତଥାପି ପ୍ରତ୍ୟେକ ମନୁ, ମନୁପୁତ୍ର, ଇନ୍ଦ୍ର, ସପ୍ତର୍ଷି, ଦେବଗଣ, ଏବଂ ବିଷ୍ଣୁଙ୍କର ପୃଥକ୍ ପୃଥକ୍ ଅଂଶାବତାର ଆବିର୍ଭୂତ ହୋଇ କେଉଁ କେଉଁ କାର୍ଯ୍ୟରେ ବ୍ରତୀ ହୁଅନ୍ତି, ତାହା ମୋ' ଆଗରେ ବର୍ଣ୍ଣନା କରନ୍ତୁ ।

ପରୀକ୍ଷିତଙ୍କ ପ୍ରଶ୍ନ ଶୁଣି ଶ୍ରୀ ଶୁକଦେବ କହିଲେ—"ହେ ରାଜନ, ସୃଷ୍ଟିର ସୁରକ୍ଷା ନିମିତ୍ତ ଭଗବାନ୍ ବିଷ୍ଣୁ ଛଅ ରୂପରେ ଆବିର୍ଭୂତ ହୁଅନ୍ତି ସତ୍ୟ, କିନ୍ତୁ, ପ୍ରକୃତରେ ସେ ଏକ—ଅଦ୍ୱିତୀୟ । ପ୍ରଜାପାଳକ ପ୍ରଭୁଙ୍କର କଳା ବା ଅଂଶରୁ ଏହି ଅଂଶାବତାର ସୃଷ୍ଟ ହୋଇ ପରିଶେଷରେ ସେଇଥିରେ ବିଲୀନ ହୋଇଯାଆନ୍ତି । ବିଷ୍ଣୁ ପ୍ରତ୍ୟେକ ମନ୍ୱନ୍ତରରେ ଅବତାର ଗ୍ରହଣ କରି, ମନୁ, ଇନ୍ଦ୍ର, ସପ୍ତର୍ଷି ଓ ଦେବଗଣଙ୍କୁ ସମସ୍ତ ପ୍ରକାର ସଙ୍କଟରୁ ଉଦ୍ଧାର କରନ୍ତି ଏବଂ ଅସୁରମାନଙ୍କୁ ସମୁଚିତ ଦଣ୍ଡଦେଇ ସଂସାର ଯାତ୍ରା ନିର୍ବାହ କରନ୍ତି ।

ମନ୍ୱନ୍ତରର ଅଧିପତି ମନୁ ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟ ଓ ବିଷ୍ଣୁଙ୍କ ଦ୍ୱାରା ପ୍ରତି-ପାଳିତ ମାନବ ସମାଜକୁ ଧର୍ମ ଆଚରଣରେ ବ୍ରତୀ କରାନ୍ତି । ସତ୍ୟ ଯୁଗରେ ଚତୁଷ୍ପାଦ ତ୍ରେତାରେ ତ୍ରିପାଦ ତଥା ଦ୍ୱାପରରେ ଦ୍ୱିପାଦ ବିଶିଷ୍ଟ ଧର୍ମର ସ୍ଥାପନ ପାଇଁ ସେ ପୃଥିବୀ ପୃଷ୍ଠରେ ଅଧିଷ୍ଠାନ କରନ୍ତି ଏବଂ କଳିରେ ଅଧର୍ମର ପ୍ରାଧାନ୍ୟ ବିସ୍ତାର ହୋଇ-ଥିବାରୁ, ସେ ଗୁପ୍ତଭାବରେ ଅନ୍ୟଲୋକରେ ଧ୍ୟାନ ମଗ୍ନ ହୋଇଥାଆନ୍ତି । ମନୁଙ୍କର ପୁତ୍ରମାନେ ପୁତ୍ର, ପୌତ୍ର ତଥା ପ୍ରପୌତ୍ରାଦି କ୍ରମରେ ଏହି ଭୂମଣ୍ଡଳରେ ରାଜା ହୋଇ ଶାସନ କାର୍ଯ୍ୟ ଚଳାଇବାର ଅଧିକାର ପାଇଛନ୍ତି ।

ଇନ୍ଦ୍ର ସ୍ୱର୍ଗରେ ଅଧିପତି ହୋଇ ସମସ୍ତ ସୁରଗଣଙ୍କୁ ପାଳନ କରନ୍ତି । ବିଷ୍ଣୁଙ୍କ ଦ୍ୱାରା ପ୍ରଦତ୍ତ ତ୍ରିଭୁବନର ସୌଭାଗ୍ୟକୁ ଉପଭୋଗ କରିବା ସଙ୍ଗେ ସଙ୍ଗେ ତ୍ରିଲୋକର ପରିପାଳନ କରନ୍ତି । ତାଙ୍କ ସହିତ ଜାତ ହୋଇଥିବା ଦେବଗଣ ଇନ୍ଦ୍ରଙ୍କର ସହଯୋଗୀ ରୂପେ କାର୍ଯ୍ୟ କରନ୍ତି । ସେମାନେ ପ୍ରଜାମାନଙ୍କ ଦ୍ୱାରା ପ୍ରଦତ୍ତ

ଯଜ୍ଞର ହବିର୍ଭାଗକୁ ଗ୍ରହଣ କରି ଜନମାନବର କଲ୍ୟାଣ ସାଧନ କରନ୍ତି । କାରଣ ମନୁଷ୍ୟମାନେ ଯଜ୍ଞଦ୍ୱାରା ଦେବତାମାନଙ୍କୁ ଆରାଧନା କରିଥାଆନ୍ତି । ଦେବଗଣ ସେହି ଆରାଧନାକୁ ଗ୍ରହଣକରି ପ୍ରଜାମାନଙ୍କ ମନୋରଥ ପୂରଣ କରନ୍ତି । ସେମାନେ ପରସ୍ପର ଭାବରେ ଭାବିତ ହୋଇ ପରମ ଶ୍ରେୟର ଅଧିକାରୀ ହୁଅନ୍ତି ।

ମନ୍ୱନ୍ତରରେ ସପ୍ତର୍ଷିଗଣ ବେଦକୁ ଉଦ୍ଧାର କରି ଲୋକକଲ୍ୟାଣକର କାର୍ଯ୍ୟରେ ବିନିଯୋଗ କରନ୍ତି ଏବଂ ଶାସ୍ତ୍ର ପୁରାଣାଦି ରଚନା କରି ସମାଜକୁ ଶୃଙ୍ଖଳିତ କରିବାର ଦାୟିତ୍ୱ ଗ୍ରହଣରେ ବ୍ରତୀ ହୋଇଥା'ନ୍ତି । ସେମାନେ ସନକାଦି ରୂପ ଧାରଣ କରି ଜନସମାଜକୁ ଜ୍ଞାନୋପଦେଶ ଦିଅନ୍ତି । କେତେକ ମୁନି ସ୍ମୃତି ବା ଧର୍ମଶାସ୍ତ୍ର ନିର୍ମାଣ କରି କର୍ମକାଣ୍ଡର ପ୍ରଚଳନ କରାଇଥାନ୍ତି । ଯାଜ୍ଞବାଲ୍କ୍ୟ ଆଦି ରୂପରେ ସେମାନେ ସ୍ୱୟଂ କର୍ମକାଣ୍ଡ ଅର୍ଥାତ୍ ଯାଗଯଜ୍ଞାଦିର ଆଚରଣ କରନ୍ତି ତଥା ଅନୁରୂପ ଆଚରଣ କରିବାଲାଗି ପ୍ରଜାବୃନ୍ଦଙ୍କୁ ପ୍ରେରଣା ଦେଇଥାନ୍ତି । ସେମାନେ କପିଳ ତଥା ଦତ୍ତାତ୍ରେୟ ଆଦି ରୂପେ ଯୋଗମାର୍ଗର ପ୍ରବର୍ତ୍ତନ କରନ୍ତି ଏବଂ ନାରଦାଦି ରୂପ ଧାରଣକରି ଭକ୍ତି ତଥା ପଞ୍ଚରାତ୍ର ଆଦି ମାର୍ଗର ପ୍ରଚାର କରିଥାଆନ୍ତି ।

ହେ ରାଜନ୍, ସମସ୍ତେ ଶ୍ରୀହରିଙ୍କ ଅଂଶବିଶେଷ ଅଟନ୍ତି । ସେହି ଶ୍ରୀହରି ପ୍ରଜାପତି ରୂପେ ଅଣ୍ଡଜ, ଜରାୟୁଜ, ସ୍ୱେଦଜ ତଥା ଉଦ୍ଭିଦର ଉତ୍ପନ୍ନ କରନ୍ତି । ସେ ସମ୍ରାଟରୂପେ ରାଜ୍ୟବାସୀଙ୍କୁ ସମସ୍ତ ପ୍ରକାର ଅତ୍ୟାଚାରରୁ ରକ୍ଷା କରନ୍ତି । ସେହି ଶ୍ରୀହରି ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ ଓ ବସନ୍ତ ରୂପେ ଶୀତ, ତାପ, ତଥା ଜଳ ବର୍ଷଣ ଆଦି କରିବା ସଙ୍ଗେ ସଙ୍ଗେ କାଳରୂପ ଧାରଣ କରି ପ୍ରଜାବର୍ଗର ଆୟୁଷ ହରଣ କରନ୍ତି । ମାଳା ମଧ୍ୟରେ ମଣିରତ୍ନ ସହିତ ସୂତ୍ର ଯେପରି ଓତଃପ୍ରୋତ ଭାବରେ ଜଡ଼ିତ । ଠିକ୍ ସେହିପରି ପ୍ରଭୁ ଶ୍ରୀହରି ଏହି ସଂସାର ମଧ୍ୟରେ ଜଡ଼ିତ ହୋଇଛନ୍ତି । ସମଷ୍ଟି ଜୀବଜଗତ୍ ତାଙ୍କର ମାୟାରେ ବିଜଡ଼ିତ ହୋଇ କେହି ତାଙ୍କ ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ ଏବଂ ଅନ୍ୟ କେହି ତାଙ୍କୁ ଅଦ୍ୱୈତ, ବିଶିଷ୍ଟାଦ୍ୱୈତ, ଦ୍ୱୈତାଦ୍ୱୈତ ତଥା ଶୁଦ୍ଧାଦ୍ୱୈତ ଭାବେ ନିର୍ଣ୍ଣୟ କରିଥାଆନ୍ତି । ଭିନ୍ନ ଭିନ୍ନ ଶାସ୍ତ୍ରକାରଗଣ ପ୍ରଭୁଙ୍କୁ ବିଭିନ୍ନ ରୂପରେ ଚିତ୍ରଣ କରିଥିବାରୁ, ବେଶ୍ ଜଣାଯାଏ ଯେ, କେହି ତାଙ୍କର ପ୍ରକୃତ ସ୍ୱରୂପ ଜାଣିନାହାନ୍ତି । ହେ ମହାରାଜ, ମୁଁ ଅତି ସଂକ୍ଷେପରେ ମନୁ, ମନୁପୁତ୍ର, ଇନ୍ଦ୍ର, ଦେବଗଣ ତଥା ସପ୍ତର୍ଷି ଆଦିଙ୍କ କାର୍ଯ୍ୟାବଳୀ ସମ୍ପର୍କରେ ବର୍ଣ୍ଣନା କଲି । ଆପଣଙ୍କ ମନରେ ଆଉ ଯଦି କିଛି ସନ୍ଦେହ ରହିଥାଏ, ତା'ହେଲେ ଆପଣ ତାହା ପ୍ରକାଶ କରନ୍ତୁ ।

ହୋଇଥାଏ । ସେମାନେ ସୃଷ୍ଟିର ରହସ୍ୟକୁ ଭଲଭାବରେ ହୃଦୟଙ୍ଗମ କରିପାରିଲେ, ତାହାର ମନରେ କୌଣସି ପ୍ରକାର ଚନ୍ତା ଉଦ୍ରେକ ହୁଅନ୍ତା ନାହିଁ । ସେଇଥିପାଇଁ ଶାସ୍ତ୍ରମାନଙ୍କରେ ସୃଷ୍ଟିର ରହସ୍ୟ ସମ୍ବନ୍ଧରେ ବାରମ୍ବାର କୁହାଯାଇଛି । ଯେହି ରହସ୍ୟକୁ ଭେଦ କରିପାରିଲେ ପ୍ରାଣୀ ଅନାୟସରେ ଶୋକ, ମୋହ, ଆନନ୍ଦ ତଥା ବିସ୍ମୟ ଆଦି ପ୍ରତିକ୍ରିୟାରୁ ମୁକ୍ତିଲାଭ କରିପାରିବ ।

ଭୂତ, ଭବିଷ୍ୟ ଓ ବର୍ତ୍ତମାନର ମନୁ, ମନୁପୁତ୍ର ତଥା ଅଂଶାବତାରୀ ପ୍ରଭୃତିଙ୍କ ସମ୍ବନ୍ଧରେ ଶୁଣିବା ପରେ ମହାରାଜ ପରୀକ୍ଷିତ ପ୍ରଶ୍ନ କଲେ "ହେ ପ୍ରଭୋ, ମୁଁ ଆପଣଙ୍କ ଶ୍ରୀମୁଖରୁ ସବୁ ଶୁଣିଲି ସତ, କିନ୍ତୁ ମୁଁ କେବଳ ଏତିକିମାତ୍ର ବୁଝିଲି ଯେ, ସବୁକିଛି ଭଗବାନ୍‌ଙ୍କର ଲୀଳା ଖେଳା । ତଥାପି ପ୍ରତ୍ୟେକ ମନୁ, ମନୁପୁତ୍ର, ଇନ୍ଦ୍ର, ସପ୍ତର୍ଷି, ଦେବଗଣ, ଏବଂ ବିଷ୍ଣୁଙ୍କର ପୃଥକ୍ ପୃଥକ୍ ଅଂଶାବତାର ଆବିର୍ଭୂତ ହୋଇ କେଉଁ କେଉଁ କାର୍ଯ୍ୟରେ ବ୍ରତୀ ହୁଅନ୍ତି, ତାହା ମୋ' ଆଗରେ ବର୍ଣ୍ଣନା କରନ୍ତୁ ।

ପରୀକ୍ଷିତଙ୍କ ପ୍ରଶ୍ନ ଶୁଣି ଶ୍ରୀ ଶୁକଦେବ କହିଲେ—"ହେ ରାଜନ, ସୃଷ୍ଟିର ସୁରକ୍ଷା ନିମନ୍ତେ ଭଗବାନ୍ ବିଷ୍ଣୁ ଛଅ ରୂପରେ ଆବିର୍ଭୂତ ହୁଅନ୍ତି ସତ୍ୟ, କିନ୍ତୁ, ପ୍ରକୃତରେ ସେ ଏକ—ଅଦ୍ୱିତୀୟ । ପ୍ରଜାପାଳକ ପ୍ରଭୁଙ୍କର କଳା ବା ଅଂଶରୁ ଏହି ଅଂଶାବତାର ସୃଷ୍ଟ ହୋଇ ପରିଶେଷରେ ସେଇଥିରେ ବିଲୀନ ହୋଇଯାଆନ୍ତି । ବିଷ୍ଣୁ ପ୍ରତ୍ୟେକ ମନ୍ୱନ୍ତରରେ ଅବତାର ଗ୍ରହଣ କରି, ମନୁ, ଇନ୍ଦ୍ର, ସପ୍ତର୍ଷି ଓ ଦେବଗଣଙ୍କୁ ସମସ୍ତ ପ୍ରକାର ସଙ୍କଟରୁ ଉଦ୍ଧାର କରନ୍ତି ଏବଂ ଅସୁରମାନଙ୍କୁ ସମୁଚିତ ଦଣ୍ଡଦେଇ ସଂସାର ଯାତ୍ରା ନିର୍ବାହ କରନ୍ତି ।

ମନ୍ୱନ୍ତରର ଅଧିପତି ମନୁ ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟ ଓ ବିଷ୍ଣୁଙ୍କ ଦ୍ୱାରା ପ୍ରତି-ପାଳିତ ମାନବ ସମାଜକୁ ଧର୍ମ ଆଚରଣରେ ବ୍ରତୀ କରାନ୍ତି । ସତ୍ୟ ଯୁଗରେ ଚତୁଷ୍ପାଦ ତ୍ରେତାରେ ତ୍ରିପାଦ ତଥା ଦ୍ୱାପରରେ ଦ୍ୱିପାଦ ବିଶିଷ୍ଟ ଧର୍ମର ସ୍ଥାପନ ପାଇଁ ସେ ପୃଥିବୀ ପୃଷ୍ଠରେ ଅଧିଷ୍ଠାନ କରନ୍ତି ଏବଂ କଳିରେ ଅଧର୍ମର ପ୍ରାଧାନ୍ୟ ବିସ୍ତାର ହୋଇ-ଥିବାରୁ, ସେ ଗୁପ୍ତଭାବରେ ଅନ୍ୟଲୋକରେ ଧ୍ୟାନ ମଗ୍ନ ହୋଇଥାଆନ୍ତି । ମନୁଙ୍କର ପୁତ୍ରମାନେ ପୁତ୍ର, ପୌତ୍ର ତଥା ପ୍ରପୌତ୍ରାଦି କ୍ରମରେ ଏହି ଭୂମଣ୍ଡଳରେ ରାଜା ହୋଇ ଶାସନ କାର୍ଯ୍ୟ ଚଳାଇବାର ଅଧିକାର ପାଇଛନ୍ତି ।

ଇନ୍ଦ୍ର ସ୍ୱର୍ଗରେ ଅଧିପତି ହୋଇ ସମସ୍ତ ସୁରଗଣଙ୍କୁ ପାଳନ କରନ୍ତି । ବିଷ୍ଣୁଙ୍କ ଦ୍ୱାରା ପ୍ରଦତ୍ତ ତ୍ରିଭୁବନର ସୌଭାଗ୍ୟକୁ ଉପଭୋଗ କରିବା ସଙ୍ଗେ ସଙ୍ଗେ ତ୍ରିଲୋକର ପରିପାଳନ କରନ୍ତି । ତାଙ୍କ ସହିତ ଜାତ ହୋଇଥିବା ଦେବଗଣ ଇନ୍ଦ୍ରଙ୍କର ସହଯୋଗୀ ରୂପେ କାର୍ଯ୍ୟ କରନ୍ତି । ସେମାନେ ପ୍ରଜାମାନଙ୍କ ଦ୍ୱାରା ପ୍ରଦତ୍ତ

ଯଜ୍ଞର ହବିର୍ଭାଗକୁ ଗ୍ରହଣ କରି ଜନମାନବର କଲ୍ୟାଣ ସାଧନ କରନ୍ତି । କାରଣ ମନୁଷ୍ୟମାନେ ଯଜ୍ଞଦ୍ୱାରା ଦେବତାମାନଙ୍କୁ ଆରାଧନା କରିଥାଆନ୍ତି । ଦେବଗଣ ସେହି ଆରାଧନାକୁ ଗ୍ରହଣକରି ପ୍ରଜାମାନଙ୍କ ମନୋରଥ ପୂରଣ କରନ୍ତି । ସେମାନେ ପରସ୍ପର ଭାବରେ ଭାବିତ ହୋଇ ପରମ ଶ୍ରେୟର ଅଧିକାରୀ ହୁଅନ୍ତି ।

ମନ୍ୱନ୍ତରରେ ସପ୍ତର୍ଷିଗଣ ବେଦକୁ ଉଦ୍ଧାର କରି ଲୋକକଲ୍ୟାଣକର କାର୍ଯ୍ୟରେ ନିଯୋଗ କରନ୍ତି ଏବଂ ଶାସ୍ତ୍ର ପୁରାଣାଦି ରଚନା କରି ସମାଜକୁ ଶୃଙ୍ଖଳିତ କରିବାର ଦାୟିତ୍ୱ ଗ୍ରହଣରେ ବ୍ରତୀ ହୋଇଥା'ନ୍ତି, । ସେମାନେ ସନକାଦି ରୂପ ଧାରଣ କରି ଜନସମାଜକୁ ଜ୍ଞାନୋପଦେଶ ଦିଅନ୍ତି । କେତେକ ମୁନି ସ୍ମୃତି ବା ଧର୍ମଶାସ୍ତ୍ର ନିର୍ମାଣ କରି କର୍ମକାଣ୍ଡର ପ୍ରଚଳନ କରାଇଥାନ୍ତି । ଯାଜ୍ଞବାଲ୍କ୍ୟ ଆଦି ରୂପରେ ସେମାନେ ସ୍ୱୟଂ କର୍ମକାଣ୍ଡ ଅର୍ଥାତ୍ ଯାଗଯଜ୍ଞାଦିର ଆଚରଣ କରନ୍ତି ତଥା ଅନୁରୂପ ଆଚରଣ କରିବାଲାଗି ପ୍ରଜାବୃନ୍ଦଙ୍କୁ ପ୍ରେରଣା ଦେଇଥାନ୍ତି । ସେମାନେ କପିଳ ତଥା ଦତ୍ତାତ୍ରେୟ ଆଦି ରୂପେ ଯୋଗମାର୍ଗର ପ୍ରବର୍ତ୍ତନ କରନ୍ତି ଏବଂ ନାରଦାଦି ରୂପ ଧାରଣକରି ଭକ୍ତି ତଥା ପଞ୍ଚରାତ୍ର ଆଦି ମାର୍ଗର ପ୍ରଚାର କରିଥାଅନ୍ତି ।

ହେ ରାଜନ୍, ସମସ୍ତେ ଶ୍ରୀହରିଙ୍କ ଅଂଶବିଶେଷ ଅଟନ୍ତି । ସେହି ଶ୍ରୀହରି ପ୍ରଜାପତି ରୂପେ ଅଣ୍ଡଜ, ଜରାୟୁଜ, ସ୍ୱେଦଜ ତଥା ଉଦ୍ଭିଦର ଉତ୍ପନ୍ନ କରନ୍ତି । ସେ ସମ୍ରାଟରୂପେ ରାଜ୍ୟବାସୀଙ୍କୁ ସମସ୍ତ ପ୍ରକାର ଅତ୍ୟାଚାରରୁ ରକ୍ଷା କରନ୍ତି । ସେହି ଶ୍ରୀହରି ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ ଓ ବସନ୍ତ ରୂପେ ଶୀତ, ତାପ, ତଥା ଜଳ ବର୍ଷଣ ଆଦି କରିବା ସଙ୍ଗେ ସଙ୍ଗେ କାଳରୂପ ଧାରଣ କରି ପ୍ରଜାବର୍ଗର ଆୟୁଷ ହରଣ କରନ୍ତି । ମାଳା ମଧ୍ୟରେ ମଣିରତ୍ନ ସହିତ ସୂତ୍ର ଯେପରି ଓତଃପ୍ରୋତ ଭାବରେ ଜଡ଼ିତ । ଠିକ୍ ସେହିପରି ପ୍ରଭୁ ଶ୍ରୀହରି ଏହି ସଂସାର ମଧ୍ୟରେ ଜଡ଼ିତ ହୋଇଛନ୍ତି । ସମଷ୍ଟି ଜୀବଜଗତ୍ ତାଙ୍କରି ମାୟାରେ ବିଜଡ଼ିତ ହୋଇ କେହି ତାଙ୍କ ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ ଏବଂ ଅନ୍ୟ କେହି ତାଙ୍କୁ ଅଦ୍ୱୈତ, ବିଶିଷ୍ଟାଦ୍ୱୈତ, ଦ୍ୱୈତାଦ୍ୱୈତ ତଥା ଶୁଦ୍ଧାଦ୍ୱୈତ ଭାବେ ନିର୍ଣ୍ଣୟ କରିଥାଆନ୍ତି । ଭିନ୍ନ ଭିନ୍ନ ଶାସ୍ତ୍ରକାରଗଣ ପ୍ରଭୁଙ୍କୁ ବିଭିନ୍ନ ରୂପରେ ଚିତ୍ରଣ କରିଥିବାରୁ, ବେଶ୍ ଜଣାଯାଏ ଯେ, କେହି ତାଙ୍କର ପ୍ରକୃତ ସ୍ୱରୂପ ଜାଣିନାହାନ୍ତି । ହେ ମହାରାଜ, ମୁଁ ଅତି ସଂକ୍ଷେପରେ ମନୁ, ମନୁପୁତ୍ର, ଇନ୍ଦ୍ର, ଦେବଗଣ ତଥା ସପ୍ତର୍ଷି ଆଦିଙ୍କ କାର୍ଯ୍ୟାବଳୀ ସମ୍ପର୍କରେ ବର୍ଣ୍ଣନା କଲି । ଆପଣଙ୍କ ମନରେ ଆଉ ଯଦି କିଛି ସନ୍ଦେହ ରହିଥାଏ, ତା'ହେଲେ ଆପଣ ତାହା ପ୍ରକାଶ କରନ୍ତୁ ।

ଶୁକମୁନିଙ୍କ ବାଣୀ ଶୁଣି ଉତ୍ତରାନନ୍ଦନ ପରୀକ୍ଷିତ କହିଲେ—"ହେ ମୁନିଶ୍ରେଷ୍ଠ ଶୁକଦେବ, ମୁଁ ଶୁଣିଛି—ବୈବସ୍ୱତ ମନ୍ୱନ୍ତରରେ ପ୍ରଭୁ ଭଗବାନ୍ ବାମନ ରୂପ ଧାରଣ କରି ଇନ୍ଦ୍ରଙ୍କର ପରମ ହିତସାଧନ କରିଥିଲେ । ହେ ମୁନିବର, ସେହି ଉପେନ୍ଦ୍ରଙ୍କର କାର୍ଯ୍ୟାବଳୀ ସମ୍ବନ୍ଧରେ ଆପଣ ମୋତେ କହିବା ହୁଅନ୍ତୁ । ସେହି ଚରିତ ଶୁଣିବାଲାଗି ମୋ' ମନରେ ଉତ୍କଟ ଅଭିଳାଷ ଜାତ ହୋଇଛି ।"

ରାଜା ପରୀକ୍ଷିତଙ୍କ ପ୍ରଶ୍ନ ଶୁଣି ଶୁକଦେବ କହିଲେ - "ରାଜନ, ଭଗବାନ୍ ବାମନ ରୂପରେ ଅବତୀର୍ଣ୍ଣ ହୋଇ ବଳିରାଜାଙ୍କୁ ତିନିପାଦ ମେଦିନୀ ଦାନ ମାଗିଥିଲେ । ବଳିରାଜା ତିନିପାଦ ଭୂମି ଦାନ ଦେବାରେ ଅସମର୍ଥ ହୁଅନ୍ତେ ବାମନ ତାଙ୍କୁ ବାନ୍ଧି ପକାଇଥିଲେ ।"

ଏହାଶୁଣି ରାଜା ପରୀକ୍ଷିତ ଆଶ୍ଚର୍ଯ୍ୟ ହୋଇ କହିଲେ—"ହେ ମୁନିରାଜ, ଆପଣ ଗୋଟିଏ ଗୋଟିଏ କୌତୂହଳୋଦ୍ଦୀପକ କାହାଣୀ ଶୁଣାଇ ମୋତେ ଆଶ୍ଚର୍ଯ୍ୟା-ନ୍ୱିତ କରାଉଛନ୍ତି । ହେ ଭଗବନ୍, ଯାହାର କିଛି ନଥାଏ, ସେ ଅନ୍ୟର ନିକଟରେ କିଛି ଦାନ ମାଗିଥାଏ । ଭଗବାନ୍ ସର୍ବସମର୍ଥ ଅଟନ୍ତି । ତାଙ୍କଠାରେ କୌଣସି ବସ୍ତୁର ଅଭାବ ପରିଲକ୍ଷିତ ହୁଏ ନାହିଁ । ତେଣୁ ସେ କିପରି ବଳିରାଜାଙ୍କ ନିକଟରୁ ଦାନ ଗ୍ରହଣ କରିବାଲାଗି ହାତ ପାତିଲେ ? ହେଉ, ଯଦି ସେ ରାଜାଙ୍କ ଦାନଶୀଳତାର ପରୀକ୍ଷାଲାଗି ମାତ୍ର ତିନିପାଦ ଭୂମି ମାଗିଥିଲେ, ଚକ୍ରବର୍ତ୍ତୀ ରାଜା ବଳି ଏତିକିମାତ୍ର ଭୂମି ତାଙ୍କୁ କିପରି ଦେଇପାରିଲେ ନାହିଁ, ଏହା ମୋ ମନରେ ସନ୍ଦେହ ସୃଷ୍ଟି କରିଛି । ଏହା ମଧ୍ୟ ହୋଇପାରେ ଯେ, ବଳିରାଜା ତିନିପାଦ ଭୂମିଦାନ ଦେଇ ପାରିଲେ ନାହିଁ, ସେଥିପାଇଁ ଭଗବାନ୍ ବାମନ୍ ତାଙ୍କୁ ବନ୍ଦୀକଲେ କାହିଁକି ? ଏପରି ଘଟଣା କେବଳ ସାଧାରଣ ହୀନ ଲୋକମାନେ କରିଥାଆନ୍ତି । ପରମେଶ୍ୱର ବାମନ ଏପରି ଏକ କାର୍ଯ୍ୟ କରିବା କ'ଣ ନିତାନ୍ତ ହେୟ ତଥା ଘୃଣ୍ୟ କାର୍ଯ୍ୟ ନୁହେଁ କି ? ତା'ପରେ ପୁଣି ସମଗ୍ର ବିଶ୍ୱର କର୍ତ୍ତା, ହର୍ତ୍ତା ଓ ବିଧିବିଧାତାଙ୍କ ପକ୍ଷରେ ମାତ୍ର ତିନିପାଦ ଭୂମିର ଆବଶ୍ୟକତା କ'ଣ ଥିଲା ? ସେ ପରମାତ୍ମା, ପୂର୍ଣ୍ଣକାମ, ନିସ୍ପୃହ । ଭୂମିଦାନ ମାଗିବା ତାଙ୍କ ପକ୍ଷରେ ଆଦୌ ଉଚିତ କାର୍ଯ୍ୟ ନୁହେଁ । ତେଣୁ ଏ ସମ୍ବନ୍ଧରେ ମୋ' ମନରେ ଅଶେଷ କୌତୂହଳ ଜାତ ହୋଇଛି । ହେ କୃପାନିଧାନ ମହାମୁନି, ଆପଣ ଦୟାକରି ମୋର ଏ କୌତୂହଳ ଶାନ୍ତ କରନ୍ତୁ ।"

ସୂତମହର୍ଷି ଶୌନକାଦି ମୁନିମାନଙ୍କୁ କହିଲେ—"ହେ ବ୍ରହ୍ମର୍ଷିଗଣ, ଅଭିମନ୍ୟୁସୁତ ପରୀକ୍ଷିତଙ୍କ ପ୍ରଶ୍ନର ଉତ୍ତର ଦେଇ ଶ୍ରୀଶୁକଦେବ ତାଙ୍କ ଆଗରେ ବାମନ ଚରିତ ବ୍ୟାଖ୍ୟା କରିଥିଲେ ।"

## ଛପ୍ପୟ

ସିଦ୍ଧରୂପ ସ୍ୱର କରୈଂ ଜ୍ଞାନ ଉପଦେଶ ନିରନ୍ତର ।
କର୍ମକାଣ୍ଡ ବିସ୍ତାର କରୈଂ ଜଗମହଁ ହ୍ୱୈ ଋଷିବର ।
ଯୋଗେଶ୍ୱର କୋ ରୂପ ବନାଏଁ ଜ୍ଞାନ ସିଖାଏଁ ।
ଯ୍ୟୋଂ ସବ କୂଁ ଦୈ ଜ୍ଞାନ ଜଗତ ତୈଂ ଅଭୟ ବନାଵୈଂ ।
ହରିମାୟା ଅତି ପ୍ରବଲ ହୈ, ବରନନ କୋ ନର କରି ସକୈ ।
ହରି ବିନୁ ଯା ଅଜ୍ଞାନ କୂଁ, ଦୂସର ନର ନହିଁ ହରି ସକୈ ।।'



# ସ୍ୱର୍ଗପ୍ରାପ୍ତି ଲାଗି ବଳିଙ୍କ ଉଦ୍ୟମ

"ସର୍ବଜିତ ଶ୍ରୀରସ୍ନଭିଶ୍ଚ ହାପିତୋ—
ହ୍ୟାନ୍ଦ୍ରେଣ ରାଜନ୍ ଭୃଗୁଭିଃ ସ ଜୀବିତଃ ।
ସର୍ବାତ୍ମନା ତାନଭଜଦ୍ ଭୃଗୁନ୍ ବଳିଃ
ଶିଷ୍ୟୋ ମହାତ୍ମାର୍ଥନିବେଦନେନ"

( ଭା. ୮ । ୧୫ । ୩ )

## ବ୍ରତସ୍ତୁ

"କହେଁ ପରୀକ୍ଷିତ ଦେବ ! ବନେ ଜୈଁ ବାମନ ଶ୍ରୀହରି ।
ଲଘୁବନ ଭିକ୍ଷା କରୀ ବଢ଼େ ଜେୈଁ ପୁନ ପ୍ରଭୁ ଛଲ କରି ।
ବୋଲେ ଶୁକ ସୁନୁ ଭୂପ ପରାଜିତ ଦୈତ୍ୟ ଭୟେ ଜବ ।
ଅସ୍ତାଚଲ ଲେ ଜାୟେ ଜିଓ୍ୟାୟେ ଶୁକ୍ର ଅସୁର ସବ ।।
ଗୁରୁ ସେବାଇ ଅଭ୍ୟୁଦୟ କୀ କାରନ ବଳ ଜାନ ଲେ ।
ଶୁକ୍ର ହୂଁ ସୌଁପେ୍ୟା ରାଜ୍ୟ ତନୁ ଇଷ୍ଟଦେବ ସମ ମାନକେ" ।।

ଅର୍ଥାତ୍—ଶ୍ରୀ ଶୁକଦେବ ମହାରାଜା ପରୀକ୍ଷିତଙ୍କୁ କହିଲେ "ହେ ରାଜନ , ଦେବାସୁର ସଂଗ୍ରାମରେ ଦେବେନ୍ଦ୍ରଙ୍କ ଦ୍ୱାରା ପରାସ୍ତ ହୋଇ ବଳିରାଜା ମରିଲେ । ତହୁଁ ଗୁରୁଦେବ ଶୁକ୍ରାଚାର୍ଯ୍ୟ ତାଙ୍କୁ ଜୀବନ ଦାନ ଦେଇ ବଞ୍ଚାଇ ଦେଲେ । ସେଥିଲାଗି ବଳିରାଜ ଆଚାର୍ଯ୍ୟଙ୍କୁ ସର୍ବସ୍ୱ ସମର୍ପଣ କରି ତାଙ୍କରି ସେବାରେ ନିଯୁକ୍ତ ରହିଲେ ।

ଯେଉଁମାନେ ଶ୍ରୀଗୁରୁଙ୍କ ଚରଣରେ ନିଜକୁ ସମର୍ପଣ କରି ଦେଇଅଛନ୍ତି, ସେମାନଙ୍କର ସମସ୍ତ ପ୍ରକାର ମନୋରଥ ସିଦ୍ଧ ହୋଇଥାଏ । ସଂସାରର ସମସ୍ତ ପ୍ରକାର କାର୍ଯ୍ୟ ସେମାନଙ୍କ ପକ୍ଷରେ ସହଜ ହୋଇଯାଏ । ଉଦ୍ୟୋଗୀ ପୁରୁଷ ସଙ୍କଟ କାଳରେ ଆଦୌ ବିଚଳିତ ହୁଅନ୍ତି ନାହିଁ । କାର୍ଯ୍ୟ ମଧ୍ୟରେ ବିଘ୍ନ ଉପସ୍ଥିତ ହେଲେ, ସେମାନେ ତାହାକୁ ତୁଚ୍ଛ ମନେକରି ଉତ୍ସାହର ସହିତ ପୁଣି କାର୍ଯ୍ୟରେ ଲାଗିପଡ଼ନ୍ତି ।

ଯେଉଁ ମନସ୍ୱୀ ଲୋକମାନେ ଶ୍ରୀଗୁରୁଙ୍କ ଚରଣକୁ ଆଶ୍ରୟ କରି କାର୍ଯ୍ୟ ଆରମ୍ଭ କରନ୍ତି, ସେମାନେ କେବେହେଲେ କାର୍ଯ୍ୟରେ ଅସଫଳ ହୁଅନ୍ତି ନାହିଁ । ସେମାନଙ୍କ ସିଦ୍ଧିଲାଭରେ କୌଣସି ସନ୍ଦେହ ରହେ ନାହିଁ ।

ଶ୍ରୀଶୁକମୁନି କହିଲେ –"ହେ ରାଜନ୍ ପରୀକ୍ଷିତ, ସମୁଦ୍ରରୁ ବାହାରିଥିବା ଅମୃତକୁ ମୋହିନୀରୂପ ଧାରଣ କରି ବିଷ୍ଣୁ ଦେବତାମାନଙ୍କୁ ପିଆଇ ଦିଅନ୍ତେ, ଦେବତା ଓ ଅସୁରମାନଙ୍କ ମଧ୍ୟରେ ଘୋରତର ସଂଗ୍ରାମ ଆରମ୍ଭ ହୋଇଗଲା । ସେହି ଯୁଦ୍ଧରେ ଶ୍ରୀହରିଙ୍କ କୃପାରୁ ଦେବଗଣ ବିଜୟଶ୍ରୀରେ ବିମଣ୍ଡିତ ହୋଇଥିଲେ । ବିରୋଚନ ପୁତ୍ର ବଳି ସେହି ଯୁଦ୍ଧରେ ଆହତ ହୋଇ ମୃତପ୍ରାୟ ହୋଇଗଲେ ଏବଂ ଅନ୍ୟାନ୍ୟ ଅସୁରମାନେ ପ୍ରାଣତ୍ୟାଗ କରିଥିଲେ । ଅନ୍ୟାନ୍ୟ ଅସୁରମାନେ ରାଜାଙ୍କ ସମେତ ମୃତ ଅସୁରମାନଙ୍କୁ ଅସ୍ତାଚଳ ପର୍ବତକୁ ନେଇଗଲେ । ଶୁକ୍ରାଚାର୍ଯ୍ୟ ସଂଜୀବନୀ ବିଦ୍ୟାବଳରେ ମୃତ ଅସୁରମାନଙ୍କ ସମେତ ବଳିରାଜାଙ୍କୁ ବଞ୍ଚାଇଦେଲେ ।

ମହାରାଜ ବଳି ଅତ୍ୟନ୍ତ ଧର୍ମନିଷ୍ଠ ମହାତ୍ମା ଥିଲେ । ସେ ଜୀବଦାନ ପାଇବା ପରେ ଭାବିଲେ –"ଗୁରୁଦେବ ମୋ' ପ୍ରତି ଅସୀମ କୃପା ପ୍ରଦର୍ଶନ କରିଛନ୍ତି । ଗୁରୁ କୃପାରୁ ମୁଁ ଜୀବନରେ ଆହୁରି ଅନେକ ଉନ୍ନତି କରିପାରିବି । ପ୍ରାଣୀମାନଙ୍କ ଅଭ୍ୟୁଦୟର ମୁଖ୍ୟ କାରଣ ହେଉଛି–ଗୁରୁସେବା । ଯେ ଗୁରୁସେବା କରେ, ସେ ଅଶେଷ ଫଳଲାଭ କରେ । ଯେଉଁ ବ୍ୟକ୍ତି ଗୁରୁଙ୍କୁ ପୂଜା କରେ, ସେ ଜଗତ୍ ପୂଜ୍ୟ ହୋଇଯାଏ । ଯେଉଁମାନେ ଗୁରୁଙ୍କୁ ସର୍ବସ୍ୱ ସମର୍ପଣ କରିଦିଅନ୍ତି, ସେମାନେ ଅଶେଷ ବିଭୂତିରେ ଭୂଷିତ ହୁଅନ୍ତି ।" ଏହା ଚିନ୍ତାକରି, ସେ ନିଜର ସର୍ବସ୍ୱ ଗୁରୁଙ୍କ ଶ୍ରୀ ଚରଣରେ ସମର୍ପଣ ପୂର୍ବକ ତାଙ୍କ ଆଜ୍ଞାକୁ ଅବଧାନ ହୋଇ ତାଙ୍କର ଆବଶ୍ୟକତା ତୁଳନାରେ ବହୁ ସାମଗ୍ରୀ ସମର୍ପଣ କରିଦେଲେ ।

ସୂତ କହିଲେ – "ହେ ମୁନିଗଣ, ସେବା ଫଳରେ ମନୁଷ୍ୟ ଯେକୌଣସି ବ୍ୟକ୍ତିକୁ ଆପଣାର କରିପାରେ । ପାଷାଣ ପରି କଠିନ ହୃଦୟ ବ୍ୟକ୍ତି ଉପରେ ସେବାର ପ୍ରଭାବ ପଡ଼ିଥାଏ । ମୁନି ଋଷିମାନେ ଶିଷ୍ୟମାନଙ୍କ ସେବାରେ ସନ୍ତୁଷ୍ଟ ହୋଇ ଅନୁଚିତ କାର୍ଯ୍ୟ କରିବାରେ କୁଣ୍ଠାବୋଧ କରନ୍ତି ନାହିଁ । ଦୁର୍ଯ୍ୟୋଧନ ନିତାନ୍ତ କ୍ରୁର ସ୍ୱଭାବର ବ୍ୟକ୍ତି ହୋଇଥିଲେ ମଧ୍ୟ ଦ୍ରୋଣ, ଭୀଷ୍ମ ଓ ଶଲ୍ୟ ପ୍ରଭୃତିଙ୍କୁ ସେବାରେ ବଶୀଭୂତ କରାଇଥିଲେ । ସେମାନେ ଦୁର୍ଯ୍ୟୋଧନଙ୍କ ପାଇଁ ପାଣ୍ଡବମାନଙ୍କ ବିରୁଦ୍ଧରେ ଯୁଦ୍ଧ କରି ଆତ୍ମାହୁତି ଦେଇଥିଲେ । ଦୁର୍ବାସାଙ୍କ ପରି ମହାମୁନି ଦୁର୍ଯ୍ୟୋଧନଙ୍କ ସେବାରେ ସନ୍ତୁଷ୍ଟ ହୋଇ ଧର୍ମନିଷ୍ଠ ପାଣ୍ଡବମାନଙ୍କର ସର୍ବନାଶ କରିବାଲାଗି ପ୍ରସ୍ତୁତ

ହୋଇଯାଇଥିଲେ । ସେବାରେ ସନ୍ତୁଷ୍ଟ ହୋଇ ଭୋଳାନାଥ ଶଙ୍କର ବାଣାସୁରର ପୁର ରକ୍ଷା କରିଥିଲେ । ଆମେମାନେ ଯାହାଙ୍କର ସେବା କରୁଥାଉଁ ସେ ଆମର ମଙ୍ଗଳ କାମନାରେ ସର୍ବଦା ତତ୍ପର ହୁଅନ୍ତି । ସତୀ ନାରୀ ପତିଙ୍କୁ ସେବାରେ ବଶ କରି ମନୋବାଞ୍ଛିତ ଫଳଲାଭ କରନ୍ତି । ଅନ୍ୟ କଥା ଆଉ କ'ଣ କହିବା, ସ୍ୱୟଂ ଭଗବାନ୍ ମଧ୍ୟ ସେବକଙ୍କ ଅଧୀନ ହୋଇଯାଆନ୍ତି । ବିଷ୍ଣୁସେବକ ମହାରାଜ ଅମ୍ବରୀଷଙ୍କ ଉପରେ କ୍ରୁଦ୍ଧହୋଇ ଦୁର୍ବାସା ତାଙ୍କ ପ୍ରତି କୃତ୍ୟା ପ୍ରୟୋଗ କରନ୍ତେ, ଭକ୍ତବତ୍ସଳ ନାରାୟଣ ଅମ୍ବରୀଷଙ୍କ ସୁରକ୍ଷା ଲାଗି ସୁଦର୍ଶନ ଚକ୍ର ପ୍ରେରଣ କରିଥିଲେ । ସୁଦର୍ଶନ ଚକ୍ରଠାରୁ ଆତ୍ମରକ୍ଷା କରିବାପାଇଁ ମହର୍ଷି ଦୁର୍ବାସା ତ୍ରିଭୁବନ ବୁଲି ଆସିଥିଲେ ମଧ୍ୟ ତାଙ୍କୁ କେହି ଶରଣ ଦାନ କଲେ ନାହିଁ । ପରିଶେଷରେ ସେ ବିଷ୍ଣୁଙ୍କ ଶରଣ ପଶିଲେ । ବିଷ୍ଣୁ ଦୁର୍ବାସାଙ୍କୁ ସ୍ପଷ୍ଟଭାଷାରେ ଉତ୍ତର ଦେଇ କହିଲେ—"ମୁଁ ଭକ୍ତାଧୀନ, ଭକ୍ତ ଯାହା ଇଚ୍ଛାକରେ, ମୁଁ ତଦନୁସାରେ କାର୍ଯ୍ୟ କରିଥାଏଁ ।"

"ତେଣୁ ହେ ମୁନିଗଣ, ସେବା ଫଳରେ ଜଗତରେ କୌଣସି କାର୍ଯ୍ୟ ଅସାଧ୍ୟ ରହେ ନାହିଁ । ବଳିରାଜା ଶୁକ୍ରାଚାର୍ଯ୍ୟଙ୍କୁ ସେବାରେ ସନ୍ତୁଷ୍ଟ କରିବା ଫଳରେ ସେ ପରମ ପ୍ରୀତହୋଇ ଆଚାର୍ଯ୍ୟ ବ୍ରାହ୍ମଣମାନଙ୍କୁ ଡକାଇ କହିଲେ—"ହେ ବ୍ରାହ୍ମଣ-ଗଣ, ଆପଣମାନେ ବଳିରାଜାଙ୍କ ଭକ୍ତି ଓ ସେବା ପ୍ରତ୍ୟକ୍ଷ କରୁଛନ୍ତି । ସେ ବ୍ରାହ୍ମଣମାନଙ୍କ ପାଇଁ ସର୍ବସ୍ୱ ସମର୍ପଣ କରିଅଛନ୍ତି । ତାଙ୍କର ଉନ୍ନତି ପାଇଁ ଆମମାନଙ୍କ ପକ୍ଷରୁ ସମୁଚିତ ପଦକ୍ଷେପ ନିଆଯିବା ଉଚିତ ହେବ । ଆମମାନଙ୍କ ଜପ, ଯଜ୍ଞ ଓ ସ୍ୱସ୍ତ୍ୟୟନ ଫଳରେ ବଳିରାଜା ପୁଣି ରାଜଶ୍ରୀରେ ବିମଣ୍ଡିତ ହୋଇପାରିବେ ।"

ଶୁକ୍ରାଚାର୍ଯ୍ୟଙ୍କୁ ଉତ୍ତର ଦେଇ ବ୍ରାହ୍ମଣଗଣ କହିଲେ—"ହେ ମହାତ୍ମନ୍, ଆମେମାନେ କି ପ୍ରକାର ଜପ ଯଜ୍ଞରେ ବ୍ରତୀ ହେବୁ, ଆପଣ ଦୟାକରି ତାହା ନିର୍ଦ୍ଦେଶ କରନ୍ତୁ ।"

ଶୁକ୍ରାଚାର୍ଯ୍ୟ ମନେ ମନେ ଆନନ୍ଦିତ ହୋଇ କହିଲେ—"ମୁଁ ବଳିରାଜାଙ୍କ ପାଇଁ ଗୋଟିଏ ବିଶ୍ୱଜିତ୍ ଯଜ୍ଞ ଆରମ୍ଭ କରିବି । ଆପଣମାନେ ନିଷ୍ଠାପର ଭାବରେ ସ୍ୱସ୍ତ୍ୟୟନ ଆରମ୍ଭ କଲେ, ଏହି ଯଜ୍ଞ ନିର୍ବିଘ୍ନରେ ସମ୍ପାଦିତ ହେବ । ତାହା ଫଳରେ ବଳିରାଜା ପୁଣି ତ୍ରିଲୋକର ସ୍ୱାମୀ ହୋଇପାରିବେ ।"

ବ୍ରାହ୍ମଣମାନେ ସମ୍ମତି ପ୍ରଦାନ କରନ୍ତେ, ଶୁକ୍ରାଚାର୍ଯ୍ୟ ବିଧିବିଧାନର ସହିତ ମହାରାଜ ବଳିଙ୍କୁ ସ୍ୱର୍ଗ କାମନାରେ 'ଐନ୍ଦ୍ରମହାଭିଷେକ'ରେ ଅଭିଷିକ୍ତ କଲେ ଏବଂ ତତ୍ପରେ ସେ ବିଶ୍ୱଜିତ୍ ମହାଯଜ୍ଞରେ ବରଣ କରାଇଲେ । ଦେବଗଣ ସର୍ବଦା ମନ୍ତ୍ରାଧୀନ ହୋଇଥାଆନ୍ତି । ବଳିରାଜାଙ୍କର ନିଷ୍ଠାପର ଆରାଧନାରେ ଅଗ୍ନି-

ଦେବ ସନ୍ତୁଷ୍ଟ ହୋଇ ତାଙ୍କ ଆଗରେ ଆବିର୍ଭୂତ ହେଲେ । ସେ ଯଜ୍ଞ କୁଣ୍ଡରୁ ଗୋଟିଏ ସୁବର୍ଣ୍ଣ ନିର୍ମିତ ରଥ ବାହାର କରି ବଳିରାଜଙ୍କୁ ସମର୍ପଣ କଲେ । ସେହି ରଥରେ ମନଠାରୁ ଆହୁରି ଦ୍ରୁତଗାମୀ ହରିଦ୍‌ବର୍ଣ୍ଣ ଅଶ୍ୱ ଯୋଗ୍ୟ ହୋଇଥିଲେ ଏବଂ ସେଥିରେ ସିଂହ ଚିହ୍ନିତ ଗୋଟିଏ ଧ୍ୱଜା ଉଡ଼ୁଥିଲା । ତା' ସହିତ ଅଗ୍ନିଦେବ ବଳିରାଜାଙ୍କୁ ଅକ୍ଷୟ ତୂଣୀର ସମେତ ଗୋଟିଏ ଧନୁ, କବଚ ଏବଂ ଯୁଦ୍ଧରେ ନିଶ୍ଚିତ ବିଜୟଲାଭ କରିବାର ସମସ୍ତ ସାମଗ୍ରୀ ପ୍ରଦାନ କଲେ ।

ହେ ମୁନିଗଣ, ମହାରାଜ ବଳିଙ୍କ ପିତାମହ ପ୍ରହ୍ଲାଦ ପୌତ୍ରର ମଙ୍ଗଳ କାମନାରେ ଗୋଟିଏ ଅମ୍ଳାନମାଳା ପ୍ରଦାନ କରିଥିଲେ । ପିତାମହଙ୍କଦ୍ୱାରା ପ୍ରଦତ୍ତ ମାଳା ପିନ୍ଧିସାରିବା ପରେ ମହାରାଜ ବଳି ସାର ରସର ସାକ୍ଷାତ୍ ପ୍ରତିମା ପରି ଶୋଭା ପାଇଲେ । ଏହି ସୁ-ଅବସରରେ ଶୁକ୍ରାଚାର୍ଯ୍ୟ ଶିଷ୍ୟଙ୍କୁ ଗୋଟିଏ ଅଦ୍ଭୁତ ଶଙ୍ଖ ପ୍ରଦାନ କଲେ । ସେହି ଶଙ୍ଖ ନାଦରେ ରଣଭୂମିସ୍ଥିତ ଶତ୍ରୁମାନଙ୍କ ହୃଦୟରେ ଚମକ ସୃଷ୍ଟି ହେଉଥିଲା ଏବଂ ଶତ୍ରୁମାନେ ଯୁଦ୍ଧଭୂମି ତ୍ୟାଗ କରି ପଳାୟନ କରୁଥିଲେ । ଏହିପରି ଭାବରେ ମହାରାଜ ବଳି ସମସ୍ତଙ୍କଠାରୁ ଶୁଭାଶିଷ ତଥା ଦିବ୍ୟାସ୍ତ୍ର, ରଥ ଓ ଶଙ୍ଖ ଲାଭକରି ଅତ୍ୟନ୍ତ ଆନନ୍ଦିତ ହେଲେ ।

ହେ ଶୌନକ, ସର୍ବତୋଭାବେ ସଜ୍ଜିତ ହୋଇ ମହାରାଜ ବଳି ସ୍ୱର୍ଗପ୍ରାପ୍ତି ନିମିତ୍ତ ପୁଣି ଆଗ୍ରହୀ ହୋଇଉଠିଲେ ଏବଂ ସେ କାଳବିଳମ୍ବ ନ କରି; ଚତୁରଙ୍ଗିଣୀ ସେନାରେ ପରିବେଷ୍ଟିତ ହୋଇ ଯୁଦ୍ଧଲାଗି ବାହାରି ପଡିଲେ । ରାଜା ବଳି ଯୁଦ୍ଧଲାଗି ପ୍ରସ୍ତୁତ ହେବାକ୍ଷଣି, ଭୃଗୁବଂଶୀ ବ୍ରାହ୍ମଣମାନେ ମୁକ୍ତ କଣ୍ଠରେ କହିବାକୁ ଲାଗିଲେ । ବଳିରାଜା ରଥାରୋହଣ କରିବା ପୂର୍ବରୁ ପ୍ରଥମେ ବ୍ରାହ୍ମଣମାନଙ୍କୁ ପ୍ରଦକ୍ଷିଣ କରି ଶ୍ରଦ୍ଧାର ସହିତ ପ୍ରଣାମ ନିବେଦନ କଲେ । ତତ୍ପରେ ସେ ପିତାମହ ପ୍ରହ୍ଲାଦଙ୍କ ନିକଟକୁଯାଇ ତାଙ୍କ ଶ୍ରୀଚରଣରେ ପ୍ରଣାମ କଲେ । ।ପୌତ୍ରଙ୍କ ଭକ୍ତିରେ ସନ୍ତୁଷ୍ଟ ହୋଇ ଆଶୀର୍ବାଦ ପ୍ରଦାନପୂର୍ବକ କହିଲେ "ବତ୍ସ, ତୁମର ମଙ୍ଗଳ ହେଉ, ତୁମର ବିଜୟମାର୍ଗ ନିଷ୍କଣ୍ଟକ ହେଉ ।"

ବ୍ରାହ୍ମଣ ଓ ଗୁରୁଜନଙ୍କ ଆଶିଷ ତଥା ଅନୁମତି ଲାଭକରି ମହାରାଜ ବଳି ଅଗ୍ନିଦେବଙ୍କ ପ୍ରଦତ୍ତ ରଥରେ ଆରୋହଣ କରି ଯୁଦ୍ଧ ଲାଗି ପ୍ରସ୍ଥାନ କରିଥିଲେ । ସେ ନିଜ ସାଥିରେ ଅକ୍ଷୟ ତୂଣୀର ଓ ଅନ୍ୟାନ୍ୟ ଅସ୍ତ୍ର ଶସ୍ତ୍ର ନେଇଥିଲେ । ତାଙ୍କ ବାହୁରେ ବାଜୁବନ୍ଧ, କର୍ଣ୍ଣରେ କୁଣ୍ଡଳ ଏବଂ ଗଳାରେ ଅମ୍ଳାନ ପୁଷ୍ପମାଳା ଶୋଭିତ ହେଉଥିଲା । ତାଙ୍କର ବୀରବେଶ ଦେଖିଲେ ମନେହେଉଥିଲା—ସେ ନିଶ୍ଚୟ ତ୍ରିଭୁବନ ଜୟକରି ଫେରି ଆସିବେ । ତାଙ୍କର ଦୀପ୍ତିମନ୍ତ ସ୍ୱରୂପକୁ ଦେଖି ମନେ

ହେଉଥିଲା - ସତେଅବା ସେ ନୂତନ ଭାସ୍କର ଉଦିତ ହୋଇଛନ୍ତି ଅଥବା ସାକ୍ଷାତ୍ ଅଗ୍ନିଦେବ ଦିବ୍ୟରୂପ ଧାରଣ କରି ମଖମଣ୍ଡଳରେ ବିରାଜମାନ କରିଛନ୍ତି ।

ଶ୍ରୀ ଶୁକଦେବ କହିଲେ "ହେ ମହାରାଜ ପରୀକ୍ଷିତ,"—"ରାଜା ବଳି ଏହିପରି ଭାବରେ ସୁସଜ୍ଜିତ ହୋଇ ସ୍ୱର୍ଗ ଅଧିକାର କରିବା ନିମିତ୍ତ ସେନାବାହିନୀ ସହିତ ଅଗ୍ରସର ହେଲେ ।"

## ଛପ୍ପୟ

"ସେବା ତେଁ ସନ୍ତୁଷ୍ଟ ଶୁକ୍ର ଇକ ଯଜ୍ଞ ରଚାୟୋ ।
ନାମ ବିଶ୍ୱଜିତ ବିଦିତ ବେଦ ବିଧି ବିପ୍ର କରାୟୋ ॥
ପୂଜିତ ହ୍ୱୈ କେ ଅଗ୍ନି ଦିବ୍ୟ ସୁନ୍ଦର ରଥ ଦୀହ୍ନୋ ।
ଦ୍ୱୈ ଅକ୍ଷୟ ତୂଣୀର କବଚ ଧନୁ ଅର୍ପଣ କୀହ୍ନେ ॥
ଦୀହ୍ନୀ ମାଲ ପିତାମହ ଦିବ୍ୟ ଶଙ୍ଖ ଗୁରୁନେ ଦୟୋ ।
ୟେ ରନ କୋ ଯାମାନ ସବ, ଏକତ୍ରିତ କଲି ପେ ଭୟୋ ।"



# ସ୍ୱର୍ଗ ଆକ୍ରମଣ

ତାଂ ଦେବଧାନୀଂ ସ ବରୁଥିନୀପତି—
ର୍ବହିଃ ସମନ୍ତାଦ୍ ରୁରୁଧେ ପୃତନ୍ୟୟା ।
ଆଚାର୍ଯ୍ୟ ଦତ୍ତଂ ଜଲଜଂ ମହାସ୍ୱନଂ
ଦଧ୍ମୌ ପ୍ରଯୁଞ୍ଜାନ ଭୟମିନ୍ଦ୍ର ଯତୋଷି ତାମ୍" ।।

## ଛପ୍ପୟ

"ସଜି ସେନା ସୁର ବିଜୟ ହେତୁ ନୃପବର ବଲି ଦୀହ୍ନେଂ ।
ସୁରପୁର ଘେରଯୋ ହୃଦୟ ରିପୁନ କେ କମ୍ପିତ କୀହ୍ନେଂ ।।
ସୁର ସମୃଦ୍ଧି ଅତି ରମ୍ୟ ହୃଦୟ ଇନ୍ଦ୍ରିନ ସୁଖ ଦାଇ ।
ବନ ଉପବନ ବର ବୃକ୍ଷ ଚହୂଁ ଦିଶି ଶୋଭା ଛାଇ ।।
ଝୁକି ଝୁମେଂ ଦୃମେ ଅବନି ସୁରତରୁ ଫଲ ଦଲ ସୁମନଯୁତ ।
ମଧୁକର ଖଗ କଲରବ କରହିଁ ସୁର ଲଲନା ଝୁମତ ଫିରତ ।।"

ଅର୍ଥାତ୍ - ଶ୍ରୀ ଶୁକଦେବ କହୁଛନ୍ତି –"ହେ ରାଜନ୍, ଇନ୍ଦ୍ରଙ୍କର ଅମରାବତୀ ପୁରକୁ ଚତୁର୍ଦ୍ଦିଗରୁ ରାଜା ବଳି ଅସୁର ସେନାମାନଙ୍କ ଦ୍ୱାରା ଘେରି ଗଲେ । ଶୁକ୍ରାଚାର୍ଯ୍ୟ ଯେଉଁ ମହାନ୍ ଶଙ୍ଖ ଦେଇଥିଲେ, ତାହାକୁ ବଜାଇ ସେ ସୁରପୁରର ନାରୀମାନଙ୍କୁ ଭୟଭୀତ କରାଇଲେ ।

ପ୍ରାଣୀ ସବୁ କିଛି ନିଜ ସୁଖସମୃଦ୍ଧି ପାଇଁ କରିଥାଏ । ସେ ଯୁଦ୍ଧଦ୍ୱାରା ଅନ୍ୟର ସୁଖସାମଗ୍ରୀ ଛଡ଼ାଇ ଆଣି ନିଜ ପାଖରେ ଏକତ୍ରିତ କରିଥାଏ । କିନ୍ତୁ ଅନିତ୍ୟ ତଥା ନଶ୍ୱର ବସ୍ତୁରେ ସୁଖ କେଉଁଠୁ ମିଳିବ ? ସେଥିରେ ଆତ୍ମସନ୍ତୋଷ ଲାଭ କରିହୁଏ ନାହିଁ । ମନୁଷ୍ୟ ସୁଖପାଇଁ ଯେଉଁ ସବୁ ଦ୍ରବ୍ୟ ସଂଗ୍ରହ କରେ, ସେଥିରେ ସୁଖ ବଦଳରେ ଦୁଃଖ ଜାତ ହୋଇଥାଏ ସତ; କିନ୍ତୁ ସେ ତାହା ତ୍ୟାଗ କରିପାରେ ନାହିଁ । ଏହାହିଁ ହେଉଛି – ଭଗବତ ମାୟା । ମାୟାମୋହିତ ଜୀବ ସେହି ଅନିତ୍ୟ

ପଦାର୍ଥଗୁଡ଼ିକୁ ପାଇବା ପାଇଁ ହିଂସା, ଦ୍ୱେଷ ଓ ଈର୍ଷା କରେ । ତଥାପି ସେହି ଅନିତ୍ୟ ବସ୍ତୁ ଚିରକାଳ ତା'ର ଆପଣାର ହୋଇ ରହେ ନାହିଁ । ନାୟିକାର କଣ୍ଠରେ ଲମ୍ବିଥିବା ସଜଫୁଟା ଫୁଲହାର ଯେପରି ପରଦିନ ସକାଳକୁ ମଉଳିଯାଏ, ଠିକ ସେହିପରି, ମନୁଷ୍ୟଦ୍ୱାରା ସଂଗୃହିତ ବସ୍ତୁ ପରକ୍ଷଣରେ ମ୍ଳାନ ହୋଇଯାଏ । ତେଣୁ ଜ୍ଞାନୀଲୋକମାନେ ଲୌକିକ ଭୋଗ ବିଳାସ ପାଇଁ ମନରେ ସ୍ପୃହା କରନ୍ତିନାହିଁ । ସେମାନେ ନାନାବିଧ ଦ୍ରବ୍ୟ ଉପଭୋଗ କରିଥିଲେ ହେଁ ସେଥିପ୍ରତି ସର୍ବଦା ଉଦାସୀନ ରହିଥାଆନ୍ତି ।

ଶ୍ରୀ ଶୁକଦେବ କହିଲେ—"ହେ ରାଜନ, ମହାରାଜ ବଳି ନିଜ ସେନା-ବାହିନୀ ଦ୍ୱାରା ପୃଥିବୀ ଓ ଆକାଶକୁ ପ୍ରକମ୍ପିତ କରି ସ୍ୱର୍ଗପୁର ଆକ୍ରମଣ କରିଦେଲେ । ତାଙ୍କର ଅସୁର ସୈନ୍ୟମାନେ ଜିହ୍ୱା ଲହ ଲହ କରି ବିଶ୍ୱବ୍ରହ୍ମାଣ୍ଡକୁ ଅନାୟାସରେ ଗ୍ରାସିଦେବାଭଳି ଭୟଙ୍କର ହୋଇ ଉଠିଲେ । ସେମାନେ ଚକ୍ଷୁ ରକ୍ତବର୍ଣ୍ଣ କରି ସୁରପୁରକୁ ଧ୍ୱଂସ କରିଦେବା ପାଇଁ ବ୍ୟଗ୍ର ହୋଇ ରହିଲେ । ସତେଅବା ସେମାନେ କ୍ଷଣକ ମଧ୍ୟରେ ବିଶ୍ୱବ୍ରହ୍ମାଣ୍ଡକୁ ସେମାନଙ୍କ କ୍ରୋଧାଗ୍ନିରେ ଜାଳି ପୋଡ଼ି ଧ୍ୱଂସ କରିଦେବେ । ପ୍ରତ୍ୟେକ ଅସୁର ବୀର ନିଜକୁ ବଳିରାଜାଙ୍କ ସଦୃଶ ଅଜେୟ ବୀର ବୋଲି ମନେ କରୁଥିଲେ ଏବଂ ଅସୁରୀ ବିଭୂତିରେ ମଦମତ୍ତ ହୋଇ ନିଜକୁ ଜଣେ ଅଦ୍ୱିତୀୟ ବୀର ବୋଲି ଜ୍ଞାନ କରୁଥିଲେ ସେମାନେ ଇନ୍ଦ୍ର ଓ ତାଙ୍କର ଦେବୀସେନାଙ୍କୁ ହେୟ ଜ୍ଞାନ କରି, ଚତୁର୍ଦ୍ଦିଗରୁ ଅମରାବତୀକୁ ଘେରିଗଲେ । କ୍ରୋଧରେ ରକ୍ତବର୍ଣ୍ଣ ହୋଇଥିବା ଅସୁରମାନଙ୍କ ଚକ୍ଷୁର ଜ୍ୱାଳାରେ ଦିବ୍ୟ ଅମରାବତୀର ଶୋଭା ପଦ୍ମକୋଷର ଚତୁପାର୍ଶ୍ୱରେ କର୍ଣ୍ଣିକା ସଦୃଶ ଦେଦୀପ୍ୟମାନ ହୋଇ ଉଠିଲା । ସ୍ୱର୍ଗପୁରୀରେ ନନ୍ଦନକାନନ ତଥା ଅନୁରୂପ ବହୁ କାନନ ଶୋଭା ପାଉଥିଲା । ସେଥିମଧ୍ୟରେ ଚିରବୃକ୍ଷ ତଥା ଅନ୍ୟାନ୍ୟ ବୃକ୍ଷ ଶୋଭା ପାଉଥିଲା ଏବଂ ପ୍ରତ୍ୟେକ ବୃକ୍ଷରେ ସୁଗନ୍ଧିତ ପୁଷ୍ପ ପ୍ରସ୍ଫୁଟିତ ହୋଇ ଅତ୍ୟନ୍ତ ମନୋରମ ହୋଇଥିଲା । ସେହି ପୁଷ୍ପଗୁଡ଼ିକ ଉପରେ ମଧୁମତ୍ତ ଭ୍ରମର ମକରନ୍ଦ ପାନରେ ମାତି ପରାଗ ରଙ୍ଗରେ ରଞ୍ଜିତ ହୋଇଥିଲେ । ସେହି ବୃକ୍ଷମାନଙ୍କରେ ବସି ଖଗକୁଳ କଳରବରେ ଚତୁର୍ଦ୍ଦିଗ ମୁଖରିତ କରୁଥିଲେ । ବୃକ୍ଷଗୁଡ଼ିକ ସୁନ୍ଦର ତଥା ପକ୍ୱଫଳରେ ପରିପୂର୍ଣ୍ଣ ହୋଇଥିଲା । ବୃକ୍ଷଗୁଡ଼ିକର କୋମଳ ପତ୍ର ଠିକ ମଖମଲ ବିଛଣା ପରି ମନହରଣ କରୁଥିଲା । ପୁଷ୍ପସ୍ତବକମାନ ତଳକୁ ଲମ୍ବିପଡ଼ି ଜନମନହରଣ କରୁଥିଲା । ବାୟୁର ପ୍ରବାହରେ ସେଗୁଡ଼ିକ ହଲି ଦୋହଲି ସୁରଭି ବିକିରଣ କରୁଥିଲା । ସେହି ସ୍ତବକଗୁଡ଼ିକୁ ଚତୁର୍ଦ୍ଦିଗରୁ ଭ୍ରମରମାନେ ଘେରି ରହିଥିଲେ । ସତେଅବା, କୌଣସି ଜଣେ ମହାନ୍ ଦାତାଙ୍କୁ ଯାଚକମାନେ ଘେରି ରହିଛନ୍ତି !

ଦୁର୍ଗପୁରର ସେହି ଉତ୍ତମ ଶୋଭାଯୁକ୍ତ ବନ ମଧ୍ୟରେ ସ୍ୱଚ୍ଛସଲିଳପୂର୍ଣ୍ଣ ସରୋବର ଶୋଭା ପାଉଥିଲା । ସେହି ପୁଷ୍କରଣୀ ଗୁଡ଼ିକର ଜଳ ପଦ୍ମ ପରାଗରେ ସୁଗନ୍ଧିତ ହୋଇଥିଲା । ପଦ୍ମ ପତ୍ରରେ ଆଚ୍ଛାଦିତ ପୁଷ୍କରଣୀଗୁଡ଼ିକ ଅଶେଷ ଶୋଭାଦାୟକ ହୋଇଥିଲା । ସେହି ପୁଷ୍କରଣୀର ତଟଦେଶରେ ହଂସ, ସାରସ, ଚକୋର, ଚକୋରୀ, ଜଳ କୁକ୍‌କୁଟ, ପାତିହଂସ ତଥା ଅନ୍ୟାନ୍ୟ ଜଳଜନ୍ତୁ କ୍ରୀଡ଼ା କରୁଥିଲେ । ବିଶାଳ ପୁଷ୍କରଣୀମାନଙ୍କରେ ସୁରସୁନ୍ଦରୀଗଣ କମନୀୟ ଜଳକ୍ରୀଡ଼ା କରି ନିଜକୁ ଭୁଲି-ଯାଇଥିଲେ । ସେମାନଙ୍କ ଅଙ୍ଗରାଗର ସୁଗନ୍ଧରେ ଜଳାଶୟର ସୁଗନ୍ଧିତ ଜଳରାଶି ଅଧିକ ସୁରଭିତ ହୋଇ ଉଠିଥିଲା ।

ଇନ୍ଦ୍ରଙ୍କ ଅମରାବତୀର ପ୍ରାଚୀର ସୁବର୍ଣ୍ଣରେ ନିର୍ମିତ ହୋଇଥିଲା । ସେହି ପ୍ରାଚୀରର ଚତୁଃପାର୍ଶ୍ୱରେ ସୁରତରଙ୍ଗିଣୀ ବଳୟ ଆକାରରେ ଘେରି ରହିଥିଲା । ମନେ ହେଉଥିଲା—ସତେ ଯେପରି ସ୍ୱର୍ଗଙ୍ଗା ଅମରାବତୀ ଦୁର୍ଗର ପରିଖାରୂପେ ସେଠାରେ ପ୍ରବାହିତ ହେଉଛି । ସେହି ସ୍ୱର୍ଣ୍ଣମୟ ପ୍ରାଚୀରକୁ ଲାଗି ସପ୍ତପୁରୀ ଅଟ୍ଟାଳିକା-ମାନ ସୁରମ୍ୟ ବିମାନ ସଦୃଶ୍ୟ ଶୋଭା ପାଉଥିଲା । ସେହି ଅଟ୍ଟାଳିକାମାନଙ୍କରେ ମନୋରମ ଧ୍ୱଜା ପବନର ହିଲ୍ଲୋଳରେ ପ୍ରକମ୍ପିତ ହେଉଥିଲା । ଧ୍ୱଜାଗୁଡ଼ିକର ହିଲ୍ଲୋଳରୁ ମନେ ହେଉଥିଲା—ସତେ ଯେପରି, ସେମାନେ ସ୍ୱର୍ଗପୁରୀକୁ ଆସି ଉପଭୋଗରେ ମାତିବା ପାଇଁ ଅସୁରସେନାଙ୍କୁ ଆମନ୍ତ୍ରଣ ଜଣାଉ ଅଛନ୍ତି । ଦେବପୁରୀର ଦ୍ୱାର ଦେଶରେ ସ୍ଫଟିକ ନିର୍ମିତ ଦ୍ୱାରବନ୍ଧ ଶୋଭା ପାଉଥିଲା ଏବଂ ସେଥିରେ ସୁବର୍ଣ୍ଣ ନିର୍ମିତ କବାଟମାନ ଝୁଲୁଥିଲା । ସେହି ଦ୍ୱାରମାନଙ୍କରେ ବଜ୍ର ସଦୃଶ କଠିନ ତାଲାଗୁଡ଼ିକ ଲାଗିଥିଲା । ଗୃହର ସମ୍ମୁଖ ଭାଗରେ ବିସ୍ତୃତ ରାଜମାର୍ଗ ସଘନ ବୃକ୍ଷରାଜିରେ ସୁଶୋଭିତ ହେଉଥିଲା । ତାହା ଫଳରେ ରାଜମାର୍ଗ ସର୍ବଦା ଶୀତଳ ତଥା ମନୋ-ମୁଗ୍ଧକର ହୋଇଥିଲା । ତ୍ରିପଥ, ଚତୁଃଷ୍ପଥ ଉପରେ ସୁରମ୍ୟ ଉଦ୍ୟାନ ସୁଶୋଭିତ ହୋଇଥିଲା ଏବଂ ଅନେକ ଚତୁଃଷ୍ପଥ ପାର୍ଶ୍ୱରେ ଆମୋଦ ପ୍ରମୋଦ ଗୃହମାନ ରହିଥିଲା ।

ଅମରପୁରୀର ଆକାଶ ମଣ୍ଡଳରେ ଅଂସଖ୍ୟ ବ୍ୟୋମଯାନ ଉଡ଼ୁଥିଲା । ପ୍ରତ୍ୟେକ ବିମାନରୁ ସୁମଧୁର କଳଗୁଞ୍ଜନ ଭାସି ଆସୁଥିଲା । ବନ, ଉପବନ, ପ୍ରମୋଦ-ଗୃହ, ସରୋବର କୂଳ ତଥା ସୁରତରଙ୍ଗିଣୀ ତଟରେ ନବଯୌବନା, ଦିବ୍ୟଭୂଷଣରେ ଭୂଷିତା ରମଣୀମାନେ ସ୍ୱଚ୍ଛନ୍ଦରେ ବିହାର କରୁଥିଲେ । ସେମାନେ ଦେଦୀପ୍ୟମାନ ଅଗ୍ନିଶିଖା ତଥା ଅମ୍ଲାନ ଚମ୍ପକମାଳା ସଦୃଶ ଶୋଭା ପାଉଥିଲେ ।

ଅମରପୁରୀରେ ପ୍ରବାହିତ ବାୟୁ ମଧ୍ୟ କମ୍ ସୁରସିକ ନଥିଲା । ସେ ମନ୍ଦ ମନ୍ଦ ପ୍ରବାହିତ ହୋଇ ସୁରଙ୍ଗନାମାନଙ୍କ ଅଙ୍ଗବାସକୁ ଲିହ୍ୱରିତ କରାଇବା ସଙ୍ଗେ ସଙ୍ଗେ

ପୁଷ୍ପଗୁଚ୍ଛରୁ ସୁରଭି ଗ୍ରହଣ କରି ଆଣି ବନ, ଉପବନ, ରାଜମାର୍ଗ ତଥା ଦେବନିବାସ ଗୁଡ଼ିକୁ ସୁରଭିତ କରାଉଥିଲା । ବେଳେ ବେଳେ ସୁରସିକ ବାୟୁ ନବଯୌବନା ଲଳନା-ମାନଙ୍କ କେଶପାଶରୁ ପୁଷ୍ପମାଳାଗୁଡ଼ିକୁ ଦୋହଲାଇ ଦେଇ ସେମାନଙ୍କ ସହିତ ପ୍ରମୋଦ କ୍ରୀଡ଼ାରେ ମାତଥିଲା । କିନ୍ତୁ ସୁରସୁନ୍ଦରୀମାନେ ପବନର ଔଦ୍ଧତ୍ୟରେ ଆଦୌ ବିଚଳିତ ହେଉ ନଥିଲେ କିମ୍ବା ବିରକ୍ତି ପ୍ରକାଶ କରୁନଥିଲେ । ବରଂ ସେମାନେ କଣ୍ଟକିତଭାବ ପ୍ରଦର୍ଶନ କରି ମନେ ମନେ ଉଲ୍ଲସିତା ହେଉଥିଲେ ।

ଅଳକା ପୁରୀକୁ ସୌଗନ୍ଧିକାପୁରୀ ବୋଲି କୁହାଯାଇପାରେ । କାରଣ ଅମରପୁରୀର ପ୍ରତ୍ୟେକ ହର୍ମ୍ମ୍ୟରୁ ଭାସିଆସୁଥିଲା ପାରିଜାତର ମହକ, ସୁରାଙ୍ଗନାମାନଙ୍କ ମୁଖରୁ ନିସୃତ ହେଉଥିଲା ମାଧବୀର ସୁଗନ୍ଧ, ସେମାନଙ୍କ କେଶପାଶରୁ ଭାସିଆସୁଥିଲା ମଲ୍ଲୀ, ମାଳତୀ ଓ ଚମ୍ପକର ସୁବାସ । କେବଳ ସେତିକି ନୁହେଁ, ରାଜମାର୍ଗର ଉଦ୍ୟାନ ତଥା ପ୍ରତ୍ୟେକ ପ୍ରାସାଦରୁ ଛୁଟି ଆସୁଥିବା ଗୁଳ୍ଗୁଳର ଗନ୍ଧରେ ପରିବେଶ ଆମୋଦିତ ହୋଇ ଉଠୁଥିଲା । ଧୂପର ଗନ୍ଧ ସହିତ ହର୍ମ୍ମ୍ୟମାନଙ୍କରୁ ଶୁଭ୍ର ଧୂମ ଭାସି ଆସି ପାରାବତର ଭ୍ରମ ମନରେ ସୃଷ୍ଟି କରୁଥିଲା ।

ପ୍ରତ୍ୟେକ ହର୍ମ୍ମ୍ୟର ବିତାନ ଶୋଭିତ ହେଉଥିଲା—ମଣି ମୁକ୍ତାର ଛଟାରେ । ପ୍ରତ୍ୟେକ ଧ୍ୱଜାରୁ ବିଚ୍ଛୁରିତ ହେଉଥିଲା—ପ୍ରୀତି କିରଣାବଳୀ । ଏହି ସମସ୍ତ ପ୍ରକାର ଶୋଭା ସମ୍ପଦର ମିଳନରେ ସୁରପୁରୀ ଦେଖାଯାଉଥିଲା—ଠିକ୍ ଗୋଟିଏ ନବବିବାହିତା ଲଳନା ପରି ।

ଅମରପୁରୀର ହର୍ମ୍ମ୍ୟ ଶିଖରରେ ବସି ମୟୂର, କପୋତ, ତଥା ଅନ୍ୟାନ୍ୟ ପକ୍ଷୀମାନେ କଳକୂଜନରେ ରତ ଥିଲେ । ସେମାନଙ୍କ କୂଜନ ସହିତ ମନ୍ଦିରମାନଙ୍କ ଘଣ୍ଟା, ମର୍ଦ୍ଦନ, ବଂଶୀ, ଶଙ୍ଖ, ମହୁରୀ ତଥା ଦୁନ୍ଦୁଭିନାଦ ସମ୍ମିଳିତ ହୋଇ ଅପୂର୍ବ ଏବଂ ଶ୍ରୁତି ସୁଖକର ମୂର୍ଚ୍ଛନା ସୃଷ୍ଟି କରୁଥିଲା । ତା' ସହିତ ମିଳିତ ହେଉଥିଲା—ଅପ୍ସରାମାନଙ୍କ ପାଦର ନୂପୁର ଧ୍ୱନି ଏବଂ ସଙ୍ଗୀତର ସୁମଧୁର ସ୍ୱର ଲହରୀ । ଅପରୂପ ଶୋଭା ବିମଣ୍ଡିତ ପବିତ୍ର ଅମରପୁରୀକୁ ଅସୁରମାନେ ଦୈତ୍ୟ ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ଅନୁଗ୍ରହରେ ଚତୁର୍ଦ୍ଦିଗରୁ ଘେରି ଯାଇଥିଲେ ।

ମହାରାଜ ବଳି ଶୁକ୍ରାଚାର୍ଯ୍ୟଙ୍କ ସଞ୍ଜୀବନୀ ଶକ୍ତି ବଳରେ ବଳୀୟାନ୍ ହୋଇ ସୁରପୁରୀକୁ ଚତୁର୍ଦ୍ଦିଗରୁ ଘେରିଯିବା ସଙ୍ଗେ ସଙ୍ଗେ ଗୁରୁଦତ୍ତ ଶଙ୍ଖକୁ ଉଚ୍ଚ ସ୍ୱରରେ ବଜାଇବାକୁ ଲାଗିଲେ । ସେହି ହୃଦୟ ବିଦାରକ ଧ୍ୱନିରେ ଦେବଗଣଙ୍କ ହୃଦୟ ପ୍ରକମ୍ପିତ ହେବାକୁ ଲାଗିଲା ଏବଂ ଅପ୍ସରାଗଣ ଶଙ୍ଖ ନିନାଦରେ ମୂର୍ଚ୍ଛିତା ହୋଇ

ପଡ଼ିଲେ । ଦେବରାଜ ଇନ୍ଦ୍ର ଆକସ୍ମିକ ଦୁର୍ଘଟଣାରେ ଭୟଭୀତ ହୋଇ ଉଠିଲେ । କ୍ଷଣକ ପୂର୍ବରୁ ଯେଉଁ ଅମରାବତୀ ଆମୋଦ ପ୍ରମୋଦର ଲୀଳା ବିଳାସରେ ମୋଦମଗ୍ନ ହୋଇ ଉଠିଥିଲା, ସେହି ପୁରୀରେ ହା'ହା'କାର ରବ କର୍ଣ୍ଣକୁହରକୁ ବଧିର୍ଣ୍ଣ କରିଦେଲା । ଅସୁରମାନଙ୍କ କଳକଳା ନାଦରେ ସ୍ୱର୍ଗ ଭୟଙ୍କର ବିଭୀଷିକା ଖେଳିଗଲା ।

ଶ୍ରୀ ଶୁକଦେବ କହିଲେ "ହେ ରାଜନ୍"—"ଅସୁରମାନଙ୍କ ଆକ୍ରମଣରେ ଭୀତତ୍ରସ୍ତ ହୋଇ ଇନ୍ଦ୍ର, ଦେବଗଣଙ୍କ ସହିତ ଦେବଗୁରୁ ବୃହସ୍ପତିଙ୍କ ଦ୍ୱାରରେ ଉପସ୍ଥିତ ହେଲେ ।"

## ଛପ୍ପୟ

"ଶ୍ୟାମ ସୁଭଗା ସଦା ସୁହାଗିନୀ ବହରେଁ ବାଲା ।
କେଶପାଶ ମହଁ ଗ୍ରଥିତ ଦିବ୍ୟ ସୁମନନ କୀ ମାଲା ।।
ତନ ତେଂ ଲେ ଆମୋଦ ଅନିଲ ମଗ ସୁରଭି ବଖେରେଁ ।
ବନ ପରଖା ନଭ ଗଙ୍ଗ ଅମରନଗରୀକୁଁ ଘେରେଁ ।।
ନହୀଂ ପ୍ରବେଶ ପାପୀ କରହିଁ, ପୁଣ୍ୟ ପ୍ରାପ୍ତ ଜହାଁ ଭୋଗ ସବ ।
ଗୁରୁ ଆଶିଷ ତେ ସୁରପୁରୀ, ଘେରୀ ଅସୁରନ ଆଇ ଅବ ।।"



## ଦେବଗଣଙ୍କ ସ୍ୱର୍ଗତ୍ୟାଗ

"ଏବଂ ସମନ୍ତ୍ରିତାର୍ଥାସ୍ତେ ଗୁରୁଣାର୍ଥାନୁଦର୍ଶିନା ।
ହିତ୍ୱା ତ୍ରିବିଷ୍ଟପଂ ଜଗ୍ମୁ ର୍ଗୀର୍ବାଣାଃ କାମରୂପିଣଃ ।।

( ୮।୧୫।୩୨ )

### ଛପ୍ପୟ

"ସୁରପତି ଗୁରୁତିଂ ଗ ଜାଇ କହୈ ଗୁରୁ ଅସୁର ବଢ଼ୈ କସ ।
ଓଜ ତେଜ ଉତ୍ସାହ ବଢ଼ୈଂଯୀ ଦୈଯୀଂ ଅସୁରନ ବଲ ଅସ ।।
ବୋଲେ ସୁରଗୁରୁ କରୀ କୃପା ଗୁରୁନେ ଅସୁରନ ପୈ ।
ହାରେ ହରି ବନୁ ନହୀଂ ଅବହୁଁ ସ୍ୱେ ସ୍ୱର୍ଗ ଅବନ ପୈ ।।
ତାତେଂ ତଜି କେ ସ୍ୱର୍ଗ କୂଁ, କରୋ ପ୍ରତୀକ୍ଷା କାଲ କୀ ।
ମେଟି ସକୈ ନହୁଁ କବହୁଁ ନର, ଲଖୀ ରେଖ ଜୋ ଭାଲ କୀ" ।।

ଅର୍ଥାତ୍‌—ଶ୍ରୀ ଶୁକଦେବ ମହାରାଜ ପରୀକ୍ଷିତଙ୍କୁ କହୁଛନ୍ତି – "ହେ ରାଜନ୍, ତାତ୍କାଳିକ ସ୍ୱାର୍ଥକୁ ଭଲ ଭାବରେ ଅବଗତ ହୋଇଥିବା ଦେବଗୁରୁ ବୃହସ୍ପତି ସୁରଗଣଙ୍କୁ ଅମରପୁରୀ ତ୍ୟାଗ କରି ଚାଲିଯିବା ଲାଗି କହିଲେ, ସେମାନେ ନିଜ ଇଚ୍ଛାରେ ଛଦ୍ମବେଶ ଧାରଣ କରି ସ୍ୱର୍ଗଧାମ ଛାଡ଼ି ଅନ୍ୟତ୍ର ପଳାୟନ କରିଥିଲେ ।

ଉନ୍ନତି ସହିତ ଅବନତି, ଜୟ ପରେ ପରାଜୟ, ଜନ୍ମ ପରେ ମୃତ୍ୟୁ ଏବଂ ଉତ୍ଥାନ ସହିତ ପତନ ଲାଗିରହିଥାଏ । ଅଜ୍ଞାନ ଲୋକମାନେ ଏଥି ସହିତ ସନ୍ତପ୍ତ ହୋଇ ଦୁଃଖ ଭୋଗ କରୁଥାନ୍ତି । କିନ୍ତୁ ଜ୍ଞାନୀ ଲୋକମାନେ ଏଥିରେ ସମଭାବ ପୋଷଣ କରନ୍ତି । ସେମାନେ ଏହାକୁ ଈଶ୍ୱରଙ୍କ ଇଚ୍ଛା ବୋଲି ମନେ କରି ତଦନୁସାରେ କାର୍ଯ୍ୟ କରନ୍ତି । ଜୟ ହେଉ କିମ୍ବା ପରାଜୟ ହେଉ, ଦୁଇଟିଯାକ ଈଶ୍ୱରଙ୍କ ଦୟା ବୋଲି ସେମାନେ ମନେ କରନ୍ତି । ବାସ୍ତବିକ୍ ଏହି କ୍ଷଣଭଙ୍ଗୁର ସଂସାରରେ ଜୟ ଓ ପରାଜୟର ମୂଲ୍ୟ କେଉଁଠି ? ଗଙ୍ଗାରେ ଭାସି ଆସିଥିବା ପାଷାଣ ଖଣ୍ଡକୁ ନେଇ ଶ୍ରେଷ୍ଠ

ଗ୍ରେଷ୍ଠ ପିଲମାନେ ଆପଣାର ବୋଲି ମନେକରି ଖେଳିବାରେ ଲଗିଯାଆନ୍ତି ଏବଂ ତା'ରି ପାଇଁ ଆପଣା ଆପଣା ମଧ୍ୟରେ କଳିତକରାଳ କରିଥାନ୍ତି । କିନ୍ତୁ ଖେଳ ସମାପ୍ତ ହେବା ପରେ ସେମାନେ ଖାଲି ହାତରେ ଘରକୁ ଫେରିଯାଆନ୍ତି ଏବଂ ପାଷାଣଖଣ୍ଡ ଯେଉଁଠି ବାଲି ଗଦାରେ ପଡ଼ି ରହେ । ବର୍ଷା ସମୟରେ ସେହି ପାଷାଣ-ଖଣ୍ଡ ଗଙ୍ଗାରେ ବିଲୀନ ହୋଇଯାଏ, ଅଥଚ ପିଲମାନେ ନିଜ ନିଜ ଘରେ ଖେଳରେ ମାତି ରହନ୍ତି, ଏବଂ ଆଉ ସେହି ପାଷାଣଖଣ୍ଡ ବିଷୟରେ କେବେହେଲେ ଚିନ୍ତା କରନ୍ତି ନାହିଁ । ଯେତେବେଳେ ଶରତ୍ ଋତୁରେ ଗଙ୍ଗାର ଜଳ ଶୁଖିଯାଏ, ପୁଣି ସେହି ପାଷାଣ ଖଣ୍ଡକୁ ଗୋଟାଇ ଆଣି ପିଲମାନେ ଖେଳ ଆରମ୍ଭ କରିଦିଅନ୍ତି । ସେମାନେ ବଡ଼ ହୋଇଯିବା ପରେ ସେମାନଙ୍କ ପୁଅ ଝିଅମାନେ ସେହି ବାଲି ଗୋଡ଼ିରେ ଖେଳ ଆରମ୍ଭ କରନ୍ତି । ଅନାଦି କାଳରୁ ସେହି ଖେଳ ଲଗିରହିଛି । ଏ' ଖେଳ କେବେହେଲେ ଶେଷ ହୁଏନାହିଁ । ଏହାହିଁ ହେଉଛି—ଈଶ୍ୱରଙ୍କ ମାୟା ! କାଳରୂପୀ ପରମାତ୍ମା ସର୍ବତ୍ର ବ୍ୟାପି ରହିଥାନ୍ତି । ସେ ଯେତେବେଳେ ଯାହାକୁ ଖେଳାନ୍ତି, ସେ ଖେଳରେ ମାତିଯାଏ ଏବଂ ଯାହାକୁ ଖେଳଠାରୁ ଦୂରେଇ ନିଅନ୍ତି, ସେ ଖେଳରୁ ନିବୃତ୍ତ ରହେ । ସବୁ କିଛି ପ୍ରଭୁଙ୍କର ଖେଳ ଏବଂ ତାଙ୍କର ଇଚ୍ଛା ।

ଶ୍ରୀ ଶୁକଦେବ କହିଲେ – "ହେ ରାଜନ୍, ଅସୁରମାନେ ସ୍ୱର୍ଗପୁର ଘେରି ଯାଆନ୍ତେ, ସେମାନଙ୍କ କୋଳାହଳରେ ଇନ୍ଦ୍ର ଭୟଭୀତ ହୋଇଗଲେ । ସେ ଦେବଗଣଙ୍କୁ ସାଙ୍ଗରେ ନେଇ ଦେବଗୁରୁଙ୍କ ଦ୍ୱାରରେ ଉପସ୍ଥିତ ହେଲେ । ଦେବଗଣ ବୃହସ୍ପତିଙ୍କ ଶ୍ରୀଚରଣରେ ପ୍ରଣାମ ଜଣାଇ ମୁହଁ ତଳକୁ କରି ସେଠାରେ ବସି ପଡ଼ିଲେ ।

ଦେବଗଣଙ୍କ ସହିତ ଇନ୍ଦ୍ରଙ୍କୁ ଦେଖି ବୃହସ୍ପତି ପଚାରିଲେ—"ଦେବରାଜ, ତୁମ ମୁଖମଣ୍ଡଳ ମଳିନ କାହିଁକି ଦିଶୁଛି ?"

ବୃହସ୍ପତିଙ୍କ ପ୍ରଶ୍ନ ଶୁଣି କାତର ସ୍ୱରରେ ହାତଯୋଡ଼ି ଦେବରାଜ, କହିଲେ —"ଗୁରୁଦେବ, ଆପଣ କ'ଣ ଅସୁର ସେନାର ମୁଖରବ ଶୁଣୁନାହାନ୍ତି ?"

ଦେବଗୁରୁ ବୃହସ୍ପତି କହିଲେ, "ହଁ, ମୁଁ ମଧ୍ୟ ସେମାନଙ୍କ ରଣଗୋଳ ଶୁଣିପାରୁଛି । ତୁମର ପୂର୍ବ ଶତ୍ରୁ ବଳିରାଜା ପୁଣି ଥରେ ଶତ୍ରୁତା ସାଧନ ପାଇଁ ଧାଇଁ ଆସିଛି ।"

ତାହା ଶୁଣି ବିନମ୍ର ସ୍ୱର ସହିତ ଦେବରାଜ କହିଲେ—"ଗୁରୁଦେବ, ଶତ୍ରୁ ଆସିବାରେ ମୋର ଦୁଃଖ ନାହିଁ । କିନ୍ତୁ ଏଥର ସେମାନେ ମଦମତ୍ତ ହୋଇ ଗର୍ଜନ ତର୍ଜନ କରୁଛନ୍ତି କାହିଁକି ? ଯେଉଁମାନେ ଦେବଗଣଙ୍କଠାରୁ ଅତୀତର ବହୁବାର

ପରାସ୍ତ ହୋଇଛନ୍ତି ଏବଂ କାଲି ପୁଣି ବଳିରାଜା ସାଙ୍ଘାତିକ ଭାବରେ ପରାସ୍ତ ହୋଇ ଫେରିଯାଇଛି । ସେ ମୋ' ବଜ୍ର ଘାତରେ ମୃତ ପ୍ରାୟ ହୋଇ ଯାଇଥିଲେ । କିନ୍ତୁ ଶୁକ୍ରାଚାର୍ଯ୍ୟଙ୍କ ଅନୁଗ୍ରହରୁ ସେ ପୁଣି ନବଜୀବନ ଲାଭ କଲେ ଏବଂ ମୃତ ରାକ୍ଷସମାନେ ପୁନର୍ଜୀବନ ଲାଭ କରିଥିଲେ । ସେମାନଙ୍କ ସହିତ ବହୁବାର ଯୁଦ୍ଧ କରିଥିଲେ ହେଁ, ଏଥର ସେମାନେ ଅପୂର୍ବ ଉତ୍ସାହର ସହିତ ଦେବପୁରକୁ ମାଡ଼ି ଆସିଛନ୍ତି । ଆଜି ସେମାନଙ୍କ ରଣ ହୁଙ୍କାର ଶୁଣି, ମୋର ମନେ ହେଉଛି—ପ୍ରଳୟାଗ୍ନି ମାଡ଼ି ଆସିଲା କି ? ଅଥବା ଶିବଙ୍କ ତୃତୀୟ ନେତ୍ର ଫିଟିଗଲା ? ଚତୁର୍ମେଘ ଏକାବେଳକେ ଘୋଟିଆସି ପ୍ରଳୟ କରିଦେଲା ପରି, ସେମାନଙ୍କ ଗର୍ଜନ ତର୍ଜନ ମୋତେ କମ୍ପାଇ ଦେଉଛି ।

"ହେ ଗୁରୁଦେବ, ମୁଁ ହର୍ମ୍ୟ ଉପରେ ଛିଡ଼ାହୋଇ ବଳିକୁ ଲକ୍ଷ୍ୟ କରିଛି ! ତା'ର କ୍ରୋଧପୂର୍ଣ୍ଣ ରକ୍ତବର୍ଣ୍ଣ ଚକ୍ଷୁ ଦେଖି ମୁଁ ଭୟଭୀତ ହୋଇଯାଇଛି । ତା'ର ଦୁର୍ଦ୍ଧର୍ଷ ତେଜରୁ ମନେହେଉଛି, ସେ ଦଶଦିଗକୁ ଦଗ୍ଧ କରିଦେବ । ପ୍ରଭୋ, ବଳି ଏତେବଡ଼ ଅମୋଘ ଶକ୍ତିରେ ବଳୀୟାନ୍ ହେଲା କିପରି ? ଆଜି ତା'ର ପ୍ରତ୍ୟେକ ଇନ୍ଦ୍ରିୟରୁ ବିଜୟର ଉତ୍ସାହ ଝଲସି ଉଠୁଛି । ଏହାର କାରଣ କଣ ?"

ଇନ୍ଦ୍ରଙ୍କ ବଚନ ଶୁଣି ବୃହସ୍ପତି କହିଲେ—"ହେ ଶଚୀପତି, ବଳିର ପୁରୁଷାର୍ଥ ସମ୍ବନ୍ଧରେ ମୁଁ ଭଲଭାବରେ ଜାଣେ ! ଏଥର ତୁମେ ତାକୁ କୌଣସିମତେ ପରାସ୍ତ କରିପାରିବ ନାହିଁ ।"

ଦେବଗୁରୁଙ୍କ ବାଣୀ ଶୁଣି ଇନ୍ଦ୍ର ନିରାଶପୂର୍ଣ୍ଣ ସ୍ୱରରେ ପଚାରିଲେ—"ପ୍ରଭୋ, ଆପଣ ଏ କ'ଣ କହୁଛନ୍ତି ? ଏଥର ମୁଁ ତାକୁ ପରାସ୍ତ କରିପାରିବି ନାହିଁ କାହିଁକି ? ଏହାର କାରଣ କ'ଣ ?"

ଦେବଗୁରୁ କିଛି ସମୟ ମୌନ ରହିବା ପରେ ଗମ୍ଭୀର ସ୍ୱରରେ କହିଲେ —"ଦେବରାଜ, ବଳି ବ୍ରହ୍ମ ତେଜରେ ବଳୀୟାନ ହୋଇଛି । ଶିଷ୍ୟ ଭକ୍ତିରେ ମୁଗ୍ଧ ହୋଇ ଶୁକ୍ରାଚାର୍ଯ୍ୟ ଦ୍ୱିଜାତୀୟ ବ୍ରାହ୍ମଣମାନଙ୍କ ଦ୍ୱାରା ବଳି ପାଇଁ ବିଶ୍ୱଜିତ୍ ଯଜ୍ଞ କରିଛି । ସେଇଥିପାଇଁ ବଳି ଆଜି ଅପରାଜେୟ ହୋଇ ଉଠିଛି ।"

ଦେବରାଜ ଇନ୍ଦ୍ର କହିଲେ "ତା'ହେଲେ······ବଳିକୁ ? କ'ଣ ଆଉ କେବେହେଲେ କେହି ପରାସ୍ତ କରିପାରିବେ ନାହିଁ ?"

"ହଁ······ବର୍ତ୍ତମାନ ପରିସ୍ଥିତିରେ ତାହାହିଁ ମନେ ହେଉଛି ।" ଦେବଗୁରୁ କହିଲେ—"କିନ୍ତୁ ଏହାକୁ କେବଳ ସର୍ବ ସମର୍ଥ ତଥା ସର୍ବଜ୍ଞ ବିଷ୍ଣୁ ଅନ୍ୟଥା

କରିପାରିବେ । ତାଙ୍କ ପାଇଁ କୌଣସି ବିଷୟ ଅସମ୍ଭବ ନୁହେଁ । ସେହି ସର୍ବେଶ୍ୱର ଶ୍ରୀହରିଙ୍କ ବ୍ୟତୀତ ଆଉ କେହି ବଳିର ସମ୍ମୁଖୀନ ହୋଇପାରିବ ନାହିଁ । କାରଣ କାଳର ସମ୍ମୁଖୀନ ହେବା ପାଇଁ କେବଳ ମହା କାଳରୂପୀ ପରମେଶ୍ୱର ହିଁ ଏକମାତ୍ର ସମର୍ଥ ।"

"ତା'ହେଲେ .....?" ଇନ୍ଦ୍ର କହିଲେ—"ହେ ଭଗବାନ୍, ଆମେ କ'ଣ କରିବୁ ? ମୁଁ ଭାବୁଛି—ଆମେମାନେ ଶକ୍ତି ଅନୁସାରେ ଯୁଦ୍ଧ କରିବୁ !"

ଇନ୍ଦ୍ରଙ୍କ ନିଷ୍ପତ୍ତିର ବିରୋଧ କରି ଦେବଗୁରୁ କହିଲେ—"ଜାଣିଶୁଣି କାଳ ମୁହଁକୁ ଲମ୍ଫ ଦେବାପାଇଁ ମୁଁ ପରାମର୍ଶ ଦେଇପାରିବି ନାହିଁ । ବର୍ତ୍ତମାନ ଅବସ୍ଥାରେ ଯୁଦ୍ଧ କରିବା ଉଚିତ ହେବନାହିଁ । ତୁମେମାନେ ଏହି ସଙ୍କଟଜନକ ପରିସ୍ଥିତିରେ ସ୍ୱର୍ଗତ୍ୟାଗ କରି ଅନ୍ୟତ୍ର ଚାଲିଯାଅ । ସଂସାରରେ କୌଣସି ବ୍ୟକ୍ତି ବଳବାନ ନୁହେଁ; କାଳ ହେଉଛି—ବଳୀୟାନ୍ । ଅସୁରମାନଙ୍କର ଅଭ୍ୟୁଦୟର କାଳ ଆସି ଉପସ୍ଥିତ ହୋଇଛି । ତେଣୁ ସେମାନଙ୍କୁ ସୁଖଭୋଗ କରିବା ପାଇଁ ସୁବିଧା ଦେଇ, ତୁମେମାନେ ମର୍ତ୍ତ୍ୟ ମଣ୍ଡଳକୁ ଚାଲିଯାଇ କୌଣସିମତେ କାଳଯାପନ କର !"

ବୃହସ୍ପତିଙ୍କ ଉକ୍ତି ଶୁଣି ଇନ୍ଦ୍ର ଅତ୍ୟନ୍ତ କ୍ଷୁବ୍ଧ ହୋଇ କହିଲେ—"ତା'ହେଲେ କ'ଣ ଆମେମାନେ ସବୁଦିନ ଲାଗି ସ୍ୱର୍ଗସୁଖରୁ ବଞ୍ଚିତ ହୋଇ ରହିବୁ ?"

ନିଜ ନିଷ୍ପତ୍ତିରେ ଦୃଢ଼ ରହି ବୃହସ୍ପତି କହିଲେ—"ସଂସାରରେ କୌଣସି ପରିସ୍ଥିତି ଚିରସ୍ଥାୟୀ ନୁହେଁ । ରଥ ଚକ୍ର ପରି ସୁଖ ଦୁଃଖ ପରିବର୍ତ୍ତିତ ହେଉଛି । ଆଜି ସେମାନଙ୍କର ଅଭ୍ୟୁଦୟର ସମୟ ଆସିଛି ପୁଣି କେବେ ହୁଏତ ତୁମର ସମୟ ଆସିପାରେ ! ସେତେବେଳେ ସେମାନେ ଅଧଃପତନର ଅତଳ ଗହ୍ୱରରେ ପଡ଼ି ଦୁଃଖ ଭୋଗ କରିବେ ।"

ଦେବରାଜ ପଚାରିଲେ "କେବେ ପୁଣି ସେମାନଙ୍କର ଅଧଃପତନ ହେବ ଗୁରୁଦେବ ?"

ବୃହସ୍ପତି ଟିକିଏ ମୌନ ରହିବା ପରେ ଗମ୍ଭୀର ହୋଇ କହିଲେ—"ସେମାନେ ଐଶ୍ୱର୍ଯ୍ୟରେ ମତ୍ତ ହୋଇ ଯେତେବେଳେ ନିଜ ଗୁରୁଦେବଙ୍କୁ ଅବମାନନା କରିବେ, ସେତେବେଳେ ବଳି କୁଟୁମ୍ବ ସହିତ ପାତାଳକୁ ଯାଇ ସେହିଠାରେ ଚିର-କାଳ ନିବାସ କରିବ । ବର୍ତ୍ତମାନ ସେମାନେ ଶକ୍ତିଶାଳୀ: ତେଣୁ ଏପରି ଅବସ୍ଥାରେ ତୁମେ ସେମାନଙ୍କ ସହିତ ଯୁଦ୍ଧ କରନାହିଁ ।"

ଶ୍ରୀ ଶୁକଦେବ ପରୀକ୍ଷିତଙ୍କୁ ବୁଝାଇ କହିଲେ—"ହେ ରାଜନ୍, ଇନ୍ଦ୍ର ଅତ୍ୟନ୍ତ ବୁଦ୍ଧିମାନ୍ ଓ ଗୁଣଜ୍ଞ ଥିଲେ । ତେଣୁ ସେ ଗୁରୁଙ୍କ ଆଦେଶ ମାନି ସେ ସମୟରେ ଯୁଦ୍ଧ କରିବାକୁ ଆଦୌ ମନ ବଳାଇଲେ ନାହିଁ ଏବଂ ଯେ କୌଣସି ଉପାୟରେ ବେଶ ପରିବର୍ତ୍ତନ କରି ଦେବତାମାନଙ୍କୁ ଆତ୍ମଗୋପନ କରି ରହିବା ପାଇଁ ପରାମର୍ଶ ଦେଲେ । ଦେବଗଣ ଇନ୍ଦ୍ରଙ୍କ ପରାମର୍ଶ ଅନୁସାରେ ନିଜର ଅଭ୍ୟୁଦୟ କାଳ ଆସିବା ପର୍ଯ୍ୟନ୍ତ ପ୍ରତୀକ୍ଷା କରି ରହିଲେ ।"

"ହେ ପରୀକ୍ଷିତ, ମହାରାଜ ! ଦେବେନ୍ଦ୍ରଙ୍କ ଆଜ୍ଞା ପାଳନ କରି ଦେବଗଣ ଛଦ୍ମବେଶରେ ସ୍ୱର୍ଗପୁର ତ୍ୟାଗ କରି ଗୋପନୀୟ ସ୍ଥାନରେ ଆତ୍ମଗୋପନ କଲେ । ବଳିରାଜା ଅନାୟାସରେ ଶୂନ୍ୟ ଅମରାବତୀ ଅଧିକାର କରି, ଇନ୍ଦ୍ରାସନରେ ଉପ-ବେଶନ ପୂର୍ବକ ତ୍ରିଲୋକର ଶାସନ କରିବାକୁ ଲାଗିଲେ ।"

ଶୁକ୍ରାଚାର୍ଯ୍ୟ ଶିଷ୍ୟର ଅଭ୍ୟୁଦୟରେ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇ କହିଲେ – "ବତ୍ସ, ତୁମେ ତ୍ରିଲୋକାଧୀଶ ହୋଇ-ଥିବାରୁ, ମୁଁ ପରମ ପ୍ରୀତ ହୋଇଛି । ମୋ' ହୃଦୟରେ ଆନନ୍ଦ ଉଦ୍‌ବେଳିତ ହୋଇଉଠୁଛି । ମୁଁ ତୁମଙ୍କୁ ଅଭିନନ୍ଦନ ଜଣାଉଛି ।"

ଗୁରୁଙ୍କ ଆଶୀର୍ବାଦ ପାଇ ବଳିରାଜା କହିଲେ – "ଗୁରୁଦେବ, ଏହା କେବଳ ଆପଣଙ୍କ ପ୍ରତାପରୁ ସମ୍ଭବ ହୋଇଛି ।"

ଶୁକ୍ରାଚାର୍ଯ୍ୟ କହିଲେ "ବତ୍ସ, ମୁଁ ଚାହେଁ—ତୁମେ ସ୍ଥାୟୀ ଭାବରେ ଇନ୍ଦ୍ରପଦ ଅଧିକାର କରି ରୁହ ।"

ବଳିରାଜ ଅତ୍ୟନ୍ତ ବିନୀତ ଭାବରେ ଉତ୍ତର ଦେଲେ—"ଗୁରୁଙ୍କର ଅନୁଗ୍ରହ ଲାଭ କଲେ, କୌଣସି କାର୍ଯ୍ୟ ଅସମ୍ଭବ ହୁଏନାହିଁ । ଆପଣ ସବୁ କିଛି କରିବାରେ ସମର୍ଥ ଅଟନ୍ତି ।"

ଶିଷ୍ୟଙ୍କ ଉତ୍ତରରେ ଆନନ୍ଦିତ ହୋଇ ଶୁକ୍ରାଚାର୍ଯ୍ୟ କହିଲେ—"ଇନ୍ଦ୍ରପଦ ଲାଭ କରିବା ଆଦୌ କଷ୍ଟସାଧ୍ୟ କାର୍ଯ୍ୟ ନୁହେଁ । ଏକଶତ ଅଶ୍ୱମେଧ ଯଜ୍ଞାନୁଷ୍ଠାନ କରିପାରିଲେ ସ୍ଥାୟୀ ଭାବରେ ଗୋଟିଏ ମନ୍ୱନ୍ତର ପାଇଁ ତୁମେ ଇନ୍ଦ୍ରପଦରେ ଅଧିଷ୍ଠିତ ହୋଇ ରହିପାରିବ ।"

ବଳିରାଜ କହିଲେ "ଗୁରୁଦେବ, ଆପଣଙ୍କ ଆଜ୍ଞା ମୋ ପକ୍ଷରେ ଶିରୋଧାର୍ଯ୍ୟ । ଅତଏ ଯାହା ଆଦେଶ ଦେବେ ମୁଁ ତାହା ଅବଶ୍ୟ ପାଳନ କରିବ ।"

ଶୁକ୍ରାଚାର୍ଯ୍ୟ କହିଲେ "ମୋର ଇଚ୍ଛା, ତୁମେ ଆଜିଠାରୁ ଶତ ଅଶ୍ୱମେଧ ଯଜ୍ଞ କରିବାର ଦୀକ୍ଷା ଗ୍ରହଣ କର !"

ଶ୍ରୀ ଶୁକଦେବ ମହାରାଜ ପରୀକ୍ଷିତଙ୍କୁ ବୁଝାଇ କହିଲେ—ହେ ରାଜନ୍, ଗୁରୁଦେବ ଶୁକ୍ରାଚାର୍ଯ୍ୟଙ୍କ ଆଜ୍ଞା ଶୁଣି, ବଳିରାଜ ଅତ୍ୟନ୍ତ ଆନନ୍ଦିତ ହୋଇ ଶତ ଅଶ୍ୱମେଧ ଯଜ୍ଞର ଦୀକ୍ଷା ଗ୍ରହଣ କଲେ । ଶିଷ୍ୟ ବତ୍ସଳ ଶୁକ୍ରାଚାର୍ଯ୍ୟ ସ୍ୱଗୋତ୍ରୀୟ ବ୍ରାହ୍ମଣମାନଙ୍କୁ ଅଣାଇ ବଳିରାଜାଙ୍କ ପାଇଁ ଯଜ୍ଞ ଆରମ୍ଭ କରାଇ ଦେଲେ । ବଳିରାଜ ଅତ୍ୟନ୍ତ ଉଦାର ତଥା ଦାନୀ ଥିଲେ । ସେ ଗୁରୁଙ୍କ ଆଦେଶମତେ ଯଥେଷ୍ଟ ଦ୍ରବ୍ୟ ଦାନ କରି ଅତ୍ୟନ୍ତ ଆଡ଼ମ୍ବର ସହିତ ଯଜ୍ଞାନୁଷ୍ଠାନ ଆରମ୍ଭ କଲେ । ବଳିରାଜାଙ୍କ ଯଜ୍ଞ ସମ୍ବାଦ ଦୂର ଦୂରାନ୍ତରକୁ ବ୍ୟାପିଗଲା । ପ୍ରତିଦିନ ଶତସହସ୍ର ବ୍ରାହ୍ମଣ ଯଜ୍ଞ ସ୍ଥଳକୁ ଆସି ଇଚ୍ଛାନୁସାରେ ଦାନ ଗ୍ରହଣ କରିବା ସଙ୍ଗେ ସଙ୍ଗେ, ଆଶୀର୍ବାଦ ପ୍ରଦାନ କଲେ । ଏହା ଫଳରେ ବଳିରାଜାଙ୍କ କୀର୍ତ୍ତି ତ୍ରିଲୋକରେ ପ୍ରଖ୍ୟାତ ଅର୍ଜନ କଲା ଏବଂ ସେ ଚନ୍ଦ୍ରମା ସଦୃଶ ସୁଶୋଭିତ ହେବାକୁ ଲାଗିଲେ ।

## ଛପ୍‌ପୟ

"ଗୁରୁ ଆୟସୁ ସିର ଧାରି ଅମର ସବ ଛାଁଡ଼ି ସ୍ୱର୍ଗ ସୁଖ ।
କାମରୂପ ଧରି ଫିରୈଂ ଅବନି ପୈ ସହେଂ ବିବିଧ ଦୁଖ ॥
ସୁର ପୁର ସୂନୋ ସମୁଝି ଅସୁର ଅଧିକାର ଜମାୟୌ ।
ବଲି କୂଁ ଶୁକ୍ରାଚାର୍ଯ୍ୟ ଇନ୍ଦ୍ର ପଦ ପୈ ବୈଠାୟୌ ॥
ଅଶ୍ୱମେଧ ଶତ ବଲି କରୈ, ଇନ୍ଦ୍ରାସନ ଧ୍ରୁବ ହୋଇ ତବ ।
ଭୃଗୁବଂଶୀ ଦ୍ୱିଜ ସୋଚ କରି ହିୟ କରଣ୍ୱାବୈଂ ମିଲି ଯଜ୍ଞ ସବ ।"



# ଅଦିତିଙ୍କ ଅନୁଶୋଚନା

ଏବଂ ପୁତ୍ରେଷୁ ନଷ୍ଟେଷୁ ଦେବମାତାଦିତିସ୍ତଦା ।
ହୃତେ ତ୍ରିବିଷ୍ଟପେ ଦୈତ୍ୟୈଃ ପର୍ଯ୍ୟତପ୍ୟଦନାଥବତ୍ ।।"
(ଭା. ୮।୧୬।୧)

## ଛପ୍ପୟ

"ଅମର ଅବନି ପୈ ଫିରେଁ କପଟ ତନୁ ଧରି କେଁ ଇତ ଉତ ।
ଅଦିତି ସୁତନି ଦୁରଦଶା ସମୁଝିଁ ଅତି ଦୁଃଖ ଭୟୌ ଚିତ ।।
ଆୟେ କଶ୍ୟପ ଜବହିଁ ଲଖେ ଘର ଅଧିକ ଉଦାସୀ ।
ପତ୍ନୀ ତନୁ ଅତି ଛୀନ ମଲିନ ଜନୁ ଭୂଖୀ ପ୍ୟାସୀ ।।
ସ୍ନ ପୂଛୀ କୁଶଲାତ ଜବ, ଅଦିତି ଦୁଖିତ ବୋଲୀ ବଚନ ।
ଇନ ଦୈତ୍ୟନି ତବ ଅମର ସୁତ, କରେ ପଦଚ୍ୟୁତ ତପୋଧନ ।"

ଶ୍ରୀ ଶୁକଦେବ କହିଲେ "ହେ ପରୀକ୍ଷିତ ମହାରାଜ, ଅଦିତିଙ୍କ ପୁତ୍ର ଦେବଗଣ ସ୍ୱର୍ଗରାଜ୍ୟରୁ ବିଚ୍ୟୁତ ହୋଇ ଯାଆନ୍ତେ, ସେମାନେ କାମରୂପ ଧାରଣ କରି ଆତ୍ମଗୋପନ କରିବାକୁ ଲାଗିଲେ । ଏହା ଫଳରେ ଦେବମାତା ଅଦିତି ଅନାଥିନୀଙ୍କ ପରି ଅନୁଶୋଚନା କରିବାକୁ ଲାଗିଲେ ।

ଏହି କୌତୁହଳପୂର୍ଣ୍ଣ ସଂସାରରେ ଭଗବାନ୍ ଅତି ଅଦ୍ଭୁତ ଲୀଳା କରିବାକୁ ଭଲ ପାଆନ୍ତି । ପ୍ରାଣୀମାନଙ୍କୁ ଅନେକ ନାଟକ ଏହି ସଂସାର ମଧ୍ୟରେ ଦେଖିବାକୁ ମିଳେ । କିନ୍ତୁ କେଉଁଥିରେ କେଉଁ ମହତ୍ତ୍ୱପୂର୍ଣ୍ଣ ଗୁଣ ଲୁଚି ରହିଛି, ତାହା କେହି ଜାଣିପାରନ୍ତି ନାହିଁ । ବଟ ବୃକ୍ଷର ଗୋଟିଏ ଛୋଟ ଫଳ ମଧ୍ୟରେ ମହାନ୍ ବୃକ୍ଷର ସତ୍ତ୍ୱା ଲୁଚି ରହିଥାଏ, କିନ୍ତୁ ସାଧାରଣ ମନୁଷ୍ୟ ତାହାର ପ୍ରକୃତ ସତ୍ତ୍ୱା ଅନୁଭବ କରିପାରେ ନାହିଁ । କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ, ସେହି କ୍ଷୁଦ୍ର ଫଳ ମଧ୍ୟରେ ମହାନ୍ ବୃକ୍ଷର ସତ୍ତ୍ୱା ଲୁଚି ରହିଥାଏ । ରଜବୀର୍ଯ୍ୟର ସଂଯୋଗ

ଫଳରେ ଗୋଟିଏ ସୁନ୍ଦର ମନୁଷ୍ୟର ସତ୍ତା ଲୁଚି ରହିଥିବାର କଳ୍ପନା ଆଦୌ କରି ହୁଏନାହିଁ । ପ୍ରାଣୀମାନେ ଏହି ରହସ୍ୟ ସମ୍ବନ୍ଧରେ ଅନୁଧ୍ୟାନ କଲେ, ସେମାନେ ବାହାରର କୌତୂହଳପୂର୍ଣ୍ଣ ନାଟକ ଦେଖିବାକୁ କେବେ ହେଲେ ମନ ବଳାଇବେ ନାହିଁ । ସେମାନେ ଘରେ ବସି ଅନେକ ଅଦ୍‌ଭୁତ ଦୃଶ୍ୟ ସମ୍ପର୍କରେ ଧାରଣା କରିପାରିବେ ।

ସଂସାରର ଅନେକ ଅଦ୍‌ଭୁତ ବସ୍ତୁ ମଧ୍ୟରେ ମାତୃହୃଦୟ ହେଉଛି— ସର୍ବାପେକ୍ଷା ଅଧିକ ଅଦ୍‌ଭୁତ । ବିହିବିଧାତା କେଉଁ ଧାତୁରେ ମାତୃହୃଦୟ ନିର୍ମାଣ କରିଥିଲେ, ତାହା କେହି ଜାଣିପାରି ନାହାନ୍ତି କିମ୍ବା ଜାଣିପାରିବେ ନାହିଁ । ରକ୍ତ ମାଂସ ବ୍ୟତୀତ ସେ ହୃଦୟ ମଧ୍ୟରେ କି ମମତା ଭରି ରହିଛି, ତାହା କେବଳ ମାତା ବିନା ଅନ୍ୟ କେହି ଅନୁଭବ କରିପାରିବେ ନାହିଁ । ମାଆ ନିଜେ ଖାଇ କେବେହେଲେ ସନ୍ତୋଷ ପାଇପାରେ ନାହିଁ, କେବଳ ସନ୍ତାନକୁ ଖୁଆଇ ସେ ଶାନ୍ତି ଅନୁଭବ କରେ । ତା' ସନ୍ତାନ ସୁଖୀ ରହୁ—ଏହାହିଁ ମାତୃଜୀବନର ଏକମାତ୍ର ଧ୍ୟେୟ । ଦୁନିଆରେ ଅବଶ୍ୟ କେତେକ ରାକ୍ଷସୀ ମାତା ଅଛନ୍ତି । ସେମାନେ ନିଜ କାମ-ବାସନାର ପରି ତୃପ୍ତି ଲାଗି ଗର୍ଭାଶୟର ଭ୍ରୂଣକୁ ନଷ୍ଟ କରି ଆତ୍ମତୃପ୍ତି ଲାଭ କରନ୍ତି । ସେଭଳି କେତେକ ରାକ୍ଷସୀମାତାଙ୍କୁ ଛାଡ଼ି ଦେଲେ, ପ୍ରକୃତ ମାତା ପଦବାଚ୍ୟ ନାରୀମାନେ ସନ୍ତାନର ସୁଖ ସୁବିଧା ପାଇଁ ବହୁବିଧ ଦୁଃଖ କଷ୍ଟ ସହ୍ୟ କରନ୍ତି । ସେମାନଙ୍କ ଆରୋଗ୍ୟ କାମନା କରି କେତେ ପ୍ରକାର ଭୂତ, ପ୍ରେତ, ଦେବୀ, ଦେବତାଙ୍କ ଆରାଧନା କରନ୍ତି । ଖୋଦ ଉପାସରେ ରହି ଅନେକ ପ୍ରକାର କାୟକ୍ଳେଶ ଅନୁଭବ କରନ୍ତି । କେବଳ ସେତିକ ନୁହେଁ, ନିଜ ସନ୍ତାନର ମଙ୍ଗଳ କାମନା କରି, ଅନ୍ୟ ପ୍ରାଣୀକୁ ଦେବ ଦେବୀଙ୍କ ଆଗରେ ନିର୍ଦ୍ଦୟତାର ସହିତ ବଳି ଅର୍ପଣ କରନ୍ତି । ଅବଶ୍ୟ ସନ୍ତାନ ପ୍ରେମରେ ସେମାନେ କୌଣସିମତେ ଭାବି ପାରନ୍ତି ନାହିଁ ଯେ, ଯେଉଁ ପ୍ରାଣୀକୁ ସେମାନେ ବଳି ବେଦୀରେ ଅର୍ପଣ କରୁଛନ୍ତି, ତା'ର ମାତା ଅଛି ଏବଂ ସନ୍ତାନର ମଙ୍ଗଳ କାମନାରେ ତା'ର ହୃଦୟ ମଧ୍ୟ ଶୋକାକୁଳ ହେଉଛି । ଏ ସମ୍ବନ୍ଧରେ ଗୋଟିଏ ଲୋକ କାହାଣୀର ଉଦାହରଣ ଦିଆଯାଇ ପାରେ—

ଗୋଟିଏ ପାଠଶାଳାରେ ଧନୀ ଓ ଗରିବମାନଙ୍କ ସନ୍ତାନଗଣ ଅଧ୍ୟୟନ କରୁଥିଲେ । ସେଠାରେ ଜଣେ ବିଧବାର ଏକୋଇର ବଳା ବଣିକେଶନ ମଧ୍ୟ ପାଠ ପଢ଼ୁଥିଲା । ଦାରିଦ୍ର୍ୟ ହେତୁରୁ ସେ ସବୁବେଳେ ଚିରା ଫଟା ଓ ମଇଳା ଲୁଗା ପିନ୍ଧି ପାଠଶାଳାକୁ ଆସୁଥିଲା । ଏକେତ ସେ ଗରିବ, ପୁଣି ଅପରିଷ୍କାର ଅପରିଚ୍ଛନ୍ନ ହେଉ-

ଥିବାରୁ ଘାଆ ଘାଉଡ଼ରେ ତା' ଦେହରୁ ଦୁର୍ଗନ୍ଧ ବାହାରୁ ଥାଏ। ତା'ପରେ ପୁଣି ତା' ମୁହଁରେ ବସନ୍ତ ଦାଗଗୁଡ଼ିକ ନିତାନ୍ତ କଦର୍ଯ୍ୟ ଦେଖାଯାଉଥାଏ । ଦିନେ ଅଧ୍ୟାପକ ଦୁଇଟି ଲଡ଼ୁ ନେଇ ସେ ବୁଢ଼ୀଟିକୁ ଦେଇ କହିଲେ - "ଏଇ ପିଲାମାନଙ୍କ ମଧ୍ୟରେ ଯେଉଁ ପିଲାଟି ତୁମକୁ ସୁନ୍ଦର ଦେଖାଯାଉଛି, ତାକୁ ଏ' ମିଠାଇ ଦୁଇଟି ଦେଇଦିଅ।" ବୁଢ଼ୀଟି ନିଜ ପିଲକୁ ଲଡ଼ୁ ଦେଇ କହିଲା -"ମୋ ଆଖିକୁ ମୋ' ପିଲାଟି ସବୁଠାରୁ ସୁନ୍ଦର ଦେଖାଯାଉଛି।" ଏହାହିଁ ହେଉଛି ମାତୃ ହୃଦୟର ମମତା । ସମସ୍ତେ ନିଶ୍ଚିତ ଭାବରେ କୌଣସି ମାତାର ସନ୍ତାନ; କିନ୍ତୁ ପ୍ରତ୍ୟେକ ମାତା ଚାହେଁ, ତା'ର ପିଲାଟି ସୁଖରେ ରହୁ । ନିଜେ ବହୁ ଦୁଃଖ କଷ୍ଟ ଓ କଷ୍ଟ ସହ୍ୟ କରି ମାତା ନିଜ ସନ୍ତାନର ମଙ୍ଗଳ କାମନା କରେ । ମାତାର ପୁତ୍ର ପ୍ରେମ ସମ୍ବନ୍ଧରେ ଗୋଟିଏ ପ୍ରାଚୀନ କାହାଣୀ ରହିଛି । ଥରେ ଗୋଟିଏ ପିଲା ପାଇଁ ଦୁଇଜଣ ସ୍ତ୍ରୀଙ୍କ ମଧ୍ୟରେ କଳହ ସୃଷ୍ଟି ହେଲା । ପୁତ୍ରଟିର ପ୍ରକୃତ ମାତା ହେଉଛି— ଜଣେ ଅନାଥିନୀ ବିଧବା । ଅନ୍ୟ ସ୍ତ୍ରୀ ଲୋକଟି ଧନୀ ଘରର ବୋହୂ। ସେ ସନ୍ତାନହୀନା ଥିବାରୁ, ଅନ୍ୟ ସ୍ତ୍ରୀଲୋକଟିକୁ ହଇରାଣ କରିବା ଲାଗି ଇଚ୍ଛାକରି, ରାଜ ଦରବାରରେ ଅଭିଯୋଗ ଜଣାଇ, ବିଧବାର ପୁଅଟିକୁ ନିଜର ପୁଅ ବୋଲି କହିଲା। ଉଭୟ ପକ୍ଷରୁ ସାକ୍ଷୀମାନେ ମଧ୍ୟ ନିଜ ନିଜ ପକ୍ଷ ସମର୍ଥନ କଲେ। ନିଶ୍ଚୟ କରି ପୁତ୍ରଟି ପ୍ରକୃତରେ ଏହାର ବୋଲି କହିଲେ। ନ୍ୟାୟାଧୀଶ ଶେଷକୁ କିଛି ଉପାୟ ନପାଇ କହିଲେ—"ତୁମ ଦୁହିଁଙ୍କର ସାକ୍ଷୀ ପ୍ରମାଣରୁ ମୁଁ କିଛି ନିଷ୍ପତ୍ତି କରିପାରୁ ନାହିଁ। ତେଣୁ ମୁଁ ପିଲାଟିକୁ ଚିରିରୁ ଦୁଇଖଣ୍ଡ କରିଦେଉଛି। ତୁମେ ଖଣ୍ଡେ ନିଅ, ସେ ଖଣ୍ଡେ ନେଉ। ପ୍ରକୃତରେ ଯେ ସନ୍ତାନର ମାତା ନଥିଲା, ସେ ଖୁସି ମନରେ ରାଜି ହୋଇଗଲା। କିନ୍ତୁ ସନ୍ତାନଟିର ପ୍ରକୃତ ମାତା ଭୋ' ଭୋ' କରି କାନ୍ଦି କାନ୍ଦି କହିଲା— "ହଜୁର, ମୁଁ ମିଛ କହୁଛି ମୋତେ ଦଣ୍ଡ ଦିଅନ୍ତୁ। ପୁଅକୁ ଦୁଇଗଡ଼ କରି କାଟନ୍ତୁ ନାହିଁ। ତା'ର ପୁଅ, ସେ ହିଁ ନେଇ ତାଙ୍କୁ ପ୍ରତିପାଳନ କରୁ।"

ଏତକ ଶୁଣିବା ମାତ୍ରେ ନ୍ୟାୟାଧୀଶ ପ୍ରକୃତ ମାତା କିଏ, ତାହା ବେଶ୍ ବୁଝିପାରି ଅନ୍ୟ ସ୍ତ୍ରୀ ଲୋକଟିକୁ ସମୁଚିତ ଦଣ୍ଡ ଦେଲେ।

ଶ୍ରୀଶୁକଦେବ କହିଲେ "ହେ ରାଜନ", —"ଅସୁରମାନେ ଅମରପୁର ଅଧିକାର କରି ମହା ଆନନ୍ଦରେ ସ୍ୱର୍ଗସୁଖ ଉପଭୋଗ କଲେ ଏବଂ ଦେବତାମାନେ ଏଣେ ତେଣେ ବୁଲି ଆତ୍ମରକ୍ଷା କରିବାକୁ ଲାଗିଲେ। ଏହା ଫଳରେ ଦେବମାତା ଅଦିତିଙ୍କ ପ୍ରାଣରେ ଅଶେଷ ଦୁଃଖ ଜାତ ହେଲା। ସେ ସେହି ଦୁଃଖରେ ଭୋଜନ ଓ ନିଦ୍ରା ପରିତ୍ୟାଗ କରି, ସବୁବେଳେ କାନ୍ଦିବାକୁ ଲାଗିଲେ।

ଅଦିତି ସୁମେରୁ ପର୍ବତର ମନୋରମ ଉପତ୍ୟକାରେ ବାସ କରୁଥିଲେ । ତାଙ୍କ ସ୍ୱାମୀ ମହର୍ଷି କାଶ୍ୟପ ନିବିଡ଼ ଅରଣ୍ୟ ମଧ୍ୟରେ କଠୋର ତପସ୍ୟାରେ ବ୍ରତୀ ଥିଲେ । ତାଙ୍କର ସମାଧି ଭଙ୍ଗ ହେଲେ ସେ ଅଦିତିଙ୍କ ନିକଟକୁ ଆସି ତାଙ୍କ ଭଲ ମନ୍ଦ ବୁଝୁଥିଲେ ।

କଶ୍ୟପ ଦିନେ ଆସି ଆଶ୍ରମରେ ପହଞ୍ଚି ଲକ୍ଷ୍ୟ କଲେ ଯେ, ସେଠାରେ ବିଷାଦର କାଳିମା ଘୋଟି ହୋଇ ଯାଇଛି । ଆନନ୍ଦ ଉତ୍ସବର ନାମ ଗନ୍ଧ ସୁଦ୍ଧା ନାହିଁ । ଅଦିତି ନିତାନ୍ତ ବିଷର୍ଣ୍ଣବଦନା; ମଳିନ ବସନା ତଥା ଅଶ୍ରୁମୁଖୀ ହୋଇଛନ୍ତି । ବହୁଦିନ ପରେ ସ୍ୱାମୀ ଆଶ୍ରମକୁ ଆସିଥିଲେ ହେଁ ପୂର୍ବପରି ଅଦିତି ତାଙ୍କୁ ଭବ୍ୟ ସ୍ୱାଗତ ଜଣାଇଲେ ନାହିଁ । କେବଳ ବହୁ କଷ୍ଟରେ ନିଜର ବସିବା ସ୍ଥାନରୁ ଉଠିପଡ଼ି ପତିଙ୍କୁ ଅଦିତି ସ୍ୱାଗତ ଜଣାଇଲେ । କଶ୍ୟପ ମହର୍ଷି ଆସନ ଗ୍ରହଣ କରନ୍ତେ ଅଦିତି ତାଙ୍କର ପାଖରେ ତଳକୁ ମୁହଁ ପୋତି ବସିପଡ଼ିଲେ । ପତ୍ନୀଙ୍କର ଆଚରଣରେ ଅସ୍ୱାଭାବିକତା ଲକ୍ଷ୍ୟ କରି କଶ୍ୟପ ମହର୍ଷି ସ୍ନେହପୂର୍ଣ୍ଣ ବାଣୀରେ ପ୍ରଶ୍ନକଲେ—"ଅଦିତି, ତୁମର କ'ଣ ହୋଇଛି ? ତୁମର ସବୁ କୁଶଳତ ?"

ଅଦିତି ନିଜ ମନୋଭାବ ଗୋପନ କରି କହିଲେ—"ହଁ ... ମହାରାଜ···।" ଅଦିତିଙ୍କ ମୁଖରୁ ଦ୍ୱିଧାଗ୍ରସ୍ତ ଉତ୍ତର ଶୁଣି ମହାରାଜ କଶ୍ୟପ କହିଲେ—"ପ୍ରିୟେ, ତୁମ ମୁଖମଣ୍ଡଳରୁ ବେଶ ଜଣାପଡ଼ୁଛି ଯେ ତୁମେ ନିତାନ୍ତ ଦୁଃଖରେ କାଳଯାପନ କରୁଛ । ତୁମେ ଆଦୌ ସଙ୍କୋଚ ନ କରି ତୁମ 'ମନୋବେଦନା ମୋ' ଆଗରେ ପ୍ରକାଶ କର । ମୋର ମନେ ହେଉଛି—କୌଣସି ଏକ ଗଭୀର ଦୁଃଖ ତୁମ ପ୍ରାଣରେ ଆଘାତ ଦେଇଛି ! କେଉଁ ଦୁଃଖ ତୁମକୁ ଆଘାତ ଦେଇଛି, ତାହା ବ୍ୟକ୍ତ ନ କଲେ ମୁଁ ଜାଣିବି କିପରି ? ଆଚ୍ଛା, ତୁମ ଆଶ୍ରମରେ କୌଣସି ଅମଙ୍ଗଳ ଘଟି ନାହିଁତ ? କୌଣସି ସ୍ଥାନରେ ଧାର୍ମିକ ପ୍ରାଣୀମାନେ ଅସୁବିଧାରେ ପଡ଼ିନାହାନ୍ତି ତ ? ତୁମେ ଲୋକମାତା, ତେଣୁ ଖୁବ୍ ସମ୍ଭବତଃ କେଉଁ ଲୋକର ଦୁଃଖ ଦେଖି ତୁମେ ବିଚଳିତ ହୋଇ ଉଠୁଚ ?"

"ନାଁ ··ମହାରାଜ, ସେ ସବୁକିଛି ଘଟିନାହିଁ । ଆପଣଙ୍କ ଅନୁଗ୍ରହରୁ ସମସ୍ତ କାର୍ଯ୍ୟ ସୁରୁରୁ ରୂପେ ନିରନ୍ତ୍ରଳିତ ହେଉଛି ।"

"ତା'ହେଲେ ·· କ'ଣ ତୁମ ଗୃହସ୍ଥ ଧର୍ମରେ କିଛି ବ୍ୟାଘାତ ଘଟିଛି ? ତୁମ ଆଶ୍ରମରେ ଧର୍ମ, ଅର୍ଥ ଓ କାମଜନିତ କୌଣସି ତ୍ରୁଟି ନାହିଁତ ?"

ଅଦିତି କହିଲେ—"ନା....ସ୍ୱାମିନ୍" ଆପଣଙ୍କ ତପସ୍ୟାର ପ୍ରଭାବରେ ସେପରି କିଛି ଅସୁବିଧା ଘଟିନାହିଁ ।"

ଅଦିତିଙ୍କ ଉତ୍ତରରେ କଶ୍ୟପଙ୍କ ମନ ବୁଝିଲା ନାହିଁ । ସେ ନିଜ କଥନ ଉପରେ ଗୁରୁତ୍ୱ ଆରୋପ କରି କହିଲେ—"ଅଦିତି, ମୋର ମନେ ହେଉଛି—କୌଣସି ଅତିଥି ଆଶ୍ରମକୁ ଆସି ତୁମ ଅଜ୍ଞାତ ସାରରେ ନିରାଶ ହୋଇ ଫେରିଯାଇ ଥିବାରୁ, ତୁମ ମନରେ ଗଭୀର ଦୁଃଖ ଜାତ ହୋଇଛି । ହୁଏତ ସେୟା ହୋଇପାରେ—ତୁମ ଗୃହକର୍ମରେ ବ୍ୟସ୍ତ ଥିଲ, ସେତିକବେଳେ କୌଣସି ଅତିଥି ଆସି ଉଚିତ ସତ୍କାର ନ ପାଇ, ଆଶ୍ରମରୁ ଫେରି ଯାଇଛି । ଯଦି ଏହା ହୋଇଥାଏ, ତା'ହେଲେ ତାହା ଅତ୍ୟନ୍ତ ଗର୍ହିତ କାର୍ଯ୍ୟ । କିନ୍ତୁ ତୁମ ଦ୍ୱାରା ଏପରି କଦର୍ଯ୍ୟ କାର୍ଯ୍ୟ ହୋଇଥିବ ବୋଲି ମୋର ଧାରଣା ହେଉନାହିଁ ।"

ଅଦିତି ସ୍ୱାମୀଙ୍କ ମନର ଆଶଙ୍କାରେ ଚମକି ପଡି କହିଲେ—"ମହାରାଜ, ଯାହାର ସ୍ୱାମୀ ଆପଣଙ୍କ ପରି ତ୍ରିଲୋକ ବିଖ୍ୟାତ ତପସ୍ୱୀ, ସେ କେବେହେଲେ ଏପରି ଅକ୍ଷମ ଅପରାଧ କରିନପାରେ !"

ମହର୍ଷି କଶ୍ୟପ କହିଲେ "ତା'ହେଲେ....?"—ହୁଏତ ତୁମ ମନ ଦୁଃଖର ଆଉ କ'ଣ କାରଣ ହୋଇପାରେ ! ତୁମେ ମୋ ଚିନ୍ତାରେ ଉଦ୍‌ବିଗ୍ନ ହୋଇ ହୋମ କରିବାରୁ ବଞ୍ଚିତ ହୋଇଛ କି ? କାରଣ ଅଗ୍ନି ହେଉଛି—ବିଷ୍ଣୁଙ୍କର ମୁଖ । ଅଗ୍ନିରେ ଆହୁତି ନ ଦେଇ ହୁଏତ ତୁମେ ମହାନ୍ ଅପରାଧ ଅର୍ଜନ କରିଛ !"

"ନା···ପ୍ରଭୋ, ମୁଁ ସେ ଧରଣର କୌଣସି ଅପରାଧ କରିନାହିଁ । ଆପଣଙ୍କ ଅନୁପସ୍ଥିତି ସମୟରେ ମୁଁ ନିତ୍ୟ ନୈମିତ୍ତିକ ହୋମ କରି ଅଗ୍ନିଦେବଙ୍କୁ ସନ୍ତୁଷ୍ଟ କରିଛି ।"

"ତା'ହେଲେ···, ମୁଁ ତ ଆଉ କୌଣସି କାରଣ ଜାଣିପାରୁ ନାହିଁ । ତୁମ ମନ ଦୁଃଖର କାରଣ ତୁମେ ନିଜେ ହିଁ ପ୍ରକାଶ କର ! ମୋ ମନରେ ଯେତେ ପ୍ରକାର ଆଶଙ୍କା ଜାତ ହୋଇଥିଲା ମୁଁ ସବୁତକ ତୁମ ଆଗରେ ପ୍ରକାଶ କରିଦେଲି । ଆଚ୍ଛା, ହଁ···ତୁମର ପୁତ୍ର ଦ୍ୱାଦଶ ଆଦିତ୍ୟ ସୁଖରେ ଅଛନ୍ତି ତ' ?

ଏହା ଶୁଣିବା ମାତ୍ରେ ଦେବମାତା ଅଦିତି ଆଉ କିଛି ଉତ୍ତର ନ ଦେଇ ନୀରବରେ ତଳକୁ ମୁହଁ ପୋତି ବସି ରହିଲେ । ତାଙ୍କ ଆଖିରୁ ଝର ଝର ହୋଇ ଅଶ୍ରୁ ଧାର ଝରିପଡ଼ିଲା । ସେ ନଖ ଦ୍ୱାରା ଭୂମିରେ ଗାର କାଟି ନିଜ ମନୋବେଦନା ବ୍ୟକ୍ତ କରିବାକୁ ଲାଗିଲେ ।

ଶ୍ରୀ ଶୁକଦେବ କହିଲେ "ହେ ରାଜନ୍,—କଶ୍ୟପ ମହର୍ଷି ବିଭିନ୍ନ ପ୍ରକାର ସନ୍ଦେହ ଉପସ୍ଥାପନ କରିବା ସମୟରେ ଅଦିତି ପ୍ରତ୍ୟେକ ସନ୍ଦେହକୁ ମୋଚନ କରି

ସଙ୍ଗେ ସଙ୍ଗେ ଉତ୍ତର ଦେଉଥିଲେ । କିନ୍ତୁ ପୁତ୍ରମାନଙ୍କ ସମ୍ବନ୍ଧରେ ପ୍ରଶ୍ନ ଶୁଣି, ସେ ଆଉ ଧୈର୍ଯ୍ୟ ଧାରଣ କରିପାରିଲେ ନାହିଁ । ସେ ମନକୁ ଦୃଢ଼ କରି ସ୍ୱାମୀଙ୍କ ଆଗରେ ନିଜ ମନୋବେଦନା ପ୍ରକାଶ କରିବା ପାଇଁ ପ୍ରସ୍ତୁତ ହୋଇଗଲେ ।

## ଛପ୍ପୟ

'ମମ ସୁତ ଯଶ ଐଶ୍ୱର୍ଯ୍ୟହୀନ ଅସୁରନି ନେ କୀନ୍ହେ ।
ଦୁଷ୍ଟ ଦୈତ୍ୟ ମିଲି ଦୁସହ ଦୁଃଖ ଦେବନିକୂଁ ଦୀନ୍ହେ ॥
ସୁରପୁର କୂଁ ସୁର ତ୍ୟାଗି ଫିରେ ସବ ମାରେ ମାରେ ।
ସାଧାରନ ଜନ ସରିସ ଭୂମି ପେ ରହେ ବଚାରେ ॥
ସବ ସମର୍ଥ ସର୍ବଜ୍ଞ ପ୍ରଭୁ, ଆପ ପ୍ରଜାପତି ମହାମୁନି ।
ନାଥ କୃପା ଐସୀ କରୈଂ ପାର୍ୱେ ସୁତ ଐଶ୍ୱର୍ଯ୍ୟ ପୁନି' ॥



## କଶ୍ୟପଙ୍କ ଉପଦେଶ

"ଉପତିଷ୍ଠସ୍ୱ ପୁରୁଷଂ ଭଗବନ୍ତଂ ଜନାର୍ଦ୍ଦନମ୍ ।
ସର୍ବ ଭୂତ ଗୁହାବାସଂ ବାସୁଦେବଂ ଜଗଦ୍ ଗୁରୁମ୍ ॥
ସ ବିଧାସ୍ୟତି ତେ କାମାନ୍ ହରିର୍ଦୀନାନୁକମ୍ପନଃ ।
ଅମୋଘା ଭଗବଦ୍ ଭକ୍ତି ର୍ନେତରେତି ମତିର୍ମମ ॥"

(ଭା: ୮ । ୧୬ । ୨୦, ୨୧)

### ଛପ୍‌ପୟ

"ପ୍ରିୟା ବଚନ ସୁନି ଭୟେ ଚକିତ କଶ୍ୟପ ମୁନି ଜ୍ଞାନୀ ।
ପୁତ୍ର ଶୋକ ତେଂ ଦୁଖିତ ଅଦିତି କୀ ପୀଡ଼ା ଜାନୀ ॥
ଯୋଚେଂ ମାୟା ପ୍ରବଲ ବିଷ୍ଣୁ କୀ ବିଶ୍ୱ ନଚାୱତ ।
ମିଥ୍ୟା ମତ ଥିର ଧାରି ନାରି ପତି ପୁତ୍ର ବତାୱତ ॥
ଯୋଚ ସମୁଝି ବୋଲେ ବଚନ, କୃଷ୍ଣ କୃପା ସବ୍ କରିଂଗେ ।
ସେବା ତେଂ ସନ୍ତୁଷ୍ଟ ହ୍ୱୈ, ହରି ହିୟ ଗତ ଦୁଃଖ ହରିଂ ଗେ ॥"

ଅର୍ଥାତ୍—ନିଜ ପତ୍ନୀ ଅଦିତିଙ୍କୁ ଉପଦେଶ ଦେଇ ମହର୍ଷି କଶ୍ୟପ କହିଲେ—"ପ୍ରିୟେ, ଯେଉଁ ପ୍ରଭୁ ସର୍ବଭୂତରେ ବିରାଜମାନ କରିଛନ୍ତି, ତୁମେ ସେହି ଜଗଦ୍‌ଗୁରୁ ଜନାର୍ଦ୍ଦନଙ୍କୁ ଉପାସନା କର । ସେ ଦୀନବତ୍ସଳ, ତେଣୁ ତୁମ ଅନ୍ତରର ଦୁଃଖ ସେ ଦୂର କରିବେ । କେବଳ ଭଗବଦ୍ ଭକ୍ତିହିଁ ଏକମାତ୍ର ଅମୋଘ ଶକ୍ତି । ତଦ୍‌ବ୍ୟତୀତ ଆଉ କିଛିହେଲେ ଏ ସଂସାରରେ ନାହିଁ, ଏହା ମୋର ଦୃଢ଼ ଧାରଣା ।"

ଭଗବାନଙ୍କ ମୋହିନୀ ମାୟାରେ ସମ୍ମୋହିତ ହୋଇ ବହୁ ଜ୍ଞାନୀ, ଧ୍ୟାନୀ ଓ ଯୋଗୀମାନେ ନିଜ ଜୀବନର କର୍ତ୍ତବ୍ୟକୁ ଭୁଲିଯାଆନ୍ତି । ଶ୍ରୀହରିଙ୍କୁ ପାଇବା ପାଇଁ ମନରେ ଧାରଣା ଜାତ ହୋଇପାରିଲେ, ଜୀବନର ଶ୍ରେଷ୍ଠ କାର୍ଯ୍ୟ ସାଧିତ ହୋଇ-

ପାରିବ । ଯଦି ସେ ପ୍ରକାର ଧାରଣା ମନରେ ଜାତ ହୋଇ ନ ପାରେ ତେବେ ସାଂସାରିକ ଦୁଃଖ କଷ୍ଟରୁ ଉଦ୍ଧାର ପାଇବା ପାଇଁ, ଅନ୍ୟ କାହାର ପାଖରେ ହାତ ପାତିବା ଅପେକ୍ଷା ପରମେଶ୍ୱରଙ୍କ ଶରଣ ପଶିବା ଏକମାତ୍ର ଚିନ୍ତା ହେବା ଉଚିତ। ଯେଉଁମାନେ ଭଗବତ୍ ଶରଣ ପଶି ସମସ୍ତ କାର୍ମ୍ମ ସେହି ବିଷ୍ଣୁଙ୍କ ଚରଣାରବିନ୍ଦରେ ଅର୍ପଣ କରିଦିଅନ୍ତି, ସେମାନେ ସାଧାରଣ ମନୁଷ୍ୟ ମାନଙ୍କଠାରୁ ଢେ଼ର ଉନ୍ନତ ।

ଶ୍ରୀ ଶୁକଦେବ କହିଲେ ହେ ରାଜନ୍—ପତିଙ୍କଠାରୁ ଆଶ୍ୱାସନା ପାଇ ଅଦିତି କହିଲେ--"ହେ ଭଗବାନ, ଆଶ୍ରମର ନିୟମ ଉଲ୍ଲଂଘନ କରିନାହିଁ । ଯଥାଶକ୍ତି ଧର୍ମର ପ୍ରତିପାଳନ କରି ଅତିଥି, ଅଗ୍ନି, ଦେବତା ତଥା ପୂଜ୍ୟ ଲୋକ-ମାନଙ୍କୁ ମୁଁ ଯଥାଯୋଗ୍ୟ ପୂଜା କରିଛି । ଆପଣଙ୍କ ପରି ପ୍ରଜାପତି ମୋତେ ସର୍ବଦା ଧର୍ମୋପଦେଶ ଦେଉଛନ୍ତି । ତେଣୁ ମୋର କେଉଁ ମନସ୍କାମନା ଅପୂର୍ଣ୍ଣ ରହିବ ? ମୁଁ କେବଳ ମୋ ପୁତ୍ରମାନଙ୍କ ଦୁଃଖରେ ଅଧୀର ହୋଇ ଉଠିଛି ।"

ମହର୍ଷି କଶ୍ୟପ କହିଲେ—"ଦେବି ! ତୁମ ପୁତ୍ରମାନଙ୍କ ଉପରେ କି ପ୍ରକାର ବିପତ୍ତି ପଡ଼ିଛି ?"

ଅଦିତି କହିଲେ—"ମହାରାଜ, ଆପଣ ସର୍ବଦା ସମାଧିରେ ଲୀନ ରହୁଛନ୍ତି । ତେଣୁ ସଂସାରର କୌଣସି ଘଟଣାପ୍ରତି ଆପଣଙ୍କର ଅଭିରୁଚି ରହୁନାହିଁ । ତେବେ ଶୁଣନ୍ତୁ ମୋ' ଦୁଃଖର କାହାଣୀ । ଦିତିଙ୍କ ପୁତ୍ରମାନେ ମୋ' ପୁତ୍ରମାନଙ୍କୁ ସ୍ୱର୍ଗରୁ ବାହାର କରିଦେଇଛନ୍ତି । ଅସୁରଗଣ ବର୍ତ୍ତମାନ ସ୍ୱର୍ଗ ସୁଖ ଭୋଗ କରୁଛନ୍ତି । କିନ୍ତୁ ମୋ ପୁତ୍ରମାନେ ଛଦ୍ମବେଶରେ ଏଣେତେଣେ ବୁଲି କାଳଯାପନ କରୁଛନ୍ତି ।"

କଶ୍ୟପ ଅତ୍ୟନ୍ତ ସରଳ ଭାବରେ କହିଲେ—"ହଁ, ସେଥିରେ କ୍ଷତି କ'ଣ ? ସ୍ୱର୍ଗରେ ରହିବା ଓ ଅନ୍ୟତ୍ର ରହିବା ମଧ୍ୟରେ ପାର୍ଥକ୍ୟ କ'ଣ ? ଯେଉଁଠାରେ ରହିଲେ ମଧ୍ୟ ସୁଖ ଦୁଃଖ ଭୋଗ କରିବାକୁ ହେବ । ତା' ବ୍ୟତୀତ ଦୈତ୍ୟମାନେ ମଧ୍ୟ ଆମରି ସନ୍ତାନ । ଭାଇମାନଙ୍କ ମଧ୍ୟରୁ କେହି ହେଲେ ସୁଖ ଭୋଗ କରୁଛନ୍ତି ତ ! ଏଥିରେ ଦୁଃଖ କରିବାର କ'ଣ ଅଛି ?"

ଅଦିତି ଅତ୍ୟନ୍ତ କାତର ସ୍ୱରରେ କହିଲେ—"ମହାରାଜ, ଆପଣଙ୍କ ପାଇଁ କୌଣସି ବିଷୟ ଦୁଃଖର କାରଣ ନୁହେଁ । ସତ୍ତ୍ୱ, ରଜ ତଥା ତମୋଗୁଣରେ ଯୁକ୍ତ ସମଗ୍ର ସୃଷ୍ଟି ଆପଣଙ୍କଠାରୁ ଜାତ ହୋଇଛି । ଆପଣଙ୍କ ପାଇଁ କେହି ପର ବା ଆପଣାର ନୁହଁନ୍ତି । କିନ୍ତୁ ମୁଁ ଗୋଟିଏ ସାମାନ୍ୟ ନାରୀ । ମୋଠି ଏତେ ପ୍ରଶସ୍ତ ବୁଦ୍ଧି ଆସିବ କୁଆଡ଼ୁ ? ମୁଁ ପର ଆପଣା ଭେଦ ବୁଦ୍ଧି ନେଇ ଜନ୍ମ ଗ୍ରହଣ କରିଛି ।

ଜଳଛନ୍ଦ ପାଖରେ କ୍ଷଣକପାଇଁ ଏକତ୍ରିତ ହୁଅନ୍ତି ଏବଂ ଜଳସ୍ରୋତ ଛାଡ଼ିଗଲେ ପୁଣି ସେମାନେ ଯେ ଯାହାର ମାର୍ଗରେ ଆଗେଇ ଯାଆନ୍ତି । ଏହି ଅନନ୍ତ ଚକ୍ର ମଧ୍ୟରେ କେତେଥର ପତ୍ନୀ ମାତା ହୋଇଥିବେ ଏବଂ ମାତା ପୁଣି ଭଉଣୀ, ପୁତ୍ର, ସ୍ୱାମୀ ଓ ଭାଇ ହୋଇଥିବେ । ଏ ପ୍ରବାହ ଅନାଦି କାଳରୁ ଗଡ଼ିଆସୁଛି ଏବଂ ଅନନ୍ତ କାଳ ପର୍ଯ୍ୟନ୍ତ ଗଡ଼ି ଚାଲିଥିବ । ପ୍ରତ୍ୟେକ ପ୍ରତ୍ୟେକର କିଛିନା କିଛି ସମ୍ବନ୍ଧରେ ଆବଦ୍ଧ ହୋଇଥିବେ । ପ୍ରକୃତରେ ଦେଖିବାକୁ ଗଲେ, କାହାର ସହିତ କାହାର ସମ୍ବନ୍ଧ ନାହିଁ ।"

କଶ୍ୟପଙ୍କୁ ଚିନ୍ତାମଗ୍ନ ହୋଇପଡ଼ିଥିବାର ଲକ୍ଷ୍ୟ କରି ଦେବୀ ଅଦିତି କହିଲେ—"ଦେବ, ଆପଣ କ'ଣ ବିଚାର କଲେ ? ମୋ' ପୁତ୍ରମାନେ କ'ଣ ସବୁଦିନେ ଏହିପରି ଭାବରେ ଆଶ୍ରୟହୀନ ହୋଇ ବୁଲୁଥିବେ ?"

ପ୍ରିୟାଙ୍କ କାତରତା ଲକ୍ଷ୍ୟକରି ମହର୍ଷି କଶ୍ୟପ କହିଲେ—"ଦେବି ! ତୁମେ ସାଧାରଣ ନାରୀ ନୁହଁ । ତୁମେ ପରମ ବିଦୁଷୀ ହୋଇ ଏ' ପ୍ରକାର ଅଧୀର କାହିଁକି ହେଉଛ ? ଏ' ସଂସାରରେ କିଏ କାହାର ପୁତ୍ର, କିଏ କାହାର ମାତା ? ଏହା କେବଳ ମୋହ ଓ ମାୟା ! ତୁମେ ମନରୁ ମାୟା ଦୂର କରି ଶ୍ରୀହରିଙ୍କ ନାମ ଭଜନ କର । ଦୀନନାଥ କୃପାସାଗର ସମସ୍ତଙ୍କର ମଙ୍ଗଳ କରିବେ ।"

ଅଦିତି ଅତ୍ୟନ୍ତ ଦୁଃଖିତ ହୋଇ କହିଲେ—"ପ୍ରଭୋ, ମୁଁ ବର୍ତ୍ତମାନ କିଛି ଚିନ୍ତା କରିପାରୁ ନାହିଁ । ମୋ' ମନକୁ କାମନା ଓ ମମତା ଆବୋରି ବସିଛି । ମୁଁ ନିଜକୁ ହରାଇ ସେହି କାମନାର ଅଧୀନା ହୋଇଯାଇଛି ।"

ମହର୍ଷି କଶ୍ୟପ କହିଲେ—ଦେବି ! "ଶ୍ରୀହରି ହେଉଛନ୍ତି—ବାଞ୍ଛା କଳ୍ପତରୁ । ତାଙ୍କର ଶ୍ରୀଚରଣ ସେବାରେ ମନୁଷ୍ୟର କୌଣସି କାମନା ପୂରଣ ନ ହୋଇ ରହିପାରେ ନାହିଁ । ଅନ୍ୟ ଦେବାଦେବୀଙ୍କ ଆରାଧନାର ଫଳ ଅନ୍ୟ କିଛି ହୋଇପାରେ, କିନ୍ତୁ ଶ୍ରୀହରିଙ୍କୁ ଭଜି କଲେ ପ୍ରାଣୀର ସମସ୍ତ କାମନା ସିଦ୍ଧ ହୁଏ । ତୁମେ ତାଙ୍କର ଶରଣ ପଶ, ତୁମର ମନୋବାଞ୍ଛା ଅଚିରେ ପୂରଣ ହେବ ।"

"ପ୍ରଭୋ' ଆପଣ ମୋତେ ଶ୍ରୀହରିଙ୍କ ଆରାଧନାର ମାର୍ଗ ବତାଇ ଦିଅନ୍ତୁ । ସେହି ଅନୁସାରେ ମୁଁ ଆରାଧନାରେ ବ୍ରତଚାରିଣୀ ହୋଇ ମୋ' ଅଭୀଷ୍ଟ ସିଦ୍ଧ କରିବି ।"

ଅଦିତିଙ୍କ ବଚନ ଶୁଣି କଶ୍ୟପ ମହର୍ଷି କହିଲେ—"ଯେକୌଣସି ଭାବରେ ଶ୍ରୀହରିଙ୍କ ଆରାଧନା କଲେ, ଅଭୀଷ୍ଟ ସିଦ୍ଧି ହୋଇଥାଏ । ତଥାପି ତୁମେ 'ପୟୋବ୍ରତ' ଆଚରଣ କର, ତୁମର କାମନା ପୂର୍ଣ୍ଣ ହେବ । ଶ୍ରୀହରି ସ୍ୱୟଂ ତୁମ ଆଗରେ ଉପସ୍ଥିତ ହୋଇ ତୁମକୁ ବରଦାନ କରିବେ ।"

ଅଦିତି କହିଲେ—"ହେ କୃପାସାଗର" ଆପଣ ମୋତେ 'ପୟୋବ୍ରତର' ବିଧିବିଧାନ ବତାଇ ଦିଅନ୍ତୁ । ସେହି ଅନୁସାରେ ମୁଁ ବ୍ରତ ପାଳନକରି ଶୀଘ୍ର ଦୁଃଖସାଗରରୁ ଉଦ୍ଧାର ପାଇବି ।"

ମହର୍ଷି କଶ୍ୟପ କହିଲେ—"ପ୍ରିୟେ", କୌଣସି ଭଲ କାର୍ଯ୍ୟ ଲାଗି ମନରେ କାମନା ଜାତ ହେବା ଅତ୍ୟନ୍ତ ଶୁଭ ଲକ୍ଷଣ । ସେହି କାମନାର ପରିପୂରଣ ଲାଗି ଶ୍ରୀହରିଙ୍କୁ ପ୍ରାର୍ଥନା କରିବା ଉଚିତ । ପୂର୍ବକାଳରେ ପ୍ରଜାପତି ଆସନରେ ଅଧିଷ୍ଠିତ ହେବାପାଇଁ ମୋ' ମନରେ ଯେଉଁ କାମନା ଜାତ ହୋଇଥିଲା, ମୁଁ 'ପୟୋବ୍ରତ' ଆଚରଣକରି ସେହି ପଦରେ ପ୍ରତିଷ୍ଠିତ ହୋଇପାରିଛି । ସେତେବେଳେ ଭଗବାନ୍ ବ୍ରହ୍ମା ମୋତେ 'ପୟୋବ୍ରତ' ପାଳନ କରିବା ଲାଗି ପ୍ରେରଣା ଦେଇଥିଲେ । ସେହି ବ୍ରତ ପାଳନରେ ମୋର ମନୋବାଞ୍ଛା ପୂରଣ ହୋଇଛି ।

ତାହା ଶୁଣି ଅତ୍ୟନ୍ତ ଆନନ୍ଦିତ ହୋଇ ମନରେ ଅଦିତି କହିଲେ—"ପ୍ରଭୋ, ଆପଣ ମୋତେ ସେହି ବ୍ରତର ବିଧାନ କହନ୍ତୁ । ମୁଁ ତାହା ନିଷ୍ଠାସ୍ତ ପାଳନ କରିବି !"

ଶ୍ରୀ ଶୁକଦେବ କହିଲେ ହେ ପରୀକ୍ଷିତ ଅଦିତିଙ୍କ ମନର ଉତ୍ସୁକତା ଲକ୍ଷ୍ୟ କରି କଶ୍ୟପ ମହର୍ଷି ତାଙ୍କୁ ପୟୋବ୍ରତର ବିଧିବିଧାନ ସମ୍ପର୍କରେ ଉପଦେଶ ଦେଲେ ।

## ଛପ୍ପୟ

"ଅଦିତି କହେ ହେ ଦେବ ! କୃପା କରି କଷ୍ଟ ମିଟାଓ ।
ବ୍ରତ ମନ ଇଚ୍ଛା ପୂର୍ଣ୍ଣ କରନ ହିତ ତୁରତ ବତାଓ ।।
କଶ୍ୟପ ବୋଲେ—କରୋ ପୟୋବ୍ରତ ପ୍ରଭୁ ଆରାଧୌ ।
ହରି କୁଁ ହିୟ ମହଁ ଧାରି ନିୟମ ବ୍ରତ କେ ସବ ସାଧୌ ।
ଅତି ଉତ୍କଣ୍ଠିତ ଅଦିତି ହ୍ୱୈ ବୋଲୀ—ନାଥ ! ବତାଇ ଦୈ ।
କହା କରୁଁ ତ୍ୟାଗୁଁ କହା, ବିଧିବିଧାନ ସମୁଝାଇ ଦୈ ।।"



# ପୟୋବ୍ରତ ବିଧି

ଫାଲ୍‌ଗୁନ ଶ୍ୟାମଲେ ପକ୍ଷେ ଦ୍ୱାଦଶାହଂପୟୋବ୍ରତଃ ।
ଅର୍ଚ୍ଚୟେ ଦରବନ୍ଦାକ୍ଷଂ ଭକ୍ତ୍ୟା ପରମୟା ନୃତଃ ॥

## ଛପ୍‌ପୟ

ବୋଲେ କଶ୍ୟପ ହେ ଜୀଓ୍ୱନ ଜା ଜଗ ମହଁ ଛନକୋ ।
ହର ଆରାଧନ କରୋ ପୟୋବ୍ରତ ବାରହ ଦନ କୋ ॥
କେବଲ ପୀକେ ଦୁଧ କରୋ ପୂଜନ ଆରାଧନ ।
ଇଚ୍ଛା ପୂରନ ହେତୁ ୟହୀ ସର୍ବୋତ୍ତମ ସାଧନ ॥
ବର୍ଡ଼ ଶାଠ୍ୟ କୁଁ ତ୍ୟାଗୀ କେ, ବ୍ରତ ଶ୍ରଦ୍ଧା ତେ ଜେ କରହୁଁ
ସିଦ୍ଧ କରେଂ ହରି କାଜ ସବ, ଅବସି ଦୁଃଖ ଦାରଦ ହରହୁଁ ।

ଅର୍ଥାତ୍ କଶ୍ୟପ ମହର୍ଷି ନିଜ ପତ୍ନୀ ଅଦିତିଙ୍କୁ ଉପଦେଶ ଦେଇ କହିଲେ— ହେ ପ୍ରିୟେ, "ଫାଲଗୁନ ଶୁକ୍ଳ ପ୍ରତିପଦା ଦିନରୁ ଆରମ୍ଭ କରି ବାରଦିନ ପର୍ଯ୍ୟନ୍ତ ଅତ୍ୟନ୍ତ ଭକ୍ତିଭାବନାର ସହିତ କୋମଳନୟନ ଶ୍ରୀହରିଙ୍କ ଆରାଧନାକୁ ପୟୋବ୍ରତ କୁହାଯାଏ ।"

ବିଧିବିଧାନର ସହିତ ଯେ କୌଣସି ବ୍ରତ ପାଳନ କଲେ ତାହା ମନସ୍କାମନା ପୂରଣ କରିଥାଏ; କିନ୍ତୁ ବିଧିହୀନ ହେଲେ ବ୍ରତପାଳନର କୌଣସି ମୂଲ୍ୟ ରହେ ନାହିଁ । ଅଟା, ଘିଅ, ଚିନି ସବୁ ଥିଲେ ମଧ୍ୟ ଯଦି ଯଥାବିଧିରେ ପ୍ରସ୍ତୁତ ନ ହୁଏ, ସେଥିରୁ ମିଠାଇ ନ ହୋଇ ଆଉ କିଛି ହୋଇଯିବ ଏବଂ ତାକୁ ଖାଇଲେ ଶରୀର ପୁଷ୍ଟ ହେବ ନାହିଁ, ମନରେ ତୃପ୍ତି ଆସିବ ନାହିଁ କିମ୍ବା କ୍ଷୁଧା-ନିବାରଣ ହେବ ନାହିଁ ।

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ଦେବଜନନୀ ଅଦିତି ପୟୋ- ବ୍ରତର ବିଧିବିଧାନ ସମ୍ପର୍କରେ ଜାଣିବାକୁ ଆଗ୍ରହ ପ୍ରକାଶ କରନ୍ତେ, ଶ୍ରୀ କଶ୍ୟପ

ମହର୍ଷି କହିଲେ—ପ୍ରିୟେ, ମୁଁ ତୁମକୁ ପୟୋବ୍ରତର ବିଧାନ କହୁଛି, ତୁମେ ତାହା ମନଦେଇ ଶୁଣ । ଫାଲଗୁନ ଶୁକ୍ଳ ପ୍ରତିପଦଠାରୁ ଆରମ୍ଭ କରି ଦ୍ୱାଦଶ ଦିନ ପର୍ଯ୍ୟନ୍ତ କେବଳ କ୍ଷୀରପାନ କରି ଶ୍ରୀହରିଙ୍କ ଉପାସନା କରିବ । ଖାଦ୍ୟ ବା ପେୟରୂପେ ଅନ୍ୟ କୌଣସି ଦ୍ରବ୍ୟ ଗ୍ରହଣ କରିବ ନାହିଁ ।"

ତାହାଶୁଣି ଅଦିତି କହିଲେ—"ମହାରାଜ ଆପଣ ଅମାବାସ୍ୟାଠାରୁ ଆରମ୍ଭ କରି ପୟୋବ୍ରତ ଦିନ କୃତ୍ୟ ଅର୍ଥାତ୍ କେଉଁଦିନ କିପରି ବ୍ରତପାଳନ କରାଯିବ ସେ ସମ୍ବନ୍ଧରେ ଗୋଟି ଗୋଟି କରି ବିଧିବିଧାନ ମୋ ଆଗରେ ବର୍ଣ୍ଣନା କରନ୍ତୁ ।"

ପତ୍ନୀଙ୍କ ଅନୁରୋଧରେ ମହର୍ଷି କଶ୍ୟପ କହିଲେ—"ଅମାବାସ୍ୟାଦିନ ପ୍ରାତଃକାଳରୁ ଉଠି ଘୁଷୁରି ଖୋଳିଥିବା ମାଟି କିମ୍ବା ଗଙ୍ଗାମାଟି ଅଥବା ତୁଳସୀ ମୂଳ, ଗୋଶାଳା, ତୀର୍ଥସ୍ଥାନ, ବ୍ରାହ୍ମଣ ଓ ଗୁରୁଙ୍କ ପାଦତଳ ମାଟି ଆଣି ଶରୀରରେ ଲେପନ କରି ସ୍ନାନ କରିବ । ମୃତ୍ତିକା ଲେପନ ସମୟରେ ଏହି ମନ୍ତ୍ରଟି ଶ୍ରଦ୍ଧାର ସହିତ ପାଠ କରିବ—

"ତ୍ୱଂ ଦେବ୍ୟାଦି ବରାହେଣ ରସାୟାଃ ସ୍ଥାନ ମିଚ୍ଛତା
ଉଦ୍ଧୃତାସି ନମସ୍ତୁଭ୍ୟ ପାପ୍ମାନଂ ମେ ପ୍ରଣାଶୟ ।"

ଅର୍ଥାତ୍—ହେ ଦେବି ଧରଣି ! ସମସ୍ତ ପ୍ରାଣୀଙ୍କ ନିବାସ ଲାଗି ଆଦି ବରାହ ଶ୍ରୀ ଭଗବାନ୍ ତୁମକୁ ରସାତଳରୁ ଉଦ୍ଧାର କରିଛନ୍ତି । ମୁଁ ତୁମକୁ ପ୍ରାର୍ଥନା କରୁଛି ତୁମେ ମୋର ପାପ ଦୂର କର ।

"ଏହି ମନ୍ତ୍ର ପାଠ କରି ସ୍ନାନ କରିବା ପରେ ନିତ୍ୟକର୍ମ ନିତ୍ୟ ପୂଜନ କରିବ । ତତ୍ପରେ ଶ୍ରଦ୍ଧାର ସହିତ ଶ୍ରୀହରିଙ୍କୁ ପୂଜା କରିବ ।"

ଏହା ଶୁଣି ଅଦିତି କହିଲେ—"ପରମାତ୍ମା ସର୍ବବ୍ୟାପି, ତାଙ୍କୁ କେଉଁପରି ଭାବରେ ଆରାଧନା କରିବ ?"

କଶ୍ୟପ ମହାମୁନି ଏହା ଶୁଣି କହିଲେ—"ନିଜର ଇଚ୍ଛା, ଶ୍ରଦ୍ଧା ଓ ଭାବନା ଉପରେ ପରମେଶ୍ୱରଙ୍କ ଆରାଧନା ନିର୍ଭର କରେ । ପ୍ରକୃତ ବିଗ୍ରହ, ସ୍ୱତନ୍ତ୍ର ମୂର୍ତ୍ତି, ସୂର୍ଯ୍ୟଙ୍କ ବିଗ୍ରହରେ ବିଷ୍ଣୁଙ୍କୁ ଆରାଧନା କରାଯାଇପାରେ ! ଜଳରେ, ଅଗ୍ନିକୁଣ୍ଡ ଅଥବା ନିଜ ଗୁରୁଦେବଙ୍କୁ ବିଷ୍ଣୁ ବୋଲି ଜ୍ଞାନ କରି ପୂଜା କରିବା ସମୁଚିତ ହେବ । ପ୍ରଥମେ ଶାସ୍ତ୍ରୀୟ ମନ୍ତ୍ରପାଠ କରି ବିଷ୍ଣୁଙ୍କୁ ଆବାହନ କରିବ ଏବଂ ତତ୍ପରେ ପାଦ୍ୟ,

ଅର୍ଘ୍ୟ, ଗନ୍ଧ ପୁଷ୍ପ ଧୂପ, ଦୀପ, ନୈବେଦ୍ୟ ତଥା ଆଚମନାଦି ଉପଚାରରେ ପୂଜା କରିବ । ପ୍ରତ୍ୟେକ ବସ୍ତୁ ଅର୍ପଣ କରିବା ସମୟରେ ଦ୍ୱାଦଶାକ୍ଷର—'ଓଁ ନମୋ ଭଗବତେ ବାସୁଦେବାୟ' ପାଠ କରିବ । କ୍ଷୀର, ଶାଳୀଅନ୍ନ ଓ ଶର୍କରାଦି ଦେଇ ଖିରି ପ୍ରସ୍ତୁତ କରିବ ଏବଂ ସେହି ଖିରିକୁ ଦ୍ୱାଦଶାକ୍ଷର ମନ୍ତ୍ରରେ ଅଗ୍ନିରେ ଆହୁତି ଦେବ । ଆଉ ମଧ ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କରି ଦକ୍ଷିଣା ଛାଡ଼ି ଭୋଜନ କରାଇବ । ଉପାସନା ଶେଷରେ ଦ୍ୱାଦଶାକ୍ଷର ମନ୍ତ୍ର ଏକଶହ ଆଠବାର ଜପ କରିବ । ଏହିପରି ଭାବରେ ବ୍ରତ ଆରମ୍ଭର ପୂର୍ବ ଦିନଟି ବିତାଇବ ।

ଦ୍ୱିତୀୟ ଦିନ ଅର୍ଥାତ୍ ଶୁକ୍ଳ ପ୍ରତିପଦା ଦିନଠାରୁ ବାରଦିନ ପର୍ଯ୍ୟନ୍ତ ପ୍ରଥମ ଦିନ ପରି ବିଷ୍ଣୁଙ୍କ ଆରାଧନା କରିବ । ଯଥାଶକ୍ତି ହୋମ, ବ୍ରାହ୍ମଣ ଭୋଜନାଦି କରାଇବ । ସେହି ବାରଟି ଦିନ ବିଷ୍ଣୁଙ୍କ କଥା ଶ୍ରବଣ ନାମସଂକୀର୍ତ୍ତନ ଭଜନଗାନ ଆଦି କରାଇବ ଏବଂ ଶ୍ରଦ୍ଧାର ସହିତ ସ୍ତୋତ୍ର ସହସ୍ର ନାମ ଓ ଅଷ୍ଟକାଦି ପାଠ କରିବ । ସେହିଦିନମାନଙ୍କରେ ଅତିଥି ଅଭ୍ୟାଗତଙ୍କୁ ଭକ୍ତିରେ ସତ୍କାର କରିବ ଏବଂ ଯଥାଶକ୍ତି ଆଡ଼ମ୍ବର ସହିତ ଉତ୍ସବ ପାଳନ କରିବ । ଦେବୀ ଅଦିତି ତୁମେ ଗୋଟିଏ ବିଷୟ ପ୍ରତି ସର୍ବଦା ସାବଧାନ ରହିବ । ତୁମ ମନରେ ଯେପରି ଗର୍ବଭାବ ଆଦୌ ନ ଆସେ ସେଥିପ୍ରତି ସଜାଗ ରହିବ ଏବଂ ବ୍ରତ ପାଳନ ସମୟରେ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରି ରହିବ ।''

ମହାମୁନି କଶ୍ୟପ ପରିଶେଷରେ କହିଲେ—''ଦେବି ! ପୁରାକାଳରେ ବ୍ରହ୍ମା ମୋତେ ଏହି ବ୍ରତର ସମସ୍ତ ବିଧାନ କହିଥିଲେ । ତୁମେ ଯଦି ଅତ୍ୟନ୍ତ ନିଷ୍ଠାର ସହିତ ଏହି ବ୍ରତ ପାଳନ କରିବ ତେବେ ଚରାଚରନାଥ ବିଷ୍ଣୁଙ୍କ ଆଶୀର୍ବାଦ ଅଚିରେ ଲଭ କରିବ । ଏହି ବ୍ରତର ପ୍ରଭାବରୁ ଅସାଧ ସାଧନ ହୋଇ ପାରିବ ଏବଂ ସ୍ୱୟଂ ପରମେଶ୍ୱର ବିଷ୍ଣୁ ତୁମ ଆରାଧନାରେ ସନ୍ତୁଷ୍ଟ ହୋଇ ଅମୋଘ ବର ପ୍ରଦାନ କରିବେ । ଏହି ବ୍ରତର ଅନ୍ୟ ନାମ 'ସର୍ବବ୍ରତ' । କେତେକ ଯୋଗୀ ଏହାକୁ 'ସର୍ବଯଜ୍ଞ' ନାମରେ ନାମିତ କରନ୍ତି । ଏହା ସମସ୍ତ ତପସ୍ୟାର ସାର ଏବଂ ଭଗବାନ୍ ବିଷ୍ଣୁଙ୍କୁ ବଶ କରିବାରେ ଏହା ହେଉଛି—ସର୍ବୋତ୍ତମ ସୁନ୍ଦର ତଥା ସରଳ ଉପାୟ । ଅବଶ୍ୟ ଶାସ୍ତ୍ରରେ ଅନେକ ପ୍ରକାର ବ୍ରତର ବିଧାନ ରହିଛି । ସେଥିମଧ୍ୟରୁ କେତେକ ବ୍ରତରେ କାୟକ୍ଳେଶ ସହ୍ୟ କରି ବିଧିବିଧାନ ସମ୍ପୂର୍ଣ୍ଣ କରାଯାଏ; କିନ୍ତୁ ଯଥାର୍ଥରେ ଭଗବାନ୍ ବାସୁଦେବ ଏହି ପୟୋବ୍ରତରେ ପ୍ରସନ୍ନ ହୋଇ ଅଭୀଷ୍ଟ ବର ପ୍ରଦାନ କରନ୍ତି । ପ୍ରଭୁଙ୍କ ପ୍ରସନ୍ନ ନିମିତ୍ତ ଯେଉଁ ଜପ, ଯଜ୍ଞ, ଦାନ ତଥା ବ୍ରତାଦି ପାଳନ କରାଯାଏ ତାହା ସାର୍ଥକ ହୋଇଥାଏ । ତୁମେ ଶ୍ରଦ୍ଧା, ସଂଯମ, ସଦାଚାର ତଥା ସରଳତାର ସହିତ

ଏହି ବ୍ରତ ଆଚରଣ କର । ତୁମର ମନସ୍କାମନା ପୂର୍ଣ୍ଣ ହେବ ଏବଂ ଭଗବାନ୍ ତୁମ ଉପରେ ସନ୍ତୁଷ୍ଟ ହେବେ । ସେତେବେଳେ ତୁମେ ପ୍ରଭୁଙ୍କଠାରୁ ତୁମର ଇଚ୍ଛାନୁସାରେ ବର ମାଗିନେବ । ଭଗବାନ୍ ସର୍ବସମର୍ଥ । ସେ ପ୍ରସନ୍ନ ହେଲେ, ତାଙ୍କ ଆଶ୍ରିତଙ୍କୁ ଅମୋଘ ବର ଦାନ କରିପାରିବେ ।"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ! ନିଜ ପତିଙ୍କଠାରୁ ସାର୍ଥକ ଉପଦେଶ ଶୁଣି ଅଦିତି 'ପୟୋବ୍ରତ' ପାଳନ ନିମିତ୍ତ ଉଦ୍ୟତ ହୋଇଗଲେ ।

## ଛପ୍ପୟ

ହରି ପୂଜନ ଅରୁ ହବନ ବିପ୍ର ଭୋଜନ ବାରହ ଦିନ ।
କଥା କୀରତନ କରେଁ ନୃତ୍ୟ ବାଦନ ଅରୁ ଗାୟନ ।।
ଜା ବିଧି ତେଁ ଜୋ ଭକ୍ତି ସହିତ ଶ୍ରୀହରିକୂଁ ସେବେଁ ।
ପ୍ରଭୁ ପ୍ରସନ୍ନ ହ୍ୱୈ ଇଷ୍ଟବସ୍ତୁ ନିଶ୍ଚୟ କରି ଦେବେଁ ।।
ଅଦିତି ସୁନେ ବ୍ରତ କେ ନିୟମ, ଅତି ପ୍ରସନ୍ନ ମନମହଁ ଭଈ ।
ସର୍ବଯଜ୍ଞମୟ ପୟୋବ୍ରତ, ବିଧି ତେଁ କରିବେ ଲଗି ଗଈ ।।



# ପୟୋବ୍ରତ ଓ ପ୍ରଭୁଙ୍କ ଆଗମନ

"ତସ୍ୟାଃ ପ୍ରାଦୁରଭୂତ୍ ତାତ ଭଗବାନାଦ୍ୟ ପୂରୁଷଃ ।
ପୀତାବାସା ଶ୍ଚତୁର୍ବାହୁଃ ଶଙ୍ଖ ଚକ୍ର ଗଦାଧରଃ ।।
ତଂ ନେତ୍ରଗୋଚରଂ ବୀକ୍ଷ୍ୟ ସହସୋତ୍ଥାୟ ସାଦରଂ ।
ନନାମ ଭୁବି କାୟେନ ଦଣ୍ଡବତ୍ ପ୍ରୀତିବିହ୍ୱଳା ।।"

(ଭା: ୮ । ୧୭ । ୪, ୫)

### ଛପ୍ପୟ

"କରଇ ଅଦିତି ବ୍ରତ ନିୟମ ଭୟେ ଅତି ତୁଷ୍ଟ ଗଦାଧର ।
ଭୟେ ପ୍ରକଟ ଅଖିଲେଶ ଚତୁର୍ଭୁଜ ବପୁ ମନୋହର ।।
ସନ୍ମୁଖ ଶ୍ରୀପତି ଲଖେ ପ୍ରେମ ମହଁ ବିହ୍ୱଳ ମାତ ।
ପରୌ ଦଣ୍ଡବତ ଭୂମି କରଇ ହରି ଭବମୟ ତ୍ରାଣ ।।
ଅତି ଉତ୍କଣ୍ଠିତ ଭଈତ ହିୟ ଲଖ୍ୟା ତେଂ ପୁନ ଝୁକ ଗଈ ।
ବିନୟ କରନ ଇଚ୍ଛା ଭଈ ଗଦ୍‌ଗଦ ବାନୀ ରୁକ ଗଈ ।"

ଅର୍ଥାତ୍ ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍, ପୟୋବ୍ରତର ପ୍ରଭାବରେ ଆଦ୍ୟପୁରୁଷ ଭଗବାନ୍ ଦେବୀ ଅଦିତିଙ୍କ ଆଗରେ ଆବିର୍ଭୂତ ହେଲେ । ସେ ପୀତାମ୍ବର ପିନ୍ଧି ଚତୁର୍ଦ୍ଦିହସ୍ତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରିଥିଲେ । ପ୍ରଭୁଙ୍କୁ ନିଜଆଗରେ ଛିଡ଼ା ହୋଇଥିବାର ଦେଖି, ଅଦିତି ହଠାତ୍ ଭୂମିରୁ ଉଠି ପଡ଼ିଲେ ଏବଂ ତତ୍ପରେ ପ୍ରେମବିହ୍ୱଳ ଚିତ୍ତରେ ପ୍ରଭୁଙ୍କ ପାଦପଦ୍ମରେ ପ୍ରଣିପାତ କଲେ ।

ଭକ୍ତି ଓ ପ୍ରେମର ଡୋରି ଅତ୍ୟନ୍ତ ଦୃଢ଼ । ସେହି ଡ଼ୋରିରେ ବିଶ୍ୱେଶ୍ୱରଙ୍କୁ ମଧ୍ୟ ନିଜଆଡ଼କୁ ଟଣା ଯାଇପାରେ ! ଅପରାଜେୟ ପ୍ରଭୁଙ୍କୁ ଭକ୍ତ ନିଜ ଭକ୍ତିରେ ପରାଜିତ କରିଦିଏ । ସର୍ବତନ୍ତ୍ର ସ୍ୱତନ୍ତ୍ର ଜଗଦୀଶ୍ୱରଙ୍କୁ ଭକ୍ତ କେବଳ ନିଜର ଅଧୀନ

କରିପାରେ । ପ୍ରଭୁ ହେଉଛନ୍ତି—ଭକ୍ତର କଳ୍ପଦ୍ରୁମ । ଭକ୍ତର ଆଶାରୂପକ କୋମଳ ଲତାପକ୍ଷରେ ପ୍ରଭୁ ନବଘନ ଶ୍ୟାମସୁନ୍ଦରହିଁ ଶ୍ୟାମଘନ ସ୍ୱରୂପ ଅଟନ୍ତି । ସେ୍ନହ, ଆଦର, ଭକ୍ତି ଓ ଶ୍ରଦ୍ଧାର ସହିତ ଭକ୍ତର ଡାକରା କେବେହେଲେ ବ୍ୟର୍ଥ ହୁଏନାହିଁ । ତେଣୁ କାମନା ପୂରଣ ନିମିତ୍ତ କାମାଙ୍କିତ ସୁନ୍ଦର ଶ୍ରୀକୃଷ୍ଣଙ୍କ ଶ୍ରୀଚରଣ କମଳରେ ଆଶ୍ରୟ ନେବା ହେଉଛି—ଏକମାତ୍ର ପନ୍ଥା ।

ଶ୍ରୀ ଶୁକଦେବ କହିଲେ - "ହେ ଉତ୍ତରାନନ୍ଦନ, ଦେବମାତା ଅଦିତି ନିଜ ସ୍ୱାମୀ କଶ୍ୟପ ମହର୍ଷିଙ୍କଠାରୁ 'ପୟୋବ୍ରତ' ସମ୍ବନ୍ଧରେ ଶୁଣି ଅତ୍ୟନ୍ତ ଆନନ୍ଦିତା ହେଲେ । ଫାଲ୍‌ଗୁନ ଅମାବାସ୍ୟା ଦିନରୁ ସେ ବିଧିବିଧାନର ସହିତ ସର୍ବମଙ୍ଗଳ ସାରଭୂତ 'ପୟୋବ୍ରତ' ଆରମ୍ଭ କରିଦେଲେ । ଦେବମାତା ଅଦିତି ଶ୍ରଦ୍ଧା ତଥା ଭକ୍ତିର ସହିତ ବିଷ୍ଣୁଙ୍କ ଆରାଧନାରେ ଲାଗିପଡ଼ିଲେ ଏବଂ ବ୍ରତର ନିୟମଗୁଡ଼ିକ କଠୋରଭାବରେ ପାଳନ କରିବାକୁ ଲାଗିଲେ ।"

ବ୍ରତ ସମାପ୍ତି ହେବାମାତ୍ରେ ତାଙ୍କ ଆଖିଆଗରେ ସ୍ୱୟଂ ପ୍ରଭୁ ସ୍ୱଦେହରେ ଆବିର୍ଭୂତ ହୋଇଗଲେ । ତାଙ୍କ କଟିରେ ପୀତାମ୍ବର, ବକ୍ଷରେ ବନମାଳା, ଚତୁର୍ଭୁଜରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଶୋଭା ପାଉଥିଲା । ସେ ବରଦ ମୁଦ୍ରାରେ ଛିଡ଼ାହୋଇ ମନ୍ଦ ମନ୍ଦ ହସୁଥିଲେ । ଅଦିତି ତାଙ୍କ ନେତ୍ର ସମ୍ମୁଖରେ ନିଜ ଧ୍ୟାନର ଭଗବାନଙ୍କୁ ସାକ୍ଷାତ୍ ଲକ୍ଷ୍ୟ କରି ଆତ୍ମହରା ହୋଇ ପଡ଼ିଲେ । ହଠାତ୍ ସେ କ'ଣ କରିବେ କିଛି ଚିନ୍ତାକରି ପାରିଲେ ନାହିଁ । ଚକ୍ଷୁ ସମକ୍ଷରେ ତ୍ରୈଲୋକ୍ୟ-ସୁନ୍ଦରଙ୍କ ମୁଖ ସୁଧାକର ଅବଲୋକନ କରି, ତାଙ୍କ ନେତ୍ରଚକୋର ଭାବବିହ୍ୱଳ ହୋଇଉଠିଲା । ସେ ଅନେକ ସମୟ ପର୍ଯ୍ୟନ୍ତ ଏକଲୟରେ ଶ୍ରୀହରିଙ୍କୁ ଚାହିଁରହିଲେ । ସେ ପରମ ସ୍ତ୍ରୀ ଆତ୍ମବିସ୍ମୃତ ହୋଇଉଠି, ନିଜ କର୍ତ୍ତବ୍ୟ କର୍ମ ଭୁଲି-ଗଲେ । ହଠାତ୍ ସେ ପ୍ରକୃତିସ୍ଥ ହୋଇ ଭାବିଲେ 'ଆରେ, ମୁଁ ଏ' କ'ଣ କଲି ? ଏ'ପର୍ଯ୍ୟନ୍ତ ପ୍ରଭୁଙ୍କୁ ପ୍ରଣାମ କଲିନାହିଁ ? ତେଣୁ ସେ ଆନନ୍ଦରେ ବିହ୍ୱଳା ହୋଇ ସାଷ୍ଟାଙ୍ଗ ପ୍ରଣିପାତ କଲେ । ସ୍ତ୍ରୀମାନେ ପଞ୍ଚାଙ୍ଗ ପ୍ରଣାମ କରିବା ବିଧେୟ । କାରଣ ସେମାନଙ୍କ 'ପୟୋଧର' ଯୁଗଳ ପୃଥ୍ୱୀକୁ ସ୍ପର୍ଶ ନ କରିବା ଲାଗି ଶାସ୍ତ୍ରରେ ବିଧାନ ରହିଛି । କିନ୍ତୁ ଭକ୍ତିବିହ୍ୱଳତାରେ ଅଦିତି ହଠାତ୍ ସବୁଜାଣିଛି ଶାସ୍ତ୍ରୀୟ ନିୟମକୁ ଭୁଲି ଦଣ୍ଡବତ ସାଷ୍ଟାଙ୍ଗ ପ୍ରଣାମ ନିବେଦନ କଲେ । କାରଣ, ଆବେଗରେ ସେ ତନ୍ମୟ ହୋଇ ଉଠିଥିଲେ । ତେଣୁ ବିଧିବିଧାନ ପ୍ରତି ତାଙ୍କର ଧାରଣା ରହିଲାନାହିଁ ।

କେତେସମୟ ପର୍ଯ୍ୟନ୍ତ ଦଣ୍ଡବତ୍ ପଡ଼ିରହିବା ପରେ ସେ ମନେ ମନେ ବିଚାରିଲେ—'ଭଗବାନଙ୍କ ଅବାହନ ଉଦ୍ଦେଶ୍ୟରେ ସ୍ତୁତି କରିବା ବିଧେୟ । ଏହି ବିଶ୍ବର

ତାଙ୍କ ମନରେ ଜାତ ହେବାକ୍ଷଣି, ସେ ଉଠି ଛିଡ଼ା ହୋଇ ପଡ଼ିଲେ । ସେତେବେଳେ ତାଙ୍କ ଚକ୍ଷୁରୁ ଅବିରତ ଅଶ୍ରୁଧାର ପ୍ରବାହିତ ହେଉଥିଲା ଏବଂ ସର୍ବାଙ୍ଗରେ ପୁଲକ ଜାତ ହୋଇ ସେ ରୋମାଞ୍ଚିତା ହୋଇ ଉଠିଥିଲେ । ତାଙ୍କର କଣ୍ଠ ରୁଦ୍ଧ ହୋଇ ଯାଇଥିଲା । ସେ ସ୍ତୁତି କରିବାକୁ ଚାହୁଁଥିଲେ ସୁଦ୍ଧା, ତାଙ୍କ କଣ୍ଠରୁ ବାଣୀ ସ୍ଫୁରିଲା ନାହିଁ । ସେ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ପ୍ରଭୁଙ୍କ ସମ୍ମୁଖରେ ଛିଡ଼ାହୋଇ ରହିଲେ । ସେହିପରି ଅବସ୍ଥାରେ କିଛି ସମୟ ରହିବା ପରେ, ତାଙ୍କର ଚୈତନ୍ୟ ଉଦୟ ହେଲା । ସେ ପୁଣି ଥରେ ଆଖି ଉଠାଇ ସଜଳ ଜଳଦ କାନ୍ତିଯୁକ୍ତ ଶ୍ୟାମସୁନ୍ଦରଙ୍କ ମୁଖ-ମଣ୍ଡଳକୁ ଏକ ଧ୍ୟାନରେ ଚାହିଁରହିଲେ । ତାଙ୍କର ନିର୍ବେଦ ଦୃଷ୍ଟି ପ୍ରତି ଧ୍ୟାନଦେଲେ, ମନେହେଉଥିଲା, ସତେ ଯେପରି, ତାଙ୍କର ପିପାସିତ ନୟନ ପ୍ରଭୁଙ୍କ ଶ୍ରୀମୁଖ ସୁଧା ପାନଲାଗି ବ୍ୟାକୁଳ ହୋଇଉଠିଛି । ତଥାପି ସେ ନିଜର ଚିତ୍ତବୃତ୍ତିକୁ କୌଣସି-ମତେ ସ୍ଥିର ରଖି ଧୀର ଗମ୍ଭୀର କଣ୍ଠରେ ବିନୟପୂର୍ଣ୍ଣ ବଚନ କହିଲେ—"ହେ ଯଜ୍ଞେଶ୍ୱର, ହେ ଅଚ୍ୟୁତ, ହେ ଆର୍ତ୍ତତ୍ରାଣ ପରାୟଣ, ହେ ଆଦିପୁରୁଷ, ହେ ଅଜ୍ଞାନ-ଅନ୍ଧକାର ନାଶକାରୀ ମୂର୍ତ୍ତି, ମୁଁ ଆପଣଙ୍କ ପାଦପଦ୍ମରେ କୋଟି କୋଟି ପ୍ରଣାମ କରୁଛି । ଆପଣ କଲ୍ୟାଣପ୍ରଦ ଏବଂ ଭକ୍ତର ମନସ୍କାମନା ପୂରଣକାରୀ । ଆପଣ ସୁଦୟା କରି ମୋ ମନୋବାଞ୍ଛା ପୂରଣ କରନ୍ତୁ ।

"ହେ ଚରାଚର ନାଥ ! ଆପଣଙ୍କ ପକ୍ଷରେ ଅଦେୟ ବୋଲି କିଛିନାହିଁ । ଆପଣଙ୍କ ଦୟା ହେଲେ ବ୍ରହ୍ମାଣ୍ଡର କୌଣସି ବସ୍ତୁ ଅଲଭ୍ୟ ହୋଇ ରହେନାହିଁ । ଧନ, ଧାନ୍ୟ, ଗୋପ ଲକ୍ଷ୍ମୀ, ଆଧିପତ୍ୟ, ତଥା ତ୍ରୈଲୋକ୍ୟ ବିଜୟ ଶକ୍ତି, ଯେ ଯାହା ବାଞ୍ଛା କରେ, ଆପଣଙ୍କ କରୁଣା ଫଳରେ ସମସ୍ତ କିଛି ସୁଲଭ ହୋଇପାରେ । ଧର୍ମ, ଅର୍ଥ, କାମ, ମୋକ୍ଷ ଆପଣଙ୍କ କରୁଣାଫଳରେ ସହଜଲଭ୍ୟ ହୋଇଥାଏ । ହୃଦୟରୁ ଅଜ୍ଞାନାନ୍ଧକାର ଦୂର ହୋଇଯାଇ, ଜ୍ଞାନର ନିର୍ମଳ ଆଲୋକ ଜାଗ୍ରତ ହୋଇ ଉଠେ । ଆପଣ ଆଶ୍ରିତଜନଙ୍କୁ ସବୁକିଛି ଦେଇପାରୁ ଥିବାରୁ, ମୋର କାମନା ତା'ତୁଳନାରେ ଅତି ଅକିଞ୍ଚନ । ହେ ପ୍ରଭୋ ! ଆପଣ ଅନ୍ତର୍ଯାମୀ, ଆପଣଙ୍କ ଆଗରେ କିଛି କହିବାଲାଗି ମୋତେ ଲଜ୍ଜାବୋଧ ହେଉଛି । ମୁଁ ଯାହା ବାଞ୍ଛା କରୁଛି, ତାହା ସମ୍ରାଟଙ୍କୁ ମୁଠିଏ ଅନ୍ନଯାଚନା କରିବା ସହିତ ସମାନ । ତଥାପି ମୁଁ କହୁଛି—ଆପଣ ମୋ ଶତ୍ରୁମାନଙ୍କୁ ସଂହାରପୂର୍ବକ ଦେବଗଣଙ୍କୁ ପୁଣି ସ୍ୱର୍ଗରେ ଅଧିଷ୍ଠିତ କରାଇ ଦିଅନ୍ତୁ । ମୁଁ ମୋକ୍ଷ-ଯାଚନା କଲେ, ତାହା ଆପଣଙ୍କ ପକ୍ଷରେ ଅଦେୟ ହୋଇ ରହନ୍ତା ନାହିଁ । କିନ୍ତୁ ବୁଭୁକ୍ଷୁ ପ୍ରାଣୀ ଅନ୍ନ ବ୍ୟତୀତ ସଂସାରର ଅନ୍ୟ କୌଣସି ଲୋଭନୀୟ ପଦାର୍ଥ ବାଞ୍ଛା କରେନାହିଁ । ସେହିପରି ମୋ' ମନରେ ଏକମାତ୍ର କାମନା—ମୋ' ପୁତ୍ରମାନେ ସ୍ୱର୍ଗ

ରାଜ୍ୟରେ ପୁଣି ପ୍ରତିଷ୍ଠିତ ହୁଅନ୍ତୁ । ଦେବଗଣ ଶକ୍ତିଶାଳୀ ହୋଇ ଅସୁରମାନଙ୍କ ମାନମର୍ଦ୍ଦନ କରନ୍ତୁ । ଏହାହିଁ ମୋ' ମନର ପ୍ରବଳ ଅଭିଳାଷ ।"

ଦେବମାତା ଅଦିତିଙ୍କ ବିନୟପୂର୍ଣ୍ଣ ବଚନ ଶୁଣି ସର୍ବାନ୍ତର୍ଯାମୀ ସଚ୍ଚିଦାନନ୍ଦ ଭଗବାନ୍ କହିଲେ—"ହେ ଦେବଜନନୀ ! ମୁଁ ତୁମ ଅନ୍ତରର ଅଭିଳାଷ ଜାଣିଛି । ତୁମେ ଅସୁରମାନଙ୍କୁ ପଦଚ୍ୟୁତ କରାଇ ଦେବଗଣଙ୍କୁ ସ୍ୱର୍ଗରେ ପ୍ରତିଷ୍ଠିତ କରାଇବାର ଯେଉଁ କାମନା ମନରେ ପୋଷଣ କରିଛ, ତାହା ମୋ' ଦ୍ୱାରା ଅବିଦିତ ନୁହେଁ । ଆଉ ମଧ୍ୟ ମୁଁ ଜାଣେ, ତୁମେ ଦେବଗଣଙ୍କ ଦୁଃଖରେ ବିମୋହିତା ହୋଇ ମୋର ପ୍ରିୟତମ ବ୍ରତ ପାଳନ କରୁଛ । ତୁମ ହୃଦୟରେ ଦେବମାନଙ୍କ ପ୍ରତି କରୁଣା ଉଦ୍ରେକ ହେବା ସଙ୍ଗେ ସଙ୍ଗେ ଅସୁରମାନଙ୍କ ପ୍ରତି ପ୍ରତିହିଂସାର ଅଗ୍ନି ହୁ' ହୁ' ହୋଇ ଜଳୁଛି ।"

ପ୍ରଭୁଙ୍କ ବାଣୀ ଶୁଣି ଅଦିତି ଲଜ୍ଜିତା ହୋଇ କିଛିକ୍ଷଣ ମୌନଭାବରେ ହାତଯୋଡ଼ି ଛିଡ଼ା ହେଲେ । ତହୁଁ ଭଗବାନ୍ ବିଷ୍ଣୁ ମେଘମନ୍ଦ୍ର ସ୍ୱରରେ କହିଲେ – "ଦେବି ! ଆଜି ଯେପରି ପତିବିରହିତା ହୋଇ ଦେବଲଳନାମାନେ ଅତି ଦୁଃଖରେ ଏକବେଣୀ ଧାରଣ କରି ଶୋକ କରୁଛନ୍ତି, ଅସୁର ପତ୍ନୀମାନେ ସେହି ଦଶା ଭୋଗ କରନ୍ତୁ; ଏହାହିଁ ତୁମର ଇଚ୍ଛା । ତୁମେ ଅସୁରମାନଙ୍କ ମୃତ୍ୟୁରେ ସେମାନଙ୍କ ପତ୍ନୀମାନଙ୍କ ବୈଧବ୍ୟ ରୂପ ଦେଖି ଆତ୍ମସନ୍ତୋଷଲାଭ କରିବାକୁ ଚାହୁଁଛ । ତୁମେ ତୁମ ପୁତ୍ରମାନଙ୍କ ସମୃଦ୍ଧି ଦେଖି ଆତ୍ମତୃପ୍ତି ପାଇବାକୁ ଇଚ୍ଛା କରୁଛ । ପୁତ୍ରମାନଙ୍କ ଦୀନ ଦୁର୍ଦ୍ଦଶା ଦେଖି ତୁମର ଅନ୍ତର ଦଗ୍ଧ ହୋଇଛି । ଯେ କୌଣସି ମାତା ପକ୍ଷରେ ଏପରି ଭାବନା ଅସ୍ୱାଭାବିକ ନୁହେଁ । କିନ୍ତୁ ହେ ଦେବମାତ ! ମୁଁ କ'ଣ କରିବି ? ମୋର ଉପାୟ କ'ଣ : ମୁଁ ଧର୍ମ ସଙ୍କଟରେ ଦଣ୍ଡୁଆଁନ ହୋଇଛି । ବ୍ରାହ୍ମଣମାନଙ୍କ ଭକ୍ତିରେ ମୁଁ ବିମୁଗ୍ଧ ହୋଇଛି । ମୁଁ ସେମାନଙ୍କୁ ଅଧିକାର ପ୍ରଦାନ କରିଛି । ସେମାନେ ହେଉଛନ୍ତି ମୋର ସ୍ୱରୂପ । ତୁମ ପୁତ୍ରମାନଙ୍କ ଶତ୍ରୁମାନେ ମୋର ସ୍ୱରୂପ ଗୁରୁଙ୍କ ଆରାଧନାରେ ମନପ୍ରାଣ ଢ଼ାଳି ଦେଇଛନ୍ତି । ତୁମେ ମଧ୍ୟ ତୁମ ପୁତ୍ରଙ୍କ ସମୃଦ୍ଧି ପାଇଁ ଯମ, ନିୟମ, ତଥା ବିଧିବିଧାନର ସହିତ 'ପୟୋବ୍ରତ' ଉଦ୍‌ଯାପନ କରିଛ । ତେଣୁ ଅସୁରମାନଙ୍କୁ ପରାଭୂତ କରିବା ଅତ୍ୟନ୍ତ କଠିନ ଏବଂ ତୁମକୁ ମଧ୍ୟ ନିରାଶ କରିବା ଉଚିତ ହେବନାହିଁ । ମୋ' ଉପାସନା ବ୍ୟର୍ଥ ନହେଉ, ସେଥିଲାଗି ମୋତେ ଆଉ କିଛି ଉପାୟ ଚିନ୍ତା କରିବାକୁ ପଡ଼ିବ" ।

ଅଦିତି ପ୍ରଭୁଙ୍କ ବାଣୀ ଶୁଣି ଦୀନତା ପ୍ରକାଶ କରି କହିଲେ—"ପ୍ରଭୋ, ଆପଣଙ୍କୁ ମୋ' ପ୍ରାର୍ଥନା ଶୁଣିବାକୁ ପଡ଼ିବ । ମୁଁ ଆପଣଙ୍କ ଶ୍ରୀଚରଣରେ ଆଶ୍ରୟ ଗ୍ରହଣ କରିଛି । ଆପଣ ମୋର ଏକମାତ୍ର ଗତି ଓ ମୁକ୍ତିଦାତା ।"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ଅଦିତିଙ୍କ ବିନୟ ବଚନ ଶୁଣି ଶ୍ରୀହରି ଅନ୍ୟ ଉପାୟ ଚିନ୍ତା କରିବାକୁ ଲାଗିଲେ ।"

## ଛପ୍ପୟ

"ପୁନି ସୁରମାତୁ ସଙ୍କାର ଅପନପୋ ବୋଲୀବାନୀ ।
ହେ ଅନାଦି ଅଖିଲେଶ ଅଖିଲପତି ଇଚ୍ଛାଦାନୀ ।।
ହେ ସୁର ରକ୍ଷକ ଦେବ ବିଷ୍ଣୁ ଅଜ ଭଞ୍ଜନ ଖଳଦଳ ।
ହେ ଯଜ୍ଞେଶ୍ୱର ଯଜ୍ଞରୂପ ଶରଣାଗତ ବତ୍ସଲ ।।
ନିରଖେଁ କୃପା କଟାକ୍ଷ ତେଂ ନାସେଂ ତିନକୀ ସର୍ବ ବ୍ୟଥା ।
ସିଦ୍ଧ ମନୋରଥ କରେଂ ପୁନି ଶତ୍ରୁ ବିଜୟ କୀ କା କଥା ।।



# ଶ୍ରୀହରିଙ୍କ ବରଦାନ

"ତ୍ୱୟାର୍ଚ୍ଚିତଶ୍ଚାହ ମପତ୍ୟ ଗୁପ୍ତୟେ
ପୟୋବ୍ରତେନାନୁ ଗୁଣଂ ସମୀଡ଼ିତଃ ।
ସ୍ୱାଂଶେନ ପୁତ୍ରତ୍ୱମୁପେତ୍ୟ ତେ ସୁତାନ୍
ଗୋପ୍ତାସ୍ମି ମାରୀଚତପସ୍ୟଧିଷ୍ଠିତଃ ।।"

(ଭା. ୮ । ୧୭ । ୧୮)

## ଛପ୍ପୟ

"ହଁସି ହରି ବୋଲେ ମାତୁ ବାତ ତବ ହୃଦୟକୀ ଜାନୀ ।
କୀହ୍ନେଂ ସୁର ଶ୍ରୀହୀନ ବଢ଼େ ଦଇତ ସୁତ ଅଭିମାନୀ ।।
ସ୍ୱର୍ଗହୀନ ସୁତ ଭୟୋ ବିଜୟ ଚାହୋ ତୁମ ତିନ କୀ ।
ମିଲେ ସ୍ୱର୍ଗ ଐଶ୍ୱର୍ଯ୍ୟ ବୃଦ୍ଧି ହୋଓ ଦେବନକୀ ।।
ଯଦ୍ୟପି ଅସୁର ଅଜେୟ ହୈଂ ଗୁରୁ ସେବା ମହଁ ନିରତ ସବ ।
ହୋହି ନ ନିଷ୍ଫଲ ମମ ଭଜନ ତଦପି କରହି କଛୁ ଯତ୍ନ ଅବ ।।

ଅର୍ଥାତ୍—ଅଦିତିଙ୍କ ବିନୟ ବଚନରେ ସନ୍ତୁଷ୍ଟ ହୋଇ ଶ୍ରୀହରି କହିଲେ—"ହେ ଦେବି ଅଦିତି ! ତୁମେ ପୟୋବ୍ରତ ଦ୍ୱାରା ମୋତେ ଆରାଧନା ପୂର୍ବକ ନିଜ ପୁତ୍ରମାନଙ୍କ ମଙ୍ଗଳ କାମନା କରିଛ । ମୁଁ ତୁମ ଉପାସନାରେ ସନ୍ତୁଷ୍ଟ ହୋଇ ମରୀଚି ନନ୍ଦନ ମହର୍ଷି କଶ୍ୟପଙ୍କ ଔରସରେ, ତୁମ ଗର୍ଭରେ ଜାତ ହୋଇ ଦେବଗଣଙ୍କ ଦୁଃଖ ଦୂରକରିବି ।

ଦୁଇଜଣ ଭକ୍ତ ଗୋଟିଏ ବସ୍ତୁ ନିମିତ୍ତ ପ୍ରାର୍ଥନା ଜଣାଇଲେ ପ୍ରଭୁ ନିତାନ୍ତ ଅସୁବିଧାର ସମ୍ମୁଖୀନ ହୁଅନ୍ତି । ଦୁଇଜଣଯାକ ଆପଣାର ଏବଂ କେହି ହେଲେ ଜଣେ ନିଜ ଦାବିରୁ ଓହରି ଯିବାପାଇଁ ପ୍ରସ୍ତୁତ ନୁହନ୍ତି । ଦୁହେଁଯାକ ଗୋଟିଏ ବସ୍ତୁ ପାଇବା ପାଇଁ

ଆଗ୍ରହ । ଏହିପରି ଅବସ୍ଥାରେ ପ୍ରଭୁ ସ୍ୱୟଂ ଦୀନତା ପ୍ରକାଶ କରନ୍ତି । ସେ ଜଣଙ୍କୁ ବୁଝାଇ ଅନ୍ୟଜଣଙ୍କ ପାଇଁ ନିଜେ ପ୍ରାର୍ଥୀ ହୁଅନ୍ତି । ସ୍ୱୟଂ ପ୍ରଭୁ ଭକ୍ତଙ୍କ ପାଇଁ ନିଜେ ଦଣ୍ଡକୁ ମୁଣ୍ଡପାତି ଗ୍ରହଣ କରିନିଅନ୍ତି ପଛକେ, କିନ୍ତୁ କାହାରିକୁ ଅସନ୍ତୁଷ୍ଟ କରନ୍ତି ନାହିଁ ।

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ସ୍ୱର୍ଗରାଜ୍ୟ ଦେବଗଣଙ୍କୁ ମିଳିବା ଲାଗି ଅଦିତି ଜନାର୍ଦ୍ଦନଙ୍କୁ ଅତିସ୍ୱରରେ ପ୍ରାର୍ଥନା କରନ୍ତେ, ଶ୍ରୀହରି କହିଲେ—"ଦେବି ! ଯିଏ କେହି ଉପଦ୍ରବ କରେ କିମ୍ବା ଅନାଯୋଚିତ ଆଚରଣ କରେ, ତେବେ ମୁଁ ତାକୁ ସମୁଚିତ ଦଣ୍ଡ ଦେଇଥାଏ । ମହାରାଜ ବଳି ମୋର ଭକ୍ତ ଏବଂ ସେ ଗୁରୁ ସେବାରେ ମଗ୍ନ । ସେ ଯଜ୍ଞଦ୍ୱାରା ମୋର ଉପାସନାରେ ନିରତ । ମୁଁ ତାହା ସହିତ ଯୁଦ୍ଧ କରିପାରିବି ନାହିଁ । ବରଂ ତା' ଆଗରେ ମୁଁ ନ୍ୟୂନ ହୋଇ କାର୍ଯ୍ୟ ସାଧନ କରିବି ।"

ପ୍ରଭୁଙ୍କ ବାଣୀରେ ଅଦିତିଙ୍କ ମନରେ ଆଶାର ସଞ୍ଚାର ହେଲା । ସେ ଅଳିକରି କହିଲେ—"ପ୍ରଭୋ, ଆପଣ ଶ୍ରେଷ୍ଠ ହେଲେ ମଧ୍ୟ ଆପଣଙ୍କ ମହାନତାରେ କୌଣସି ଆଞ୍ଚ ଆସିବ ନାହିଁ । ଆପଣ ଚିର ମହାନ୍ ଏବଂ ଚିରକାଳ ଯାଏ ମହତ୍ତମ ହୋଇ ରହିଥିବେ । ମୁଁ କିନ୍ତୁ ଚାହେଁ—ଆପଣ ମୋ' ମନର ବାସନା ପୂର୍ଣ୍ଣ କରନ୍ତୁ । ଏଥିରେ ଆପଣଙ୍କ ମହାନତା କୌଣସିମତେ ଖର୍ବ ହେବନାହିଁ ।

ଭଗବାନ୍ କୋମଳକଣ୍ଠରେ କହିଲେ—"ମୁଁ ନିତାନ୍ତ ଅସମଞ୍ଜସରେ ପଡ଼ିଛି । ତୁମେ ମୋତେ ଆରାଧନା କରି ଭକ୍ତିର ଡୋରିରେ ବାନ୍ଧି ପାରିଛ ଏବଂ ବଳି ମଧ୍ୟ ମୋର ପ୍ରିୟଭକ୍ତ ତଥା ଅନୁରକ୍ତ । ମୋତେ ସମସ୍ତଙ୍କଠାରୁ ଶ୍ରେଷ୍ଠ ହେବାକୁ ପଡ଼ିବ । ତୁମେ ଜାଣ ଦେବୀ, ସମସ୍ତେ ସାନଭାଇ ଉପରେ କର୍ତ୍ତୃତ୍ୱ ବିସ୍ତାର କରନ୍ତି । ବିଚରା ସାନଭାଇଟି ସେବାରେ ଆତ୍ମନିୟୋଗ କରି ସମସ୍ତଙ୍କ ପ୍ରିୟପାତ୍ର ହେବାକୁ ଚେଷ୍ଟା କରେ । ଆଜିଯାଏ ତୁମେ ଏଗାରଟି ସନ୍ତାନଙ୍କର ଜନନୀ ହୋଇଛ । ମୁଁ ତୁମ କୋଳରେ ଦ୍ୱାଦଶ ସନ୍ତାନ ରୂପେ ଜନ୍ମଲାଭ କରିବି । ଏହିପରି ଭାବରେ ମୁଁ ମୋ' ଜ୍ୟେଷ୍ଠଭ୍ରାତା ମାନଙ୍କର ହିତସାଧନ କରିବି । ତାହାହିଁ ହେବ ମୋର ପରମ କର୍ତ୍ତବ୍ୟ । ଅନ୍ୟପକ୍ଷରେ ମୁଁ ମଧ୍ୟ ଅସୁରମାନଙ୍କଠାରୁ ନିତାନ୍ତ କ୍ଷୁଦ୍ର ହୋଇଯିବି । ସଂସାରରେ ସବୁଠାରୁ ନିମ୍ନତମ ବୃତ୍ତି ହେଉଛି—ଭିକ୍ଷା । ଲୋକମାନେ କହନ୍ତି—ତୃଣ ହେଉଛି ଅତ୍ୟନ୍ତ ହାଲୁକା । କିନ୍ତୁ ତା'ଠାରୁ ଆହୁରି କ୍ଷୁଦ୍ର ହେଉଛି—ଭିକ୍ଷୁକ । ଯାଚନା ଭୟରେ ଭିକ୍ଷୁକକୁ ମଧ୍ୟ ବାୟୁ ଉଡ଼ାଇ ନିଏନାହିଁ । ଦେବୀ ! ଯେଉଁ ବ୍ୟକ୍ତି ଅନ୍ୟର ସମ୍ମୁଖରେ ହାତପାତି ଛିଡ଼ାହୁଏ, ତା' ଜୀବନ ଧିକ୍ !

ସେ ମୃତତୁଲ୍ୟ ବୋଲି ମନେହୁଏ । ତଥାପି ଦୈତ୍ୟଙ୍କ ଆଗରେ ମୁଁ ହାତଯୋଡ଼ି ନତଜାନୁ ଶ୍ରେଷ୍ଠ ହୋଇଯାଇ ଦେବଙ୍କ କାର୍ଯ୍ୟ ସାଧନ କରିବି । ଏହିପରିଭାବରେ ମୁଁ ଏହି ବିଷମ ଗଣ୍ଠିଟିକୁ ଖୋଲି ଦେଇପାରିବି !"

ଅଦିତି ଆଶ୍ଚର୍ଯ୍ୟ ହୋଇ କହିଲେ—"ଆପଣ ତ ତ୍ରୈଲୋକ୍ୟ ଠାକୁର, ମୋ' ଗର୍ଭରେ କିପରି ଜାତ ହେବେ ? ମୁଁ ଶୁଣିଛି—ଆପଣ କେତେକ ସୌଭାଗ୍ୟବତୀ ନାରୀଙ୍କ ଗର୍ଭରେ ଜାତ ହୋଇ, ତା'ର ନାରୀଜନ୍ମକୁ ସାର୍ଥକ କରିଛନ୍ତି । କିନ୍ତୁ ମୁଁ ତ ସେତେ ଭାଗ୍ୟବତୀ ନୁହେଁ, ଆପଣ କିପରି ମୋ' ଉପରେ କୃପାଦୃଷ୍ଟି ପକାଇଲେ ? ଯଦି ଆପଣ ମୋ' ସନ୍ତାନ ହୋଇ ଜନ୍ମ ହେବେ, ତେବେ ସେଥିପାଇଁ ମୋତେ କ'ଣ କରିବାକୁ ହେବ ?"

ଭଗବାନ୍ ଉତ୍ତର ଦେଇ କହିଲେ—"ଦେବୀ ! ତୁମେ ଆଜିଠାରୁ ନିଜ ପତିଙ୍କୁ ମୋର ଦୃଷ୍ଟିରେ ଦେଖ । ତାଙ୍କୁ ଈଶ୍ୱରବୁଦ୍ଧିରେ ଆରାଧନା କର । ଭଗବଦ୍ ଭାବନାରେ ତାଙ୍କର ପୂଜା କର । କିନ୍ତୁ ତୁମେ ଆଉ ଗୋଟିଏ ବିଷୟ ପ୍ରତି ଦୃଷ୍ଟି ଦେବ !"

ଅଦିତି କହିଲେ—"କ'ଣ ଆପଣ ନିର୍ଦ୍ଦେଶ କରୁଛନ୍ତି, ମୋତେ ସ୍ପଷ୍ଟ ଭାବରେ କୁହନ୍ତୁ ।"

ଭଗବାନ୍ କହିଲେ—"ଦେଖନ୍ତୁ, ମୁଁ ତୁମକୁ ଦର୍ଶନ ଦେଇ ବରଦାନରେ ଭୂଷିତ କରିଛି, ଏ' ବିଷୟ ତୁମେ କାହାରିକୁ କହିବ ନାହିଁ ।"

ଦେବୀ ଅଦିତି ପଚାରିଲେ । "ମୋତେ ଯଦି ଏ' ବିଷୟରେ କେହି କିଛି ପଚାରେ, ତେବେ ମୋର ଉପାୟ କ'ଣ ?"

"ସେପରି ଅବସ୍ଥାରେ ତୁମେ ହୁଁ...ହାଁ...ମାରି କୌଣସିମତେ ପ୍ରକୃତ କଥାକୁ ଟାଳିଦେବ ।"

"କାହିଁକି ପ୍ରଭୋ ? ଏଥିରେ ଦୋଷ କ'ଣ ? ପ୍ରକୃତ ସତ୍ୟ ପ୍ରକାଶ କରିଦେଲେ କ୍ଷତି କ'ଣ ହେବ ?"

ଭଗବାନ୍ ଉତ୍ତର ଦେଇ କହିଲେ—"ଅବଶ୍ୟ ସେଥିରେ କିଛି ଦୋଷ ନାହିଁ; କିନ୍ତୁ ମନେରଖ, ଆଧ୍ୟାତ୍ମିକ ଚିନ୍ତନ ବା ଈଶ୍ୱର ସାକ୍ଷାତ୍କାର ସମ୍ବନ୍ଧୀୟ କଥାକୁ ଯେତେ ଗୋପନ ରଖିପାରିବ, ସେତେ ମଙ୍ଗଳ । ତେଣୁ ଆଧ୍ୟାତ୍ମିକ ଚିନ୍ତା ସମ୍ବନ୍ଧୀୟ ଘଟଣାକୁ ଗୋପନୀୟ ରଖିବା ବାସ୍ତବିକ୍ ଏକ ଚିନ୍ତନୀୟ ବିଷୟ ।"

ଏହା ଶୁଣି ଶୌନକ ପଗ୍ଭରଲେ –"ହେ ସୂତମହର୍ଷି, ଭଗବାନ୍ ଅଦ୍ଭୁତ ଦେବୀଙ୍କ ତାଙ୍କ ସାକ୍ଷାତ୍କାର ସମ୍ବନ୍ଧରେ ପ୍ରକାଶ କରିବାଲାଗି ବାରଣ କରିଦେଲେ କାହିଁକି ? ଏ ସମ୍ବନ୍ଧରେ ଆମେ ଅନ୍ୟ ଆଗରେ ପ୍ରକାଶ କରିଦେଲେ, ସେମାନଙ୍କ ମନରେ ମଧ୍ୟ ଉତ୍ସାହ ଜାତ ହୁଅନ୍ତା; କିନ୍ତୁ ଗୋପନୀୟ ରଖିବାରେ ଲାଭ କ'ଣ ?"

ଏହା ଶୁଣି ସୂତମହର୍ଷି ଗମ୍ଭୀର ହୋଇ କହିଲେ—"ମୁନିବର, ଆପଣ କସ୍ତୁରୀକୁ ଯେତେ ଗୋପନକରି ରଖିଲେ ମଧ୍ୟ ତା'ର ଗନ୍ଧ ଫୁଟି ବାହାରେ । ଏହି ରୀତିରେ ପାପ ହେଉ ବା ପୁଣ୍ୟ ହେଉ, ତାକୁ ଯେତେ ଗୋପନକରି ରଖିଲେ ମଧ୍ୟ ସେ ଦିନେ ନା ଦିନେ ଫୁଟି ବାହାରେ । ତଥାପି ପୁଣ୍ୟ ପ୍ରକଟ କରିଦେଲେ ତାହା ଶୀଘ୍ର କ୍ଷୟପ୍ରାପ୍ତ ହୁଏ । ପାପ ସମ୍ବନ୍ଧରେ ଅନ୍ୟ ଆଗରେ ପ୍ରକାଶ କଲେ, ସେମାନେ ନିନ୍ଦା କରନ୍ତି । ତା' ଫଳରେ ପାପ ମଧ୍ୟ ନିନ୍ଦୁକମାନଙ୍କୁ ଗ୍ରାସ କରିଯାଏ । ସେହିପରି ପୁଣ୍ୟ କାର୍ଯ୍ୟ ସମ୍ବନ୍ଧରେ ଅନ୍ୟ ଆଗରେ ପ୍ରକାଶ କରିଦେଲେ, ସେହି ପ୍ରଶଂସା ମଧ୍ୟରେ ଆମ ପୁଣ୍ୟ କ୍ଷୟ ହୋଇଯାଏ । ତେଣୁ ପୁଣ୍ୟ କାର୍ଯ୍ୟକୁ ଯେତେ ଘୋଡ଼ାଇ ରଖିବା ସେତିକି ସେ ବୃଦ୍ଧି ପାଇବ ।"

"ଥରେ ଜଣେ ରାଜା ନିଜର ପୁଣ୍ୟ ବଳରେ ସ୍ୱର୍ଗପ୍ରାପ୍ତ ହେଲେ । ସେ ଯାଇ ଇନ୍ଦ୍ରଙ୍କ ପାଖରେ ଆସନ ଗ୍ରହଣ କରନ୍ତେ, ଇନ୍ଦ୍ରଦେବ କୂଟବୁଦ୍ଧି ପ୍ରୟୋଗ କରି କହିଲେ—"ହେ ରାଜନ୍, ଆପଣ କେଉଁ ପୁଣ୍ୟ ବଳରେ ସ୍ୱର୍ଗପ୍ରାପ୍ତ ହେଲେ-ଦୟାକରି ମୋ' ଆଗରେ ପ୍ରକାଶ କରନ୍ତୁ ।"

ଇନ୍ଦ୍ରଙ୍କଠାରୁ ପ୍ରଶଂସାତ୍ମକ ବାକ୍ୟ ଶୁଣି ରାଜାଙ୍କ ମନରେ ଅହଙ୍କାର ଜାତ ହେଲା । ସେ ହସି ହସି କହିଲେ– "ଇନ୍ଦ୍ରଦେବ, ମୁଁ ମୋ' ପୁଣ୍ୟପ୍ରସଙ୍ଗ କେତେ କହିବ ? ମୁଁ ଏୟା' କରିଛି, ତା' କରିଛି," ଇତ୍ୟାଦି ଇତ୍ୟାଦି ।

ଏହା ଶୁଣି ଇନ୍ଦ୍ର ହସି ହସି କହିଲେ—"ରାଜନ, ଆପଣଙ୍କ ସମସ୍ତ ପୁଣ୍ୟ କ୍ଷୟ ହୋଇଗଲା । ଆପଣ ତଳକୁ ମୁହଁ କରି ଏଠାରୁ ଭୂଲୋକକୁ ଖସିପଡ଼ନ୍ତୁ ।"

ରାଜା ଅତ୍ୟନ୍ତ ଭୟଭୀତ ହୋଇ କହିଲେ—"ହେ ଦେବରାଜ ! ମୁଁ ଭୂଲୋକକୁ ଯାଇ ସଜ୍ଜନ ଗୋଷ୍ଠୀରେ ମିଶିପାରେ, ଆପଣ ମୋତେ ଏହି ବରଦାନ ଦିଅନ୍ତୁ ।" ଇନ୍ଦ୍ର 'ତଥାସ୍ତୁ' କହନ୍ତେ, ରାଜା ଯାଇ ଭୂଲୋକରେ ଯଜ୍ଞ କରୁଥିବା ସଜ୍ଜନଙ୍କ ଗୋଷ୍ଠୀରେ ମିଶିଗଲେ ଏବଂ ସେହିମାନଙ୍କ ପୁଣ୍ୟ ପ୍ରତାପରେ ପୁଣି ସ୍ୱର୍ଗପ୍ରାପ୍ତ ହେଲେ ।

ସୂତମୁନି କହିଲେ—ହେ ଶୌନକ ! ତେଣୁ ନିଜ ପୁଣ୍ୟଗାଥା ନିଜେ ପ୍ରକାଶ କରିବା ଉଚିତ ନୁହେଁ । ତା' ଫଳରେ ମନୁଷ୍ୟର ପୁଣ୍ୟପୁଞ୍ଜ କ୍ଷୟପ୍ରାପ୍ତ ହୋଇଥାଏ । ଯେ ନିଜ ମୁଖରେ ନିଜ ପ୍ରଶଂସା କରେ ସେ ଜୀବନ ଥାଉଁ ଥାଉଁ

ମୃତତୁଲ୍ୟ ହୋଇଥାଏ । ଅତଏ ଅର୍ଜୁନ ପ୍ରତିଜ୍ଞା କରି କହିଥିଲେ—ଯେ ମୋ' ଗାଣ୍ଡିବ ଧନୁର ନିନ୍ଦା କରିବ, ମୁଁ ତାକୁ ବଧ କରିବି । ଦୁର୍ଯୋଗକୁ ମହାବୀର କର୍ଣ୍ଣଙ୍କ ବାଣରେ ଜର୍ଜରିତ ହୋଇ ରାଜା ଯୁଧିଷ୍ଠିର ଅର୍ଜୁନଙ୍କ ଗାଣ୍ଡିବ ଧନୁକୁ ନିନ୍ଦା କରିଥିଲେ । ଅର୍ଜୁନ ଏଥିରେ ଭୀଷଣ ରାଗିଯାଇ ନିଜ ପ୍ରତିଜ୍ଞା ଅନୁସାରେ ଖଡ୍ଗ ଧାରଣକରି ଯୁଧିଷ୍ଠିରଙ୍କୁ ହତ୍ୟା କରିବା ଲାଗି ଅଗ୍ରସର ହେଲେ । କିନ୍ତୁ ଶ୍ରୀକୃଷ୍ଣ ତାଙ୍କୁ ବାଧା ଦିଅନ୍ତେ, ସେ କହିଲେ—"ପ୍ରଭୋ, ଭ୍ରାତୃସ୍ନେହରେ ମୁଁ ମୋ' ପ୍ରତିଜ୍ଞା ତ୍ୟାଗ କରିବି କିପରି ?"

ତାହା ଶୁଣି ଭଗବାନ କହିଲେ—"ମୁଁ ତୁମକୁ ଯୁଧିଷ୍ଠିରଙ୍କ ହତ୍ୟାରୁ ବାରଣ କରୁନାହିଁ । କିନ୍ତୁ ତୁମେ ତାଙ୍କୁ ଶସ୍ତ୍ରରେ ବଧ ନ କରି ବିନା ଅସ୍ତ୍ରରେ ବଧ କର ।"

ଏହା ଶୁଣି ଅର୍ଜୁନ ଆଶ୍ଚର୍ଯ୍ୟ ହୋଇ ଶ୍ରୀକୃଷ୍ଣଙ୍କ ମୁହଁକୁ ଚାହିଁ ରହନ୍ତେ, ସେ କହିଲେ—"ସେବକ ଯଦି ପ୍ରଭୁଙ୍କ ଆଜ୍ଞା ପାଳନ ନ କରେ, ତେବେ ପ୍ରଭୁଙ୍କୁ ହତ୍ୟା କରିବାଠାରୁ ସେ ଅଧିକ ଦଣ୍ଡ ଦେଇଥାଏ । ଗୁରୁଜନଙ୍କୁ 'ତୁ'କାର ବଚନ କରିଥିବା ବ୍ୟକ୍ତି ତାଙ୍କୁ ହତ୍ୟା କରିଥାଏ । ତେଣୁ ତୁମେ ଧର୍ମରାଜଙ୍କୁ 'ତୁ' କାର ବଚନ କହି ଧିକ୍କାର କରିଦେଲେ ତାହା ହତ୍ୟାଠାରୁ ଅଧିକ କଠୋର କାର୍ଯ୍ୟ ହେବ ଏବଂ ତୁମର ପ୍ରତିଜ୍ଞା ମଧ୍ୟ ପୂରଣ ହୋଇପାରିବ ।"

ଏହା ଶୁଣି ଅର୍ଜୁନ ଧର୍ମରାଜଙ୍କୁ 'ତୁକାର' ବଚନ କହି ନିଜର ପ୍ରତିଜ୍ଞା ପୂରଣ କଲେ ସତ, କିନ୍ତୁ ପରମୁହୂର୍ତ୍ତରେ ସେ ଖଡ୍ଗ ଧାରଣ କରି ନିଜର ଶିରଚ୍ଛେଦ କରିବାକୁ ଉଦ୍ୟତ ହେଲେ । ଏହା ଦେଖି ଶ୍ରୀକୃଷ୍ଣ ପଚାରିଲେ- "ତୁମେ ପୁଣି ଏ କ'ଣ କରୁଛ ଅର୍ଜୁନ ?"

ଅର୍ଜୁନ ଉତ୍ତର ଦେଲେ—"ପ୍ରଭୋ, ଗୁରୁଜନଙ୍କୁ ନିନ୍ଦା କରି ଯେଉଁ ଅପରାଧ କରିଛି, ତା'ର ପ୍ରାୟଶ୍ଚିତ୍ତ ପାଇଁ ମୁଁ ନିଜ ହସ୍ତରେ ମୋର ଶିରଚ୍ଛେଦ କରିବାକୁ ବସିଛି ।"

ଶ୍ରୀକୃଷ୍ଣ ହସି ହସି କହିଲେ—"ଅର୍ଜୁନ, ତୁମେ ନିଜ ବୀରତ୍ୱର ପ୍ରଶଂସା ନିଜ ମୁଖରେ ପ୍ରକାଶ କର । ତା' ଫଳରେ ତୁମେ ନିଜକୁ ହତ୍ୟା କରିବାର ଦଣ୍ଡ ଆପଣା ଛାଏଁ ପାଇପାରିବ ।"

ପ୍ରଭୁଙ୍କ ଆଦେଶରେ ଅର୍ଜୁନ ତାହାହିଁ କରି ସାନ୍ତ୍ୱନା ଲଭ କଲେ ।

ସୂତମୁନି କହିଲେ –"ହେ ମୁନିଗଣ" ! କାହାର ଆଗରେ ନିଜର ପ୍ରଶଂସା-ପୂର୍ଣ୍ଣ ବାଣୀ ପ୍ରକାଶ କରିବ ନାହିଁ । ବାରଦିନର ଆରାଧନା ଫଳରେ ଅଦିତି ବିଷ୍ଣୁଙ୍କ ଦର୍ଶନ ପାଇପାରିଲେ ଏବଂ ଭଗବାନ୍ ତାଙ୍କର କୋଳରେ ପୁତ୍ରରୂପେ ଜନ୍ମଲାଭ କରିବାଠାରୁ ଗୌରବମୟ ଘଟଣା ତାଙ୍କ ପକ୍ଷରେ କ'ଣ ହୋଇପାରେ ? ସେ ଯଦି ସେହି ବୃତ୍ତାନ୍ତର ବର୍ଣ୍ଣନା ସମସ୍ତଙ୍କ ଆଗରେ ଗାଇ ବୁଲୁଥାନ୍ତେ, ତା'ହେଲେ ତାଙ୍କର ସମସ୍ତ ସୁକୃତ ନଷ୍ଟ ହୋଇଥାଆନ୍ତା । ଏପରି ଅନେକ ଦୃଷ୍ଟାନ୍ତ ରହିଛି । ବହୁଲୋକ ନିଜ ପ୍ରଶଂସା ନିଜ ମୁଖରେ ପ୍ରକାଶ କରି ଅଧୋଗତି ଲାଭ କରିଛନ୍ତି । ସେମାନେ ସେହି କୁକୃତ୍ୟ ଫଳରେ ହାତ ପାହାନ୍ତାରେ ମିଳୁଥିବା ସିଦ୍ଧି ଲାଭରୁ ଚିରକାଳ ଲାଗି ବଞ୍ଚିତ ହୋଇଛନ୍ତି । ଯେଉଁମାନେ ଅଳ୍ପବୁଦ୍ଧି ସମ୍ପନ୍ନ ବ୍ୟକ୍ତି ସେମାନେ ନିଜର ପ୍ରଶଂସା ଗାଇ ବୁଲନ୍ତି । ଅନେକ ଧୂର୍ତ୍ତ ବ୍ୟକ୍ତି ନିଜର କୃତିତ୍ୱ ସମ୍ବନ୍ଧରେ ବାହାଦୂରୀପୂର୍ଣ୍ଣ ଭାଷଣ ଦେଇ ଅନ୍ୟମାନଙ୍କୁ ସହଜରେ ଠକାଇ ଧନ, ଓ ମର୍ଯ୍ୟାଦା ହାସଲ କରିଥା'ନ୍ତି । ତେଣୁ ଯେଉଁମାନେ ସତ୍ ସ୍ୱଭାବର ବ୍ୟକ୍ତି, ସେମାନେ କେବେହେଲେ ଆତ୍ମ-ପ୍ରଶଂସାରେ ଉତ୍‌ଫୁଲ୍ଲ ହୁଅନ୍ତି ନାହିଁ । ସେହି ଦୃଷ୍ଟିରୁ ଭଗବାନ୍ ବିଷ୍ଣୁ ଅଦିତି ଦେବୀଙ୍କୁ ସାବଧାନ କରାଇ ଦେଇଥିଲେ ।

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ପରୀକ୍ଷିତ", "ଭଗବାନ୍ ଦେବଜନନୀ ଅଦିତିଙ୍କୁ ବରଦାନ ଦେଇ, ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ଅଦିତି ଦେବୀ ଭଗବତ୍ ଅନୁଗ୍ରହ ଲାଭକରି; ତାଙ୍କରି ଉପଦେଶ ଅନୁସାରେ ମହର୍ଷି କଶ୍ୟପଙ୍କୁ ବିଷ୍ଣୁ ମନେକରି, ତାଙ୍କ ପାଦସେବାରେ ନିମଗ୍ନ ହୋଇପଡ଼ିଲେ । ଭଗବାନ୍ ସ୍ୱୟଂ ତାଙ୍କରି କୋଳରେ ଜନ୍ମଲାଭ କରିବାର ଆନନ୍ଦରେ ମଗ୍ନ ହୋଇ ସେ ସର୍ବଦା ହରିନାମ କୀର୍ତ୍ତନରେ କାଳଯାପନ କରିବାକୁ ଲାଗିଲେ ଏବଂ ଅତ୍ୟନ୍ତ ଔତ୍ସୁକତାର ସହିତ ସେହି ଶୁଭଦିନର ପ୍ରତୀକ୍ଷା କଲେ ।

## ଛପ୍‌ପୟ

"ନିଜି ମହତ୍ୱ କୁଁ ତ୍ୟାଗି ବନ୍ତ୍ରି ଲହୁରେ ଦେବନ ତେଁ ।
ତବ ସୂତ ବନିକେ କରୁ କପଟ ଛଲ ଇନ ଦୈତ୍ୟନ ତେଁ ॥
କଶ୍ୟପ ତପମୟ ବୀର୍ଯ ମାଁହ ହୈଂ ହୋହୁଁ ଅବସ୍ଥିତ ।
ପତି ପରମେଶ୍ୱର ସମୁଝି କରୋ ସେବା ସବ ସମୁଚିତ ॥
କାହୂ ତେଁ କହିୟୋ ନ କିହ, ୟୋଂ ମୋତେଂ ପ୍ରଭୁ କହି ଗୟେ ।
ୟୋଂ ଦୈକେଁ ବରଦାନ ସିଖ, ଶ୍ରୀହରି ଅନ୍ତରହିତ ଭୟେ ॥"



# ବାମନ ଜନ୍ମ

"ଇତ୍‌ଥଂ ବିରିଞ୍ଚସ୍ତୁତ କର୍ମବୀର୍ଯ୍ୟଃ ।
ପ୍ରାଦୁର୍ବଭୂବାମୃତ ଭୂରଦିତ୍ୟାମ୍ ॥
ଚତୁର୍ଭୁଜଃ ଶଙ୍ଖ ଗଦାବ୍ଜଚକ୍ରଃ
ପିଶଙ୍ଗବାସା ନଳିନାୟତେକ୍ଷଣଃ ॥"

(ଭା. ୮।୧୮।୧)

## ଛପ୍ପୟ

"ଅଦିତି ଗର୍ଭ ମେଂ କୁଛିକ ଦିବସ ମହଁ ହରି ଅଜ ଆୟେ ।
ଦମ୍ପତି ଉର ଆନନ୍ଦ ଭୟୋ ସୁର ସିଦ୍ଧ ସିହାୟେ ॥
ଜାନି ଗର୍ଭଗତ ବିଷ୍ଣୁ ଆଇ ବିଧି ବିନତୀ କୀହ୍ନୀ ।
ଶୁଭ ମୁହୂର୍ତ୍ତ ଶୁଭ ଲଗ୍ନ, ସ୍ୱତଃ ସବ ଶିବ କରି ଦୀହ୍ନୀ ॥
ଭାଦୌଂ ଶୁକ୍ଳା ଦ୍ୱାଦଶୀ, ଅଭିଜିତ ସ୍ଥିତ ଅତି ଦିନ ପରମ ।
ଅଜ ଅବିନାଶୀ ଈଶ୍ୱର ଘଟ, ଲିୟୋ ବାମନ ବନି ଜନମ ।"

ଅର୍ଥାତ୍—ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ! ବିଧାତା ଗର୍ଭଗତ ବାମନରୂପୀ ବିଷ୍ଣୁଙ୍କ ସ୍ତୁତି କରିସାରିବା ପରେ; ଜନ୍ମ ମୃତ୍ୟୁ ରହିତ, କମଳ ନୟନ ଭଗବାନ୍ ନିଜର ଚାରିଭୁଜରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରି ଏବଂ ପୀତାମ୍ବର ପିନ୍ଧି ଅଦିତିଙ୍କ ଗର୍ଭରୁ ଆବିର୍ଭୂତ ହେଲେ ।"

ଭଗବାନଙ୍କୁ ବାରଦିନର ଉପାସନା ଫଳରେ ହେଉ କିମ୍ବା ମାସକ ଆରାଧନା ଦ୍ୱାରା ହେଉ, କିମ୍ବା ଅନେକ ଦିନର ତପସ୍ୟା ଫଳରେ ହେଉ, ପୁତ୍ର ରୂପେ ଲାଭ କରିବାକୁ ଚାହିଁଲେ ମଧ୍ୟ ସଫଳ ହେବ ନାହିଁ । ସେ ହେଉଛନ୍ତି ଭକ୍ତାଧୀନ । ସେ ଯାହା ଉପରେ କୃପା କରିବେ, କେବଳ ତା'ରି କୋଳରେ ପୁତ୍ର ହୋଇ ଜାତ

ହେବେ କମ୍ବା ଅନ୍ୟ କୌଣସି ରୂପରେ ତାଙ୍କୁ ପ୍ରୀତ କରିବେ । ଭଗବାନ୍ କୌଣସି ବ୍ରତ, ଉପାସନା ଅଥବା ଆରାଧନା ଦ୍ୱାରା ପ୍ରୀତ ହୋଇଗଲେ ବୋଲି କହିବା କେବଳ ନିମିତ୍ତ ମାତ୍ର । ସେ ଯେତେବେଳେ ଲୀଳା ବିସ୍ତାର କରିବାକୁ ଚାହିଁବେ, ସେତେବେଳେ କୌଣସି ଗୋଟିଏ କାରଣ ନେଇ ଜନ୍ମଗ୍ରହଣ କରିବେ ।

ଶ୍ରୀ ଶୁକଦେବ କହିଲେ—"ହେ ପାଣ୍ଡବ କୁଳତିଳକ ପରୀକ୍ଷିତ, ଅଦିତିଙ୍କୁ ବର ଦେଇ ପ୍ରଭୁ ଅନ୍ତର୍ଦ୍ଧାନ ହୋଇଗଲେ । ତା'ପରେ ଦେବୀ ଅଦିତି ସ୍ୱାମୀ କଶ୍ୟପଙ୍କୁ ବିଷ୍ଣୁ ସଦୃଶ ମନେକରି ତାଙ୍କ ପଦ ସେବା କରିଥିଲେ । ଦିନେ ମହର୍ଷି କଶ୍ୟପ ଦେଖିଲେ—ତାଙ୍କ ଶରୀରରେ ବ୍ରହ୍ମ ତେଜ ପ୍ରବେଶ କରୁଛି । ସମାଧି ଦ୍ୱାରା ସେ ବ୍ରହ୍ମତେଜକୁ ଧାରଣ କରିବା ସଙ୍ଗେ ସଙ୍ଗେ ଶୁଭ ଲଗ୍ନ ବିଚାର କରି ସେହି ତେଜକୁ ଅଦିତିଙ୍କ ଗର୍ଭରେ ସ୍ଥାପନ କଲେ । ଦେବୀ ଅଦିତିଙ୍କ ଗର୍ଭରେ ସେହି ବ୍ରହ୍ମତେଜ ଶୁକ୍ଳପକ୍ଷର ଚନ୍ଦ୍ରମାଙ୍କ ସଦୃଶ ବର୍ଦ୍ଧିବାକୁ ଲାଗିଲେ । ଯଜ୍ଞ ନିମିତ୍ତ ଅନ୍ୟ କୌଣସି-ଠାରୁ ଅଗ୍ନି ନ ଆଣି ଦୁଇଖଣ୍ଡ କାଠକୁ ଘଷି ଅଗ୍ନି ଉତ୍ପନ୍ନ କରାଯାଏ । ଠିକ୍ ସେହିପରି ଅଦିତି ଓ କଶ୍ୟପଙ୍କ ମିଳନ ଫଳରେ ବ୍ରହ୍ମତେଜ ଗର୍ଭ ମଧ୍ୟରେ ବୃଦ୍ଧି ପାଇବାକୁ ଲାଗିଲେ । ଅଗ୍ନି ପ୍ରଜ୍ଜ୍ୱଳିତ ହେବା ପୂର୍ବରୁ ସେଥିରୁ ଅଗ୍ନିକଣା-ମାନ ଯେପରି ନିର୍ଗତ ହୁଏ, ଠିକ୍ ସେହିପରି ଦେବୀ ଅଦିତିଙ୍କ ଅଙ୍ଗରୁ ଏକପ୍ରକାର ତେଜ ନିର୍ଗତ ହେଲା । ଗର୍ଭାବସ୍ଥାରେ ସାଧାରଣତଃ ସ୍ତ୍ରୀଲୋକମାନଙ୍କର ଦେହ ପାଣ୍ଡୁବର୍ଣ୍ଣ ଦେଖାଯାଇଥାଏ । କିନ୍ତୁ ଅଦିତିଙ୍କ ଶରୀର ସାଧାରଣ ଭାବରେ ପାଣ୍ଡୁର ନ ହୋଇ ଚମ୍ପକ ବର୍ଣ୍ଣ ହୋଇଥିଲା । ଧୀରେ ଧୀରେ ତାଙ୍କର ଗତି ମନ୍ଥର ହୋଇ ଆସିଲା । ମହର୍ଷି ପତ୍ନୀଙ୍କର ଅବସ୍ଥା ଲକ୍ଷ୍ୟ କରି ବାରମ୍ବାର ପ୍ରଶ୍ନ କଲେ—"ପ୍ରିୟେ, ତୁମର କ'ଣ ଖାଇବାକୁ ଇଚ୍ଛା ହେଉଛି କୁହ. ମୁଁ ତାହା ଏଠାରେ ନଥିଲେ ମଧ୍ୟ ଅନ୍ୟ ସ୍ଥାନରୁ ମଗାଇ ଦେବି । ଅବଶ୍ୟ ଆମ ଆଶ୍ରମରେ କୌଣସି ଦ୍ରବ୍ୟର ଅଭାବ ନାହିଁ । ତଥାପି ତୁମେ ତୁମର ଇଚ୍ଛା ପ୍ରକାଶ କର ।"

ଏହା ଶୁଣିବା ମାତ୍ରେ ଅଦିତି ଅତ୍ୟନ୍ତ ଲଜ୍ଜା ଓ ସଙ୍କୋଚର ସହିତ କହିଲେ—"ପ୍ରିୟତମ, ମୁଁ କୌଣସି ଦ୍ରବ୍ୟ ଚାହେଁ ନାହିଁ । କେବଳ ମୋର ଆବଶ୍ୟକ ଆପଣଙ୍କ କୃପା । ଆପଣ ମୋତେ ଏତେ ସ୍ନେହ କରନ୍ତି ଯେ, ସେଥିରେ ମୋତେ ଅକଳ୍ପନୀୟ ଆନନ୍ଦ ମିଳିଥାଏ ।" ଅଦିତି ସ୍ୱାମୀଙ୍କ ଆଗରେ କିଛି ନ କହିଲେ ମଧ୍ୟ ସାଙ୍ଗସାଥିଙ୍କ ପାଖରୁ ସୁଆଦିଆ ଜିନିଷ ମାଗି ମାଗି ଖାଉଥିଲେ । କଶ୍ୟପ ମହର୍ଷି ଏହା ଜାଣିପାରି ମନେ ମନେ ଭାବିଲେ 'ଗର୍ଭସ୍ଥ ସନ୍ତାନ ନିଶ୍ଚିତ ଭାବରେ ଗୋଟିଏ ଭିକାରି ହେବ ।'

ଅଦିତିଙ୍କଠାରୁ କେହି କିଛି ଉଧାର ନେଲେ, ସେ ଯେଉଁ ପାତ୍ରରେ ନେଇଥାଏ, ଦେବାବେଳକୁ ଗୋଟିଏ ବଡ଼ ପାତ୍ର ଦେଖାଇ କହୁଥିଲେ—"ମୁଁ ଏଇ ପାତ୍ରରେ ଦେଇଥିଲି" । କଶ୍ୟପ ଏହା ଜାଣିପାରି ଭାବିଲେ –"ଅଦିତିଙ୍କ ଗର୍ଭରେ ଥିବା ପିଲାଟି ନିଶ୍ଚିତ ଭାବରେ ଲୋଭୀ ହେବ ।" ଅଦିତି ସେହି ସମୟରେ ପିଲାମାନଙ୍କୁ ଖୁବ୍ ସ୍ନେହ କରୁଥିଲେ ଏବଂ ଶ୍ରେଷ୍ଠ ପିଲାଙ୍କ ପରି ଚାଲୁଥିଲେ । ତାହା ଲକ୍ଷ୍ୟ କରି ମହର୍ଷି କଶ୍ୟପ କହିଲେ—"ଅଦିତି, ତୁମ ଗର୍ଭସ୍ଥ ସନ୍ତାନଟି ଖୁବ୍ ଶ୍ରେଷ୍ଠ ହୋଇ ଜନ୍ମ ହେବ ।"

ଦିନେ କଶ୍ୟପ ଦେଖିଲେ ଯେ, ଅଦିତି ଗୋଟିଏ ଏକାନ୍ତ ସ୍ଥାନରେ ବସି ମାଟି ଖାଇ ଯାଉଛନ୍ତି । ତହୁଁ ସେ ବିରକ୍ତ ହୋଇ କହିଲେ—"ଛିଃ ଛିଃ । ତୁମେ ଏ କ'ଣ କରୁଛ ? ଆମ ଆଶ୍ରମରେ ଫଳମୂଳ ଯଥେଷ୍ଟ ରହିଛି । ତୁମେ ତାହା ନଖାଇ ମାଟି ଖାଇ ଯାଉଛ ।"

ଅଦିତି ନିତାନ୍ତ ଲଜ୍ଜିତା ହୋଇ କହିଲେ—"ପ୍ରଭୋ, ମୁଁ ଜାଣେନାହିଁ କାହିଁକି ମୋତେ ମାଟିର ଗନ୍ଧ ବେଶ୍ ଭଲଲାଗୁଛି ଏବଂ ମାଟି ଖାଇବାକୁ ମୋର ପ୍ରବଳ ଇଚ୍ଛା ଜାତ ହେଉଛି ।" ତାହା ଶୁଣି କଶ୍ୟପ ମନେ ମନେ ଭାବିଲେ— 'ଅଦିତିଙ୍କ ଭାବି ସନ୍ତାନଟି ପୃଥ୍ୱୀ ପାଇବା ପାଇଁ ଲୋଭ କରିବ । କେବଳ ସେତିକି ନୁହେଁ, ସେ ଚତୁରତାର ସହିତ ଠକବୃତ୍ତି ଆଚରଣ କରି ପୃଥ୍ୱୀ ଅପହରଣ କରିବ ।'

କଶ୍ୟପ ମହର୍ଷି ଅଦିତିଙ୍କ ଗର୍ଭସ୍ଥ ସନ୍ତାନ ସମ୍ବନ୍ଧରେ ଅନେକ ବିଷୟ ଜାଣିପାରୁଥିଲେ ହେଁ, ସବୁକଥା ଅଦିତିଙ୍କ ଆଗରେ ପିଟାଇ କହୁ ନଥିଲେ । ସବୁ ବିଷୟ ତାଙ୍କୁ କହିଦେଲେ, କାଳେ ସେ ମନ ଦୁଃଖ କରିବେ, କଶ୍ୟପ ନିଜ ମନର ଭାବନା ଅଦିତିଙ୍କ ଆଗରେ ପ୍ରକାଶ କରୁନଥିଲେ ।

ଧୀରେ ଧୀରେ ଅଦିତିଙ୍କ ଗର୍ଭ ବୃଦ୍ଧି ପାଇବାକୁ ଲାଗିଲା । ସୂର୍ଯ୍ୟୋଦୟ ପୂର୍ବରୁ ଉଦୟାଚଳ ଯେପରି ସ୍ୱର୍ଣ୍ଣ ଆଲୋକରେ ଉଦ୍ଭାସିତ ହୋଇଉଠେ, ଠିକ୍ ସେହିପରି ଅଦିତିଙ୍କ ଗର୍ଭ ଅତ୍ୟନ୍ତ ମନୋରମ ଦେଖାଗଲା । ତେଣୁ କଶ୍ୟପ ଜାଣି-ପାରିଲେ ଯେ, ଭଗବାନଙ୍କ ଆବିର୍ଭାବ ସମୟ ନିକଟତର ହୋଇ ଆସିଲାଣି ।

ଭାଦ୍ରବ ମାସର ଶୁକ୍ଳ ଦ୍ୱାଦଶୀ । ସେଦିନ ମଧ୍ୟାହ୍ନରେ ଅଭିଜିତ ମୁହୂର୍ତ୍ତ ଥିଲା ଏବଂ ସମସ୍ତ ଗ୍ରହ, ନକ୍ଷତ୍ର, ଯୋଗ ଓ କରଣ ଉଚ୍ଚସ୍ଥାନରେ ଅବସ୍ଥିତ ଥିଲେ । ବ୍ରହ୍ମା ଠିକ୍ ସେହି ସମୟରେ ସେଠାରେ ଉପସ୍ଥିତ ହୋଇ ଗର୍ଭକୁ ସ୍ତୁତି କଲେ ।

ବ୍ରହ୍ମା ସେଠାରୁ ଚାଲିଯିବାର ପରମୁହୂର୍ତ୍ତରେ ଅଦିତ ରୂପକ ପ୍ରାଚୀ ଗଗନରେ ସୂର୍ଯ୍ୟ-ସ୍ୱରୂପ ଶ୍ୟାମସୁନ୍ଦର ଶଙ୍ଖ, ଚକ୍ର, ଗଦା, ପଦ୍ମରେ ସୁଶୋଭିତ ହୋଇ ଆବିର୍ଭୂତ ହୋଇଥିଲେ । ତାଙ୍କ କଟୀରେ ପୀତାମ୍ବର ଶୋଭା ପାଉଥିଲା ଏବଂ କର୍ଣ୍ଣରେ ମକରକୁଣ୍ଡଳ ଦେଦୀପ୍ୟମାନ ହେଉଥିଲା । ମୁଖମଣ୍ଡଳର ଅପରୂପ ଶୋଭା ବିକଚ କମଳକୁ ପଦଦଳିତ କରୁଥିଲା । ତାଙ୍କ ଶରୀରର ଶୋଭା ଚତୁର୍ଦ୍ଦିଗକୁ ଝଲସାଇ ଦେଉଥିଲା । ସେହି ନବଜାତ ଶିଶୁର ବକ୍ଷରେ କୌସ୍ତୁଭ ଓ ବନମାଳା, କଣ୍ଠରେ କେୟୁର, କେଶପାଶରେ କମନୀୟ କିରୀଟ, କଟୀରେ କିଙ୍କିଣୀଯୁକ୍ତ ଅଣ୍ଟାପଟି ଏବଂ ପାଦରେ ନୂପୁର ଶୋଭା ପାଉଥିଲା । ସେହି ମନୋରମ ପରିବେଶର ଆମୋଦରେ ଭ୍ରମରମାନେ ଗୁଞ୍ଜୁ ଗୁଞ୍ଜୁ ଗୀତ ଗାଇ ତାତ୍କାଳୀନ ବାୟୁମଣ୍ଡଳକୁ ମୁଖରିତ କରିଦେଉ-ଥିଲେ ତା' ଶୁଣି ମନେ ହେଉଥିଲା—ସତେ ଯେପରି, ପ୍ରଭୁଙ୍କ ଆଗମନୀ ଜଣାଇ ଭ୍ରମରମାନେ ଜୟଘୋଷ କରୁଛନ୍ତି । ମହର୍ଷି ଅଗସ୍ତିଙ୍କ ଚୂଷ ନଳରେ ଯେପରି କ୍ଷଣକ ମଧ୍ୟରେ ସପ୍ତସାଗର ଶୁଖିଯାଇଥିଲା, ଠିକ୍ ତା'ର ବିପରୀତ ଘଟଣା ଘଟିଲା ମହର୍ଷି କଶ୍ୟପଙ୍କ ଗୃହରେ । ନବଜାତ ସନ୍ତାନ ସ୍ୱୟଂ ପ୍ରଭୁ ବିଶ୍ୱକସେନ ହୋଇଥିବାରୁ, ତାଙ୍କ ହୃଦସ୍ଥିତ କୌସ୍ତୁଭ ମଣିର ଆଲୋକରେ ଆଶ୍ରମରୁ ଅନ୍ଧକାର ଦୂର ହୋଇଗଲା । ମଙ୍ଗଳମୟଙ୍କ ଜନ୍ମ ସମୟରେ ସମଗ୍ର ଜଗତରୁ ମଙ୍ଗଳଘୋଷ ନିନାଦିତ ହୋଇଉଠିଲା । ସୁଗନ୍ଧ ଓ ଶୀତଳ ଗୁଣ ଧାରଣ କରି ବାୟୁ ମନ୍ଦ ମନ୍ଦ ହୋଇ ପ୍ରବାହିତ ହେବାକୁ ଲାଗିଲା । ଆକାଶ ସୁମନୋହର ଓ ଜଳାଶୟଗୁଡ଼ିକ ସୁନିର୍ମଳ ଜଳରେ ଜନମନ ହରଣ କରିବାକୁ ଲାଗିଲେ ଏବଂ ପ୍ରତ୍ୟେକ ପ୍ରାଣୀଙ୍କ ହୃଦୟ ଆନନ୍ଦରେ ଉଚ୍ଛୁଳ ଉଠିଲା । ଦେବଗଣଙ୍କ ହୃଦୟ କମଳ ବିକଶିତ ହୋଇ ଉଠିଲା ଏବଂ ଗୋରୂପା ପୃଥ୍ୱୀ ଆନନ୍ଦରେ ମତ୍ତ ହୋଇ ଅନ୍ୟାନ୍ୟ କାମଧେନୁଙ୍କ ଗହଣରେ ନାଚିବାକୁ ଲାଗିଲେ । ଗନ୍ଧର୍ବଗଣ ସୁଶ୍ରାବ୍ୟ ସଙ୍ଗୀତ ଗାନ କରିଉଠିଲେ ଏବଂ ଦେବଗଣ ସେହି ତାନରେ ବାଦ୍ୟ ବଜାଇଲେ ଏବଂ ଅପ୍ସରାବୃନ୍ଦ ନୂପୁରର କିଙ୍କଣରେ ସେହି ତାଳେ ତାଳେ ନୃତ୍ୟ କରି ସଙ୍ଗୀତର ଅପରୂପ ବିଭା ସୃଷ୍ଟି କଲେ । ଆଉ କେତେକ ସ୍ଥାନରେ ଶଙ୍ଖ, ବୀଣା ମର୍ଦ୍ଦନ, ଭେରୀ ମୃଦଙ୍ଗ ଓ କାଂସ୍ୟ ମନକୁ ମନ ବାଜିଉଠିଲା । ମୁନି, ଦେବ, ମନୁ, ସିଦ୍ଧ, ପିତୃ ଏବଂ ମରୁଦ୍‌ଗଣ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ । ଆକାଶସ୍ଥିତ ଦେବଗଣ କଳ୍ପବୃକ୍ଷରୁ ପୁଷ୍ପ ତୋଳି ଆଣି ଅଦିତଙ୍କ ଆଶ୍ରମ ଉପରେ ବୃଷ୍ଟି କରିବାକୁ ଲାଗିଲେ । ପ୍ରକୃତରେ କହିବାକୁ ଗଲେ, ଚରାଚର ଜଗତର ସମସ୍ତେ ବିଷ୍ଣୁଙ୍କ ଆବିର୍ଭାବରେ ମୋଦନମଗ୍ନ ହୋଇ ନାଚି ଉଠିଲେ ।

ମାତା ଅଦିତ ଚତୁର୍ଭୁଜ ବିଷ୍ଣୁଙ୍କୁ ସମ୍ମୁଖରେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଆନନ୍ଦମୟ ଉଲ୍ଲାସରେ ତାଙ୍କ ହୃଦୟ ନାଚି ଉଠିଲା । ହଠାତ୍ ସେ କିଂକର୍ତ୍ତବ୍ୟ

ବିମୂଢ଼ ହୋଇ ବସି ରହିଲେ । ମହର୍ଷି କଶ୍ୟପ ବିଷ୍ଣୁଙ୍କୁ ଦର୍ଶନ କରି ତାଙ୍କର ଜୟଗାନରେ ତନ୍ମୟ ହୋଇ ଉଠିଲେ । ତାହା ଲକ୍ଷ୍ୟ କରି ଭଗବାନ୍ ବିଷ୍ଣୁ ଚିନ୍ତାକଲେ—'ମୋର ପ୍ରକୃତ ସ୍ୱରୂପ ଦର୍ଶନ କରି ସମସ୍ତେ ତନ୍ମୟ ହୋଇ ଉଠିଛନ୍ତି ଅଦିତି ଓ କଶ୍ୟପ ମୋତେ ନିଜର ସନ୍ତାନ ବୋଲି ମନେ କରୁନାହାନ୍ତି, ତେଣୁ ଭଗବାନ୍ ନିଜର ଆଭୂଷଣକୁ ଗୋପନ କରି, ଗୋଟିଏ ବାମନ ରୂପ ଧାରଣ କରି ବାଳଲୀଳା ଆରମ୍ଭ କରିଦେଲେ ।

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍" ! ସେହି ବାମନସ୍ୱରୂପୀ ଶିଶୁଟିକୁ ଦେଖି ପିତାମାତା ଅତ୍ୟନ୍ତ ଆନନ୍ଦର ସହିତ ତା'ର ଜାତ ସଂସ୍କାର ପ୍ରବୃତ୍ତିରେ ଲାଗିପଡ଼ିଲେ ।"

## ଛପ୍ପୟ

"ରୂପ ଚତୁରଭୁଜ ଗଦା ଶଙ୍ଖ ଚକ୍ରାଦିକ ଧାରେ ।
ସୁନ୍ଦର ଶ୍ୟାମ ଶରୀର କମଳ ମୁଖ କଚ ଘୁଙ୍ଘୁରାରେ ।।
କର କଂକନ ଗଲ ମାଲ କରଧନୀ କଟିମହଁ ସୋହେ ।
ମଣି ମୁକ୍ତାମୟ ମୁକୁଟ ମୁନିଜନ କେ ମନକୁଁ ମୋହେ ।।
ଦର୍ଶନ କରି କଶ୍ୟପ ଅଦିତି, ସହସା ଭୌଂଚକ୍‌କେ ଭୟେ ।
ଲୀଳା ମହଁ ବାଧା ଲଖୀ, ପୁନି ବାମନ ବଟୁ ବନି ଗୟେ ।।"



# ବାମନଙ୍କ ଉପନୟନ

"ତଂ ବଟୁଂ ବାମନଂ ଦୃଷ୍ଟ୍ୱା ମୋଦମାନା ମହର୍ଷୟଃ ।
କର୍ମାଣି କାରୟାମାସୁଃ ପୁରସ୍କୃତ୍ୟ ପ୍ରଜାପତିମ୍ ॥"

(ଭା. ୮ । ୧୮ । ୧୩)

## ଛପ୍ପୟ

"ଜାତ କର୍ମ ସଂସ୍କାର ଭୟେ ପୂଜ ବାମନ ବାଢ଼େ ।
ଘୁଂଟୁକନ କେ ବଲ ଚଲେ ଲଗେ ପୁନ ହେବେ ଟାଢ଼େ ॥
ପଞ୍ଚ ବରସ କେ ଭୟେ ପିତା ଉପନୟନ କରାୟୋ ।
ରବି ସାବିତ୍ରି ଦଇ ଜନେଉ ଗୁରୁ ପହିନାୟୋ ॥
କଶ୍ୟପ ଦୀହ୍ନୀ ମେଖଲ, ଅଜିନ ଅବନ ଉତ୍ତମ ଦୟୋ ।
ମାତା ଦେିଂ କୌପୀନ ପଟ, ଦଣ୍ଡ ଚନ୍ଦ୍ରମା ଦେିଂ ଲୟୋ" ॥

ଅର୍ଥାତ୍ ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ! ସେହି ବାମନ ବଟୁଙ୍କୁ ଦେଖି ଋଷି ମହର୍ଷିଗଣ ଅତି ଆନନ୍ଦିତ ହୋଇଥିଲେ ଏବଂ ସେମାନେ କଶ୍ୟପ ମହର୍ଷିଙ୍କ ଗହଣ ନବଜାତ ଶିଶୁର ଜାତ ସଂସ୍କାର କରାଇଲେ ।

ଯେଉଁମାନଙ୍କ ଜୀବନ ସାର୍ବଜନୀନ ସେବାରେ ବ୍ୟୟିତ ହେବାପାଇଁ ଉଦ୍ଦିଷ୍ଟ ହୋଇଥାଏ, ସେମାନଙ୍କୁ ସାହାଯ୍ୟ କରିବା ପାଇଁ ସମସ୍ତେ ଆଗଭର ହୋଇଥାନ୍ତି । ପ୍ରାଚୀନକାଳର ପ୍ରଥା ଅନୁସାରେ ରାଜଚକ୍ରବର୍ତ୍ତୀ ଏବଂ ସାଧାରଣ ମୁନିଋଷିମାନେ ନବଜାତ ବାଳକଙ୍କୁ ପାଠ ପଢ଼ିବାଲାଗି ଗୁରୁ ଗୃହରେ ଛାଡ଼ି ଦେଇଥାନ୍ତି । ସେଠାରେ ସମସ୍ତେ ସହାବସ୍ଥାନ କରନ୍ତି । ଛାତ୍ରମାନେ ଗୁରୁଙ୍କ ପାଇଁ ଘର ଘର ବୁଲି ଭିକ୍ଷା ମାଗି ଆଣି ଗୁରୁଙ୍କଠାରେ ଅର୍ପଣ କରନ୍ତି ଏବଂ ଗୁରୁ ଆନନ୍ଦରେ ଯାହା ପ୍ରଦାନ କରନ୍ତି, ତାହା ଖାଇ ତୃପ୍ତି ଅନୁଭବ କରନ୍ତି । ଘରେ ହୁଏତ ସେମାନେ ଉତ୍ତମ ଦ୍ରବ୍ୟ ଖାଉଥାଆନ୍ତି ; କିନ୍ତୁ ଗୁରୁ ଗୃହରେ ସେ ଅଭ୍ୟାସ ରହେ ନାହିଁ । ସେମାନେ ଭିକ୍ଷା ଅନ୍ନ

ଖାଇ ଜୀବନ ନିର୍ବାହ କରନ୍ତି । ସେମାନେ ଅନ୍ୟର ଘରକୁ ନିଜର ଘର ବୋଲି ମନେକରନ୍ତି ଏବଂ ପ୍ରତ୍ୟେକ ଘରର ମାତାମାନେ ଗୁରୁଗୃହରେ ଥିବା ଶିଷ୍ୟମାନଙ୍କୁ ନିଜର ସନ୍ତାନ ବୋଲି ମନେକରନ୍ତି । କାରଣ ମାତାମାନେ ଜାଣନ୍ତି—ସେମାନଙ୍କ ପୁତ୍ରମାନେ ମଧ୍ୟ ଗୁରୁଗୃହରେ ଅନ୍ୟ ଘରୁ ଅନ୍ନ ମାଗିଆଣି ଖାଉଥିବେ । ଏହିପରି ଭାବରେ ବ୍ୟକ୍ତିଜୀବନକୁ ସମଷ୍ଟିଗତ ଜୀବନ ଭାବରେ ଶିଷ୍ୟମାନେ ପରିଣତ କରି ଗୁରୁଗୃହରେ ବାସକରନ୍ତି । ଏହାହିଁ ହେଉଛି—ଆର୍ଯ୍ୟଧର୍ମର ମୂଳ ଲକ୍ଷ୍ୟ । ସେହି ଆର୍ଯ୍ୟ ଧର୍ମର ସଂରକ୍ଷଣ ଲାଗି ବର୍ଣ୍ଣାଶ୍ରମ ଧର୍ମ ପାଳିତ ହୋଇ ଆସୁଛି ଏବଂ ଷୋଡ଼ଶ ସଂସ୍କାରର ପ୍ରଥା ପ୍ରଚଳିତ ରହିଛି । ଏହି ସମସ୍ତ ସଂସ୍କାରଠାରୁ ଉପନୟନ ସଂସ୍କାର ହେଉଛି ପ୍ରଧାନ । ବାଳକମାନେ ଏହି ସଂସ୍କାର ଫଳରେ 'ଦ୍ୱିଜ' ନାମରେ କଥିତ ହୁଅନ୍ତି । ଏହି ସଂସ୍କାର କେବଳ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କ ଗୃହରେ ପ୍ରାଚୀନ ପରମ୍ପରାରୂପେ ଚାଲିଆସୁଛି । ଯାହାର ଉପନୟନ ହୋଇ ନଥାଏ ଏବଂ ଯେ ଗୁରୁଗୃହରେ ଅଧ୍ୟୟନ କରି ନଥାଏ, ସେ ଦ୍ୱିଜ ନାମରେ କଥିତ ହୁଏନାହିଁ । ଗୁରୁଗୃହରେ ପ୍ରବେଶ କରାଇବା ପାଇଁ ଉପନୟନ ସଂସ୍କାର କରାଯାଇଥାଏ ।

ଶ୍ରୀ ଶୁକଦେବ କହିଲେ – "ହେ ପରୀକ୍ଷିତ ! ବାମନ ଭଗବାନ୍ ଦିନକୁ ଦିନ ବଢ଼ିବାକୁ ଲାଗିଲେ । ଅବଶ୍ୟ ତାଙ୍କର ଶରୀର ବୃଦ୍ଧି ପାଇଲା ନାହିଁ । କାରଣ ଭଗବାନ୍ ବିଷ୍ଣୁ ଶ୍ରେଷ୍ଠ ହେବା ପାଇଁ ସଂକଳ୍ପବଦ୍ଧ ହୋଇ ଅବତାର ଗ୍ରହଣ କରିଥିବାରୁ, ସେ ବଢ଼ନ୍ତେ ଅବା କିପରି ? ଗୋଟିଏ ସାଧାରଣ ବାମନ ଯେତିକି ବଢ଼ିବାର କଥା ସେ ସେତିକି ବଢ଼ିଥିଲେ । ଏହାପରେ ମହର୍ଷି କଶ୍ୟପ ପୁତ୍ରର ଯଜ୍ଞୋପବୀତ ସଂସ୍କାର କରାଇବାକୁ ଚିନ୍ତାକଲେ । ସେ ସାତବର୍ଷରେ ପଦାର୍ପଣ କରିବାମାତ୍ରେ କଶ୍ୟପ ନ୍ନେହୀ, ସମ୍ବନ୍ଧୀ, କୁଟୁମ୍ବ ଓ ପରିବାରବର୍ଗଙ୍କୁ ନିମନ୍ତ୍ରଣ କରି ଆଣିଲେ । ବାମନରୂପୀ ବିଷ୍ଣୁଙ୍କ ଅଭାବ ସମ୍ପର୍କରେ ପୂର୍ବରୁ ଶୁଣିଥିବାରୁ; ଇନ୍ଦ୍ର, ଚନ୍ଦ୍ର, ବରୁଣ ଓ କୁବେରାଦି ଦେବଗଣ ଓ ଯକ୍ଷଗଣ ତାଙ୍କ ଉପନୟନ ସଂସ୍କାର ଉତ୍ସବରେ ଯୋଗଦେବାଲାଗି କଶ୍ୟପଙ୍କ ଆଶ୍ରମରେ ଆସି ଏକତ୍ରିତ ହେଲେ । ବୃହସ୍ପତି ମଧ୍ୟ ପୋଥିପତ୍ର ଧରି ସେହି ସଂସ୍କାର କାର୍ଯ୍ୟର ଅଗ୍ରଣୀ ହେବାକୁ ଦ୍ରୁତ ଆସି ଉପସ୍ଥିତ ହୋଇଗଲେ । ବାମନଙ୍କ ଉପନୟନ ସଂସ୍କାର ଲାଗି ସୁନ୍ଦର ମଣ୍ଡପ ନିର୍ମାଣ କରାଗଲା । ପ୍ରଥମେ ଦିନ ଗୁରୁବୃହସ୍ପତି କଶ୍ୟପଙ୍କ ଦ୍ୱାରା ମାତୃକାପୂଜନ, ନାନ୍ଦୀମୁଖ ଶ୍ରାଦ୍ଧ ଆଦି କରାଇଲେ । ଦ୍ୱିତୀୟ ଦିନ ବ୍ରାହ୍ମଣ, ଋଷି ତଥା ବ୍ରହ୍ମର୍ଷିମାନେ ଆସି ଉପସ୍ଥିତ ହୋଇଗଲେ । ସମସ୍ତେ ସେହି ଉତ୍ସବରେ ଯୋଗଦାନ କରି ସଂସ୍କାର କର୍ମକୁ ଆନନ୍ଦ ମୁଖର କରାଇଲେ ।

ପ୍ରଥମେ ବଟୁବାମନଙ୍କୁ ବ୍ରହ୍ମର୍ଷିମାନଙ୍କ ସହିତ ଭୋଜନ କରାଗଲା । ତତ୍ପରେ ଅନ୍ୟାନ୍ୟ କର୍ମ ଆରମ୍ଭ ହେଲା । ତା'ପରେ ତାଙ୍କୁ ସ୍ନାନ କରାଇ ମଣ୍ଡପ

ଉପରେ ବ୍ରହ୍ମଚାରୀ ବେଶରେ ସଜ୍ଜିତ କରାଗଲା । ସେହି ସମୟରେ ମାତା ଅଦିତି ଖଣ୍ଡିଏ କୌପୀନ ଓ କନ୍ଥା ତାଙ୍କୁ ପ୍ରଦାନ କଲେ । ଏହାପରେ କଶ୍ୟପ ଖଣ୍ଡିଏ ମେଖଳା, ପୃଥ୍ୱୀ ଦେବୀ କୃଷ୍ଣାଜିନ, ଚନ୍ଦ୍ରମା ପଲାଶଦଣ୍ଡ, ବ୍ରହ୍ମା କମଣ୍ଡଳୁ, ସପ୍ତର୍ଷିଗଣ ବ୍ରହ୍ମଦଣ୍ଡ ଓ ପବିତ୍ରୀ, ସରସ୍ୱତୀ ଗୋଟିଏ ରୁଦ୍ରାକ୍ଷମାଳା ପ୍ରଦାନ କଲେ । ବ୍ରହ୍ମଚାରୀ-ବେଶ ପିନ୍ଧି ବଟୁବାମନ ଅତ୍ୟନ୍ତ ସୁନ୍ଦର ଦେଖାଗଲେ । ତତ୍ପରେ ଦେବଗୁରୁ ବୃହସ୍ପତି ସ୍ୱୟଂ ଯଜ୍ଞୋପବୀତ ନିର୍ମାଣ କରି ସପ୍ତର୍ଷିଙ୍କ ସାହାଯ୍ୟରେ ତାଙ୍କୁ ପିନ୍ଧାଇ ଦେଲେ । ତହୁଁ ପୂର୍ଣ୍ଣ ବ୍ରହ୍ମଚାରୀ ବେଶରେ ତାଙ୍କୁ ସଜ୍ଜିତ କରାଇ ଯଜ୍ଞକୁଣ୍ଡ ନିକଟକୁ ଅଣାଗଲା । ବଟୁବାମନ ମଣ୍ଡପ ଉପରେ ପ୍ରଜ୍ୱଳିତ ଯଜ୍ଞ କୁଣ୍ଡ ନିକଟରେ ବସି 'ପରିସମୂହନ' ଏବଂ ପରିସ୍ତରଣପୂର୍ବକ ଆରାଧନାକରି ଅଗ୍ନିରେ ଆହୁତି ପ୍ରଦାନ କଲେ । ଯଜ୍ଞ ପରେ ସବିତା ଦେବତା ତାଙ୍କୁ ଗାୟତ୍ରୀ ମନ୍ତ୍ର ପ୍ରଦାନ କଲେ ।

ଶ୍ରୀ ଶୁକଦେବ କହିଲେ—ହେ ରାଜନ୍ ! "ଏହି ସମସ୍ତ କାର୍ଯ୍ୟ ଶେଷ ହେବା ପରେ ଯକ୍ଷପତି କୁବେର ତାଙ୍କୁ ଗୋଟିଏ ଭିକ୍ଷାପାତ୍ର ପ୍ରଦାନ କଲେ । ଭିକ୍ଷାପାତ୍ରଟି ଧରି ବଟୁବାମନ ଭିକ୍ଷା କରିବାକୁ ବାହାରିଲେ । ତାଙ୍କର ବଟୁବାମନ-ସ୍ୱରୂପ ତୁଳନାରେ ବ୍ରହ୍ମଚାରୀର ବେଶଭୂଷଣ ଅଧିକ ହୋଇଗଲା । ସେ ଚାଲିବା ମାତ୍ରେ ତନୁଧରୁ ଗୋଟିଏ ଗୋଟିଏ ଖସିପଡ଼ିବାକୁ ଲାଗିଲା । ସେ କୌଣସିମତେ ସେଗୁଡ଼ିକ ସମ୍ଭାଳି ଭିକ୍ଷାଟନରେ ବାହାରିଲେ । ବଟୁବାମନ ପ୍ରଥମେ ଜଗଦମ୍ବିକା ଅନ୍ନପୂର୍ଣ୍ଣା ଦେବୀଙ୍କ ଆଗରେ ଭିକ୍ଷାପାତ୍ର ଧରି ଛିଡ଼ାହୋଇଗଲେ । ଦେବୀ ଅନ୍ନପୂର୍ଣ୍ଣା ତାଙ୍କ ପାତ୍ରଟିକୁ ପୂର୍ଣ୍ଣ କରିଦେଲେ । ଜନ୍ମରୁ ସେ ଲୋଭୀ ଥିବାରୁ ଭିକ୍ଷାପାତ୍ର ପୂର୍ଣ୍ଣ ହୋଇ-ଥିଲେ ହେଁ ସେ ସେଥିରେ ପରିତୃପ୍ତ ନ ହୋଇ, ସମସ୍ତଙ୍କ ପାଖରୁ ଭିକ୍ଷା ଗ୍ରହଣ କଲେ । ସେ ଭିକ୍ଷା ମାଗିସାରି ଦେବଗୁରୁ ବୃହସ୍ପତିଙ୍କ ନିକଟକୁ ଆସି, ତାଙ୍କର ହସ୍ତରେ ଭିକ୍ଷାପାତ୍ର ଓ ଅନ୍ୟାନ୍ୟ ଅର୍ଜିତ ବସ୍ତୁ ସମର୍ପଣ କରିଦେଲେ ।

ବୃହସ୍ପତି ବଟୁବାମନଙ୍କ ଭିକ୍ଷାପାତ୍ର ଦେଖି ହସି ହସି କହିଲେ—"ହେ ବଟୁବାମନ, ଏତିକ ଭିକ୍ଷାରେ ମୋର ଓ ଦେବତାମାନଙ୍କର ପେଟ ପୂରିବ କୁଆଡ଼ୁ ? ତୁମେ ଏପରି କିଛି ଭିକ୍ଷା ମାଗି ଆଣି ଦିଅ, ଯେଉଁଥିରେ ଆମର ଦୀର୍ଘକାଳପାଇଁ ଅସୁବିଧା ଦୂର ହୋଇଯିବ" ।

"ଏହା ଶୁଣିବା ମାତ୍ରେ ବଟୁବାମନ ଦଣ୍ଡ କମଣ୍ଡଳୁ ଧରି କହିଲେ—"ମୁଁ ଭିକ୍ଷାଟନ ପାଇଁ କାଶୀ ଓ କାଶ୍ମୀର ଯାତ୍ରା କରିବି" ।

ବୃହସ୍ପତି ହସି ହସି କହିଲେ—"କାଶୀ ଓ କାଶ୍ମୀରରେ ଅଛି କ'ଣ ? ସେଠାରେ ତୁମେ ଯେଉଁ ବିଦ୍ୟାଧ୍ୟୟନ କରିଥାଆନ୍ତ, ମୁଁ ଏଠାରେ ତୁମକୁ ସେହି ବିଦ୍ୟା ପଢ଼ାଇ ଦେବି । ଆଉ କିଛି ଭିକ୍ଷା ଆଣି ପ୍ରଦାନ କର ।"

ତାହା ଶୁଣି ବଟୁବାମନ କହିଲେ—"ଠିକ୍ କହିଛନ୍ତି ଗୁରୁଦେବ ! ନିଃସ୍ୱ ଦେବତାମାନେ ମୋତେ କ'ଣ ବା ଦେଇପାରିବେ ? ଆପଣ କୌଣସି ଦାନୀ ରଜା, ମହାରଜାଙ୍କ ନାମ କୁହନ୍ତୁ, ମୁଁ ତାଙ୍କର ପାଖକୁ ଯାଇ କିଛି ମାଗି ଆଣିବି ।"

ଏହାଶୁଣି ମନେ ମନେ ଆନନ୍ଦିତ ହୋଇ ବୃହସ୍ପତି କହିଲେ—"ବର୍ତ୍ତମାନ ତ୍ରିଲୋକରେ ଏକମାତ୍ର ଦାନୀ ହେଉଛନ୍ତି—ମହାରଜ ବଳି । ତାଙ୍କ ନିକଟରୁ କୌଣସି ଯାଚକ ନିରଶ ହୋଇ ଶୂନ୍ୟ ହସ୍ତରେ ଫେରିଆସେ ନାହିଁ ।"

"ତା'ହେଲେ, ଗୁରୁଦେବ, ସେଭଳି ମହାଦାନୀ ବଳିରଜା କେଉଁଠି ରହୁଛନ୍ତି ମୋତେ ତା'ର ସନ୍ଧାନ ଦିଅନ୍ତୁ ।"

"ରଜା ବଳି ତ୍ରିଭୁବନର ସ୍ୱାମୀ । ସ୍ୱର୍ଗରଜ୍ୟରେ ଅମରବତୀ ପୁରୀରେ ତାଙ୍କର ବାସସ୍ଥାନ । କିନ୍ତୁ ବର୍ତ୍ତମାନ ସେ ନର୍ମଦାନଦୀର ଉତ୍ତରତଟସ୍ଥିତ ଭୃଗୁକଚ୍ଛ ନାମକ ସ୍ଥାନରେ ଅଶ୍ୱମେଧ ଯଜ୍ଞ କରୁଛନ୍ତି । ତାଙ୍କ ପୁରୋହିତ ଶୁକ୍ରାଚାର୍ଯ୍ୟ ସ୍ଥାୟୀ ଇନ୍ଦ୍ରପଦ ଆଶାରେ ତାଙ୍କୁ ଶତ ଅଶ୍ୱମେଧ ଯଜ୍ଞର ଦୀକ୍ଷା ଦେଇଛନ୍ତି । ସେ ଆଜିଯାଏ ଅନେକଶତ ଯଜ୍ଞ ସମ୍ପୂର୍ଣ୍ଣ କରିସାରିଲେଣି । ଆଉ ଗୋଟିଏ ଯଜ୍ଞ ପୂର୍ଣ୍ଣ ହୋଇଗଲେ, ସେ ସ୍ଥାୟୀରୂପେ ଇନ୍ଦ୍ରପଦରେ ଅଧିଷ୍ଠିତ ହେବେ । ସେଇଥିପାଇଁ ସେ ମୁକ୍ତହସ୍ତରେ ଯାଚକମାନଙ୍କୁ ଦାନ ଦେଉଛନ୍ତି । ବ୍ରାହ୍ମଣମାନେ ଯାହା ମାଗୁଛନ୍ତି, ସେ ତାଙ୍କର ଧନ ଭଣ୍ଡାରକୁ ନିଃସ୍ୱକରି ସମସ୍ତ ପଦାର୍ଥ ଦାନ ଦେଉଛନ୍ତି ।"

ତାହା ଶୁଣି ବଟୁବାମନ କହିଲେ—"ମୁଁ ତାଙ୍କର ପାଖକୁ ଯାଉଛି । ସେ ମୋତେ ଦାନରେ ସନ୍ତୁଷ୍ଟ କଲେ, ତାଙ୍କର ଶତ ଅଶ୍ୱମେଧ ପୂର୍ଣ୍ଣହେବ ।"

ବଟୁବାମନଙ୍କ ଆଗ୍ରହ ଦେଖି ଦେବଗୁରୁ ମନେ ମନେ ଭାବିଲେ—'ଲୋଭୀ ବ୍ରାହ୍ମଣଙ୍କୁ କିଏ ଅବା ସନ୍ତୁଷ୍ଟ କରିପାରିବ ? ସାଧୁ ମାଦ ପ୍ରସାରଣ ନ୍ୟାୟରେ, ଧୀରେ ଧୀରେ ତାଙ୍କର ତୃଷ୍ଣା ବଢିଚାଲେ । ତାକୁ ପୂରଣ କରିବା ଆଦୌ ସହଜ ନୁହେଁ ।'

ସେ ପ୍ରକାଶ୍ୟରେ କହିଲେ—"ଠିକ୍ କହୁଛ ବଟୁବାମନ ! ତୁମପରି ଭିକ୍ଷୁକଟିଏ ପହଞ୍ଚିଗଲେ, ତାଙ୍କର ଅପୂର୍ବ ଯଜ୍ଞ ପରିପୂର୍ଣ୍ଣ ହେବ । ତୁମେ ଯଥାଶୀଘ୍ର ସମ୍ଭବ ଭୃଗୁକଚ୍ଛକୁ ପ୍ରସ୍ଥାନ କର ।"

ବଟୁବାମନ ତାହା ଶୁଣି କହିଲେ—"ହେ ଗୁରୁଦେବ, ମୁଁ ସେଠାକୁ ଯିବି କିପରି ? ଭୃଗୁକଚ୍ଛ ବହୁ ଦୂରପଥ, ମୁଁ ମଧ୍ୟ ମାର୍ଗ ଦେଖିନାହିଁ । ଆପଣ ମୋ' ସହିତ ଚାଲନ୍ତୁ ।"

ତାହା ଶୁଣି ବୃହସ୍ପତି କହିଲେ—"ହେ ବଟୁବାମନ, ଆପଣ ଅନ୍ତର୍ଯାମୀ । ଆପଣଙ୍କୁ କେଉଁ କଥା ଅଜଣା ? ତଥାପି ମୁଁ ଆପଣଙ୍କ ସହିତ ଭୃଗୁକଚ୍ଛ ପର୍ଯ୍ୟନ୍ତ ଯିବି, କିନ୍ତୁ ଯଜ୍ଞସ୍ଥଳକୁ ଯିବିନାହିଁ ।"

ବଟୁବାମନ ପଚାରିଲେ—"ଆପଣ ସେହି ଯଜ୍ଞସ୍ଥଳକୁ ଯିବେ ନାହିଁ କାହିଁକି ? ଯଜ୍ଞପ୍ରତି ଆପଣଙ୍କ ମନରେ ବିତୃଷ୍ଣା କାହିଁକି ?"

"ନାଃ...,ଯଜ୍ଞପ୍ରତି ମୋ' ମନରେ ଆଦୌ ବିତୃଷ୍ଣା ଜାତ ହେଉନାହିଁ । ମୁଁ ବ୍ରାହ୍ମଣ ହୋଇ ଯଜ୍ଞପ୍ରତି ବୀତସ୍ପୃହ ହୋଇପାରିବି କିପରି ? କିନ୍ତୁ ଶୁକ୍ରାଚାର୍ଯ୍ୟ ମୋତେ ଶ୍ରଦ୍ଧା କରନ୍ତି ନାହିଁ । କାରଣ ସେ ଅସୁରଙ୍କ ଗୁରୁ ଏବଂ ମୁଁ ଦେବଗୁରୁ । ତେଣୁ ଆମ ଦୁହିଁଙ୍କ ମଧ୍ୟରେ ଆନ୍ତରିକ ମିଳନ ହୋଇପାରେ ନାହିଁ ।"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍", "ଦେବଗୁରୁ ବୃହସ୍ପତି ବଟୁବାମନଙ୍କ ସହିତ ବଳିରାଜାଙ୍କ ଯଜ୍ଞସ୍ଥଳକୁ ପ୍ରସ୍ଥାନ କଲେ ।"

## ଛପ୍‌ପୟ

"ଧନ କୁବେର ନେ ଦୟୋ ପାତ୍ର ଭିକ୍ଷା କୋ ଖାରୀ ।
ମାଁ ଜଗଦମ୍ବା ଉମା ବହିସି କେ ଭିକ୍ଷା ଡାରୀ ॥
ଐସୀ ବାମନ ବନେ ଜଭ ତେଂ ଲେଉ ବାଢ଼ୟୋ ॥
ଜଗ ଠଗିବେ କେ ହେତୁ କପଟ କୋ ବେଷ ବନାୟୋ ॥
ଅଶ୍ୱମେଧ ନୃପ ବଲି କରେଂ, ଚଲେ ବ୍ରହ୍ମଚାରୀ ସୁନତ ।
ବିଶ୍ୱମ୍ଭର ଲଘୁ ବେଂ ଅଖିଲ, ପୃଥିବୀ ପଗ ପଗ ପେ ନମତ ॥"



# ବଳିଙ୍କ ଯଜ୍ଞରେ ବାମନ

"ଶ୍ରୁତ୍ୱାଶ୍ୱମେଧୈର୍ଯଜମାନ ମୂର୍ଜିତଂ
ବଳିଂ ଭୃଗୂଣାମୁପକଳ୍ପିତୈସ୍ତତଃ ।
ଜଗାମ ତତ୍ରାଖିଳସାର ସଂଭୃତୋ
ଭାରେଣ ଗାଂ ସନ୍ନମୟନ୍ ପଦେ ପଦେ ॥"

(ଭା. ୮ । ୧୮ । ୨୦)

## ଛପ୍‌ପୟ

"ଦଣ୍ଡ କମଣ୍ଡଳୁ ଲୟେ ଓଢ଼ ତନ ପୈ ମୃଗଛାଲ ।
ପହନ ମେଖଳା ମୁଂଜ ଚଲେ ବଲି କୀ ମଖଶାଲା ॥
ତେଜ ପୁଞ୍ଜ ସମ ଲଖେ ବିପ୍ର ବାମନ ବ୍ରତଧାରୀ ।
ସହସା ସବଇ ଉଠେ ଖଡ଼େ ଲଖି ବଟୁ ଲଟଧାରୀ ॥
ଉଠେ ପ୍ରଭାବିତ ବିପ୍ରଗନ, ଅଧିକ ମୋଦ ମନ ବଲି ଭୟୋ ।
ପଦ ପଖାର ପୁନ ଅର୍ଘ୍ୟ ଦେ, ବୈଠନ କୂଁ ଆସନ ଦୟୋ" ॥

ଅର୍ଥାତ୍ ଶ୍ରୀ ଶୁକଦେବ କହିଲେ – "ହେ ରାଜନ୍ ! ରାଜା ବଳି ତିନିଲୋକର ଐଶ୍ୱର୍ଯ୍ୟ ଠୁଳକରି ଭୃଗୁବଂଶୀ ବ୍ରାହ୍ମଣମାନଙ୍କ ଦ୍ୱାରା ଅଶ୍ୱମେଧ ଯଜ୍ଞ କରାଉଥିଲେ । ସେହି ଯଜ୍ଞଦ୍ୱାରା ସେ ବିଷ୍ଣୁଙ୍କ ଆରାଧନା ସମ୍ପନ୍ନ କରାଉଥିଲେ । ଏହା ଶୁଣି ବଟୁବାମନ ସର୍ବଶକ୍ତି ସମ୍ପନ୍ନ ହୋଇ, ନିଜ ପାଦ ଭାରରେ ପୃଥିବୀକୁ ଅବନମିତ କରାଇ ଯଜ୍ଞସ୍ଥାନକୁ ଗମନ କରିଥିଲେ ।

କସ୍ତୁରୀକୁ ଡବା ମଧ୍ୟରେ ବନ୍ଦକରି ରଖିଲେ, ତାହା ଲୁଚି ରହେ ନାହିଁ । ସୂର୍ଯ୍ୟ ଓ ଚନ୍ଦ୍ରମାଙ୍କ ଗ୍ରହଣ ଓ ଉପରାଗ ଚିରକାଳ ଲୁଚାଇ ରଖିପାରେ ନାହିଁ । ମଣିମୁକ୍ତାଦି ମୂଲ୍ୟବାନ୍ ରତ୍ନକୁ ଛିଣ୍ଡାକନା ମଧ୍ୟରେ ଲୁଚାଇ ରଖାଯାଇପାରେ ନାହିଁ ।

ତେଜସ୍ୱୀ ଲୋକମାନେ ମଳିନ ବେଶ ଧାରଣ କଲେ ମଧ୍ୟ ତାଙ୍କର ପ୍ରକୃତ ତେଜ ଲୁଚି ରହେ ନାହିଁ । ବରଂ ହୀନ ବେଶରେ ଭୂଷିତ ହେଲେ ତାଙ୍କର ମହତ୍ତ୍ୱ ବୃଦ୍ଧି ପାଇଥାଏ ।

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ପ୍ରାଣୀ ନିଜର ସ୍ୱାର୍ଥ ସମ୍ବନ୍ଧୀୟ ବିଷୟ ଶୀଘ୍ର ଅଭ୍ୟାସରେ ପରିଣତ କରିନିଏ । ଯେଉଁଥିରେ ତା'ର ସ୍ୱାର୍ଥ ନଥାଏ । ଅନେକ ପ୍ରୟାସ କରାଗଲେ ମଧ୍ୟ ସେ ବିଷୟରେ ତା'ର ଧାରଣା ଜାତ ହୁଏନାହିଁ । ବଟୁ ବାମନଙ୍କୁ ଉପନୟନ ସମୟରେ ଅଗ୍ନିହୋତ୍ର, ଗୁରୁପୂଜା, ସତ୍ୟ ଓ ସଦାଚାର ସମ୍ବନ୍ଧରେ ଅନେକ ଶିକ୍ଷା ଦିଆଯାଇଥିଲା । କିନ୍ତୁ ସେ ତାଙ୍କୁ କାର୍ଯ୍ୟରେ ଲଗାଇଲେ ନାହିଁ । ଭିକ୍ଷା ସମ୍ବନ୍ଧରେ ଉପଦେଶ ଦିଆଯିବାମାତ୍ରେ ସେ ଅତିଶୀଘ୍ର ସେଥିଲାଗି ପ୍ରସ୍ତୁତ ହୋଇଗଲେ । ସେ ଚକ୍ରବର୍ତ୍ତୀ ସମ୍ରାଟ୍‌ଙ୍କ ଆଗରେ ନିତାନ୍ତ ଶ୍ରେଷ୍ଠ ହୋଇ ହାତ ପାତିବାକୁ ବାହାରିପଡ଼ିଲେ । କିନ୍ତୁ ଯେଉଁ ଗର୍ଭରେ ବିଶ୍ୱବ୍ରହ୍ମାଣ୍ଡ ପୂରି ରହିଥିଲା, ସେ କାହା ଆଗରେ କ'ଣ ଅବା ମାଗିବେ ? ସେ ନିଜର ଶ୍ରେଷ୍ଠ ପାଦ ଦୁଇଟିକୁ ଭୂମିରେ ପକାଇ ଅଗ୍ରସର ହେବାମାତ୍ରେ ପୃଥିବୀ କମ୍ପିବାକୁ ଲାଗିଲା । ବିଶ୍ୱବ୍ରହ୍ମାଣ୍ଡ ପତି ବାମନରୂପ ଧାରଣ କରି ବଳିରାଜାଙ୍କୁ କପଟରେ ଠକିବାକୁ ବାହାରି ପଡ଼ିଲେ ।"

ଏହି ସମୟରେ ଶୌନକ ପଚାରିଲେ—"ହେ ସୂତ ମହର୍ଷି, ବାମନ ସାଧାରଣ ବ୍ରାହ୍ମଣଙ୍କ ପରି ବେଶ ଧାରଣ କରି ବଳିରାଜାଙ୍କ ନିକଟକୁ ନଯାଇ ଗୋଟିଏ କ୍ଷୁଦ୍ର ବାମନ ରୂପ ଧରିଲେ କାହିଁକି ?"

ଏହାଶୁଣି ସୂତ ମହର୍ଷି କହିଲେ—"ପ୍ରଭୁଙ୍କର ଲୀଳା ଅପରିମେୟ । ତଥାପି ସେ ସମ୍ବନ୍ଧରେ କେତେକ କାରଣ ମନରେ ଉଙ୍କିମାରେ । ବାମନ ରୂପ ଧାରଣ କରି ପ୍ରଭୁ ଜଗଦ୍‌ବାସୀଙ୍କୁ ଶିକ୍ଷା ଦେଇଥିଲେ—ଭିକ୍ଷା ଏକ ହୀନବୃତ୍ତି । ସର୍ବେଶ୍ୱର ହୋଇ ମୁଁ ଭିକ୍ଷା ମାଗିବାକୁ ଯିବାବେଳେ କପରି କ୍ଷୁଦ୍ର ବାମନ ବେଶ ଧାରଣ କରିଛି ।

ଆହୁରି ମଧ୍ୟ ବାମନ ରୂପ ଛଳରେ ପ୍ରଭୁ ବିଶ୍ୱବାସୀଙ୍କୁ ଜଣାଇ ଦେଇଛନ୍ତି ଯେ, ଭିକ୍ଷୁକ ଯେତେ ଦୃଢ଼ ଓ ଶକ୍ତିଶାଳୀ ହେଲେ ମଧ୍ୟ ତା'ର ମନ ଅତି କ୍ଷୁଦ୍ର । ସେ ସର୍ବଦା ଅନ୍ୟ ଆଗରେ ହାତ ପତାଇବାବେଳେ ନିଜେ ଶ୍ରେଷ୍ଠ ହୋଇଯାଏ ।

ଅନ୍ୟ ଗୋଟିଏ କାରଣ ହେଉଛି—ସେ ଯଦି ସାଧାରଣ ବ୍ରାହ୍ମଣଙ୍କ ପରି ରୂପ ଧାରଣ କରି ଯାଇଥାଆନ୍ତେ, ତେବେ ହୁଏତ ବଳିରାଜା ତାଙ୍କ ଇଚ୍ଛାନୁସାରେ ଦାନ ଦେଇ ନଥା'ନ୍ତେ । ବାମନ ହୋଇଯିବା ମାତ୍ରେ ରାଜାଙ୍କ ମନରେ ଦୟା ଜାତହେବା ସ୍ୱାଭାବିକ ।

ଆଉ ଗୋଟିଏ କାରଣ ହୋଇପାରେ—ତାଙ୍କ ବାମନ ରୂପ ଦେଖି ରାଜା ବଳି ଭାବିଥିବେ—'ତିନିପାଦ ଭୂମି ନେଇ ଏ କରିବ କ'ଣ ? ତେଣୁ ସେ ଅବଲୀଳା କ୍ରମେ ତାଙ୍କ ଇଚ୍ଛା ପୂରଣ କରିବା ଲାଗି ପ୍ରସ୍ତୁତ ହୋଇଯିବେ ।

ବଟୁରୂପୀ ବାମନଙ୍କ ମନରେ ସନ୍ଦେହ ରହିଥିଲା । କାଳେ ରାଜା ବଳି ତାଙ୍କ ଦାନ ପ୍ରାର୍ଥନା ଶୁଣି ପ୍ରତିଜ୍ଞା ଅନୁସାରେ ଦାନ ନ ଦେବେ । ସେ ବାମନ ହୋଇଥିବାରୁ ରାଣୀ ବିନ୍ଧ୍ୟାବଳୀଙ୍କ ନିକଟକୁ ଯାଇ ଦାନ ଦେବାପାଇଁ ତାଙ୍କୁ ପ୍ରବର୍ତ୍ତାଇ ପାରିବେ ।

ଭଗବାନ୍ ବାମନ ଆହୁରି ମଧ୍ୟ ଭାବିଥିବେ —'ଯଦି ମୁଁ ଗୋଟିଏ କ୍ଷୁଦ୍ରରୂପ ଧାରଣ କରିଯାଏ, ତେବେ ସମସ୍ତେ ମୋ' ବେଶ ଦେଖି ଆଶ୍ଚର୍ଯ୍ୟ ହୋଇଯିବେ ଏବଂ ମୋ' ରୂପଭେକରେ କୌତୂହଳ ପ୍ରକାଶ କରି, ଦାନ ମାଗିବା ସମ୍ବନ୍ଧରେ ଗୁରୁତ୍ୱପୂର୍ଣ୍ଣ ଭାବରେ କେହି ଧ୍ୟାନ ଦେବେ ନାହିଁ । ତା' ବ୍ୟତୀତ ଚତୁର୍ବେଦ, ଉପନିଷଦ୍ ଓ ଅନ୍ୟାନ୍ୟ ଶାସ୍ତ୍ରର ବ୍ୟାଖ୍ୟାନ ମୋ' ମୁହଁରୁ ଶୁଣି ସମସ୍ତେ ବିସ୍ମିତ ହୋଇ ମୋ'ର ଆଡ଼କୁ ଦୃଷ୍ଟି ନିଜତ୍ୱ ଭୁଲିଯିବେ । ତା'ହେଲେ ମୋ' ଉଦ୍ଦେଶ୍ୟ ସହଜରେ ପୂରଣ ହୋଇପାରିବ ଏବଂ ବିଜ୍ଞାପନ ଦେଇ ନିଜ ଦ୍ରବ୍ୟ ବିକ୍ରୟ କଲାପରି ମୁଁ ବେଶଭୂଷାର ବୈଚିତ୍ର୍ୟ ଦେଖାଇ ମୋ' ଉଦ୍ଦେଶ୍ୟ ସହଜରେ ସାଧନ କରିପାରିବି ।'

ସୂତମହର୍ଷି କହିଲେ "ହେ ଶୌନକ,—"ବାମନରୂପ ଧାରଣ କରିବା ମୂଳରେ ପ୍ରଭୁଙ୍କର ଏହିପରି ଭାବରେ ଅନେକ ଉଦ୍ଦେଶ୍ୟ ଲୁଚି ରହିଥିବା ପରି ମନେହୁଏ । ମୋଟ ଉପରେ କହିବାକୁ ଗଲେ, ଛଳନା ଦ୍ୱାରା ଦେବ କାର୍ଯ୍ୟ ସାଧନ କରିବା ଏକମାତ୍ର ଉଦ୍ଦେଶ୍ୟ ଥିଲା—ବଟୁବାମନଙ୍କର ।

ଶୁକମୁନି କହିଲେ—ହେ ରାଜନ୍ ! —"ନର୍ମଦାନଦୀର ତଟବର୍ତ୍ତୀ ଭୃଗୁକଚ୍ଛ ପ୍ରଦେଶରେ ବଟୁବାମନ ଯାଇ ପ୍ରବେଶ ହୋଇଗଲେ । ଦୂରରୁ ଲୋକମାନେ ଲକ୍ଷ୍ୟକରି ଦେଖିଲେ—ତେଜପୁଞ୍ଜ ଅଗ୍ନି ଗୋଟିଏ ଯଜ୍ଞଶାଳା ଆଡ଼କୁ ମାଡ଼ିଆସୁଛି । ସୂର୍ଯ୍ୟଙ୍କ-ପରି ତେଜସ୍ୱୀ ମାଣବକଙ୍କୁ ଦେଖି ଯଜ୍ଞଶାଳାରେ ଥିବା ସମସ୍ତ ବ୍ୟକ୍ତି ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ଯାଜ୍ଞିକ, ଯଜମାନ ଓ ଅନ୍ୟାନ୍ୟ ସଦସ୍ୟଗଣ ଭାବିଲେ—'ଏ' କିଏ ... ? ହଠାତ୍ କେତେକ ଲୋକ ଭାବିଲେ—'ସ୍ୱୟଂ ଅଗ୍ନିଦେବ ଯଜ୍ଞଶାଳାକୁ ଆସୁଛନ୍ତି କି ? ଆଉ କେହି କେହି ଭାବିଲେ—'ବଳିରାଜାଙ୍କ ଯଜ୍ଞର ପ୍ରଶଂସା ଶୁଣି ସୂର୍ଯ୍ୟଦେବ ମୂର୍ତ୍ତିମାନ୍ ସ୍ୱରୂପ ଧାରଣ କରି ସ୍ୱୟଂ ଯଜ୍ଞ ପରିଦର୍ଶନରେ ଆସିଥିବେ !

କିମ୍ବା ସର୍ବଦା ବାଳକୁମାର ସଦୃଶ ରୂପବାନ୍ ସନତ୍ କୁମାର ଆସୁଛନ୍ତି କି ? ଏହିପରି ଭାବରେ ଭୃଗୁବଂଶୀ ବ୍ରାହ୍ମଣଗଣ କେତେ କ'ଣ ଭାବନା କରିଗଲେ । ବଟୁବାମନଙ୍କ ବିଚିତ୍ର ବେଶ ସମସ୍ତଙ୍କ ମନକୁ ସହଜରେ ଆକର୍ଷିତ କରିପାରିଲା । ମୁଞ୍ଜମେଖଳା ? କୌପୀନ, ଦଣ୍ଡ, କୃଷ୍ଣ ମୃଗଚର୍ମ ତଥା ସ୍ୱର୍ଣ୍ଣସୂତ୍ର ସଦୃଶ ଯଜ୍ଞୋପବୀତ ଧାରଣ କରି ସେ ବିଚିତ୍ର ରୂପରେ ପରିଶୋଭିତ ହେଉଥିଲେ । ତାଙ୍କର ଏହି ବିଚିତ୍ର ବଟୁବେଶକୁ ଶିରର ଶ୍ରେଷ୍ଠ ଶ୍ରେଷ୍ଠ କେଶଗୁଚ୍ଛ ଅଧିକ ମନୋରମ ତଥା ଆକର୍ଷଣୀୟ କରି ତୋଳିଥିଲା ।

"ହେ ପରୀକ୍ଷିତ, ବଟୁବାମନଙ୍କ ପାଦ ବିକ୍ଷେପରୁ ମନେହେଉଥିଲା—ସତେ ଯେପରି, ସେ ପଥଶ୍ରମରେ ଅତୃପ୍ତ ହୋଇ ଉଠିଛନ୍ତି । ତେଣୁ ତାଙ୍କର ବେଶଭୂଷଣ-ଗୁଡ଼ିକ ବେଳେ ବେଳେ ଭୂଲୁଣ୍ଠିତ ହୋଇପଡ଼ୁଛି । ଯା'ହେଉ, ଛଳନାର ଅପୂର୍ବ ଚାତୁରୀ ପ୍ରଦର୍ଶନ କରାଇ, ପ୍ରଭୁ ବଟୁବାମନ ଯଜ୍ଞଶାଳାରେ ଉପସ୍ଥିତ ହୋଇଗଲେ । ତାଙ୍କ ଶରୀରରୁ ନିର୍ଗତ ପ୍ରଭାପୁଞ୍ଜରେ ଯାଜ୍ଞିକ ଭୃଗୁବଂଶୀ ବ୍ରାହ୍ମଣମାନଙ୍କ ଚକ୍ଷୁ ଝଲସି-ଉଠିଲା । ସେମାନେ କୌଣସି ବିଧିବିଧାନ ବା ମନ୍ତ୍ର ଉଚ୍ଚାରଣ ପ୍ରତି ଦୃଷ୍ଟି ନଦେଇ, ଅଗ୍ନି କୁଣ୍ଡରେ ଯନ୍ତ୍ରଚାଳିତ ପରି ଘୃତାହୁତି ଦେବାରେ ଲାଗିଗଲେ । ତା'ପରେ ଅଗ୍ନିର ଲେଲିହାନ ଶିଖା ଊର୍ଦ୍ଧ୍ୱକୁ ଜିହ୍ୱା ବିସ୍ତାର କରି, ସତେ ଅବା, ବଟୁବାମନଙ୍କୁ ସ୍ୱାଗତ ଜଣାଇଲା । ମହାରାଜ ବଳି ବଟୁବାମନଙ୍କ ଅଲୌକିକ ସାମାନ୍ୟ ରୂପଲାବଣ୍ୟରେ ବିମୋହିତ ହୋଇ, ତାଙ୍କର ଶ୍ରୀଚରଣ ତଳେ, ମନେ ମନେ ସର୍ବସ୍ୱ ଅର୍ପଣ କରିଦେଲେ ।

କ୍ଷଣକେ ମଧ୍ୟରେ ବଟୁବାମନଙ୍କ ଆଗମନ ସମ୍ବାଦ ସେ ଅଞ୍ଚଳରେ ବିଦ୍ୟୁତ୍-ବେଗରେ ପ୍ରଚାରିତ ହୋଇଗଲା । ଦଳ ଦଳ ହୋଇ ସ୍ତ୍ରୀ ପୁରୁଷ ସେହି ଅପୂର୍ବ ଲାବଣ୍ୟମୟ ବାମନଙ୍କ ଦର୍ଶନଲାଗି ଯଜ୍ଞଶାଳାର ଚତୁଃପାର୍ଶ୍ୱରେ ରୁଣ୍ଡ ହୋଇଗଲେ । ଏବଂ ତାଙ୍କର ବିସ୍ମୟକାରୀ ରୂପକୁ ଦେଖି ଆତ୍ମବିସ୍ମୃତ ହୋଇଉଠିଲେ ।

ସ୍ୱୟଂ ଯଜମାନ ମହାରାଜ ବଳି ଆଗେଇଆସି, ସୁବର୍ଣ୍ଣ ଝରୀରେ ତାଙ୍କ ପାଦ ଧୋଇଦେଲେ ଏବଂ ତାଙ୍କୁ ସୁବାସିତ ଅର୍ଘ୍ୟ ପ୍ରଦାନପୂର୍ବକ ସୁକୋମଳ ଆସନରେ ଉପବେଶନ କରାଇଲେ । ତା'ପରେ ବଳି ଶାସ୍ତ୍ରୋକ୍ତ ବିଧାନରେ ବଟୁବାମନଙ୍କୁ ମନ୍ତ୍ର-ପାଠ କରି ଷୋଡ଼ଶ ଉପଚାରରେ ଗନ୍ଧ, ପୁଷ୍ପ, ବସ୍ତ୍ର, ଅଳଙ୍କାର ଆଦି ପ୍ରଦାନ କଲେ ।

ଉପଚାରରେ ପୂଜା ଓ ଆଳତି ସାରି ମହାରାଜ ବଳି ବାମନଙ୍କ ପାଦୋଦକ ନେଇ ଶ୍ରଦ୍ଧା ଓ ଭକ୍ତିର ସହିତ ଶିରରେ ଲଗାଇଲେ ଏବଂ ପରିଶେଷରେ ବିନୀତ ଭାବରେ ତାଙ୍କ ସ୍ତୁତିପାଠ କଲେ ।

ଶ୍ରୀ ଶୁକଦେବ କହିଲେ—ହେ ରାଜନ୍, ! "ବାମନଙ୍କ ପାଦ ଧୌତକରି, ପାଦୋଦକ ଶିରରେ ଧାରଣ କରିବାବେଳେ, ବଳି ମନେ ମନେ ଭାବିଲେ—ସତେ ଅବା, ସେ ଗଙ୍ଗୋଦକ ଶିରରେ ଧାରଣ କରୁଛନ୍ତି । ସେ ତାଙ୍କର ଯଜ୍ଞପୂର୍ତ୍ତି ଉତ୍ସବରେ ଯୋଗ୍ୟ ଅତିଥିଙ୍କୁ ପାଇ ହର୍ଷ ଓ ଉଲ୍ଲାସରେ ଉଲ୍ଲସିତ ହୋଇ ତାଙ୍କ ଅଭିଳାଷ ପୂରଣ ଲାଗି ଉଦ୍ୟତ ହେଲେ ।"

## ଛପ୍ପୟ

"ବିଧିବତ୍ ପୂଜା କରି ହୃଦୟ ଫୂଲେ ନ ସମାୟେ ।
ପାଦୋଦକ ସିର ଧାରି ପାନ କରି ଅତି ହରଷାୟେ ॥
ରାନୀ ପୁନି ପୁନି ଲଖେଁ ରୂପ ପୈ ବଲି ବଲି ଜାଇଂ ।
ଚରନାମୃତ କରି ପାନ କହେଁ ଗଙ୍ଗା ଘର ଆଇଂ ॥
ତନୁ ପୁଲକିତ ମନ ମୋଦ ଯୁତ, ପାତ୍ର ନିରଖି ଅତିଶୟ ମଗନ ।
ବହୁ ସ୍ୱାଗତ ସତ୍କାର କରି, ଦାନୀ ବଲି ବୋଲେ ବଚନ" ॥



# ବଳି ଓ ବାମନ

"ଯଦ୍ ଯଦ୍ ବଟୋ ବାଞ୍ଛସି ତତ୍ ପ୍ରତୀଚ୍ଛ ମେ
ତ୍ୱାମର୍ଥିନଂ ବିପ୍ରସୁତାନୁତର୍କୟେ ।
ଗାଂ କାଞ୍ଚନଂ ଗୁଣବଦ୍ ଧାମ ମୃଷ୍ଟମ୍
ତଥାନ୍ନପେୟମୁତ ବା ବିପ୍ର-କନ୍ୟାମ୍" ॥

(ଭା. ୮।୧୮।୩୨)

## ଛପ୍ପୟ

"କହୋ ବିପ୍ରସୂତ, କୃପାଦାସ ପୈ କୀନ୍ହୀକୈସେ ।
ହେ ଅତି ଦୁର୍ଲଭ ଦରଶ ବିନା କାରଣ ବଟୁ ଐସେ ॥
ମେରେ ମନ ଅନୁମାନ ଆପକଛୁ ମାଁଗନ ଆୟେ ।
କିନ୍ତୁ ନିରଖି ଦ୍ୱିଜ ଭୀର ବାଲ ମନ ମହଁ ସକୁଚାୟେ ॥
ମନ ଢ଼ଂଗ କଛୁ ନ ଅଦେୟ ହୈ, ଶଙ୍କା ତଜି ଦ୍ୱିଜବର ! କହହୁ ।
ଅନ୍ନପାନ ଧନଧାନ୍ୟ ପଟ, ଜୋ ଇଚ୍ଛା ସୋଇ ଗହହୁ" ॥

ଅର୍ଥାତ୍ ମହାରାଜ ବଳି ବଟୁ ବାମନଙ୍କୁ କହୁଛନ୍ତି—'ହେ ବିପ୍ର ! ତୁମେ କିଛି ମାଗିବାପାଇଁ ମୋ' ନିକଟକୁ ଆସିଛ ବୋଲି ମୋର ମନେହେଉଛି । ତୁମେ ବ୍ରାହ୍ମଣ କୁମାର, ତୁମର ଯାହା ଇଚ୍ଛା ତାହା ମୋ' ଠାରେ ପ୍ରାର୍ଥନା କର । 'ଗୋ, ସୁବର୍ଣ୍ଣ ସୁନ୍ଦର ଦ୍ରବ୍ୟ ସହିତ ଘରଦ୍ୱାର, ପବିତ୍ର ସୁସ୍ୱାଦୁ ଅନ୍ନ ଜଳ ଅଥବା ବିବାହ ପାଇଁ ବ୍ରାହ୍ମଣ କନ୍ୟା ତୁମର ଆବଶ୍ୟକ, ମୋତେ କୁହ ।

ମନସ୍ୱୀ ଲୋକମାନେ ସତ୍‌ପାତ୍ରକୁ ଦେଖିଲେ ତାଙ୍କୁ ଯେ କୌଣସି ବସ୍ତୁ ଦେବାପାଇଁ ପ୍ରସ୍ତୁତ ହୋଇଯାଆନ୍ତି । ପୃଥ୍ୱୀ, ଜଳ, ତେଜ, ବାୟୁ, ଓ ଆକାଶ ଏହି ପାଞ୍ଚଟି ଦ୍ରବ୍ୟ ପ୍ରଭୁ ଭଗବାନ୍‌ଙ୍କ ଦ୍ୱାରା ନିର୍ମିତ । ଏହାକୁ ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟ କେହି କରିପାରନ୍ତି ନାହିଁ । ପଞ୍ଚଭୂତର ନିର୍ମାଣ କେବଳ ଭୂତଭାବକ

ପରମେଶ୍ୱର ଅଟନ୍ତି । ଏହି ସଂସାରର ପ୍ରତ୍ୟେକ ବସ୍ତୁ ସେହି ପଞ୍ଚଭୂତରୁ ନିର୍ମିତ ହୋଇଛି । ଆମର ଶରୀର ଏହି ପଞ୍ଚଭୂତରେ ନିର୍ମିତ ଏବଂ ଦିନେ ଏହି ଶରୀର ଏହିଠାରେ ନିଶ୍ଚଳ ହୋଇ ରହିଯିବ । ଦେହ ନଶ୍ୱର ହୋଇଥିବାରୁ, ପଞ୍ଚଭୂତରେ ନିର୍ମିତ ପ୍ରତ୍ୟେକ ବସ୍ତୁ ଅବିନଶ୍ୱର କିପରି ହୋଇପାରିବ ? ଯଦି ଏହି ନଶ୍ୱର ଦ୍ରବ୍ୟ-ମାନଙ୍କୁ ଦାନଦେବା ଫଳରେ ଅବିନାଶୀଙ୍କର ପ୍ରାପ୍ତି ହୋଇପାରେ, ତେବେ କେଉଁ ବୁଦ୍ଧିମାନ୍ ବ୍ୟକ୍ତି ଏହା ନ କରିବ ? ସେହି ହେଉଛି ପ୍ରକୃତ ପାତ୍ର, ଯେଉଁଥିରୁ କୌଣସି ଦ୍ରବ୍ୟ କ୍ଷୟ ବା କ୍ଷରିତ ହୁଏନାହିଁ ତେଣୁ ପରମେଶ୍ୱର ହେଉଛନ୍ତି—ପ୍ରକୃତ ପାତ୍ର । ସେ ଆଶ୍ରିତ ପ୍ରାଣୀଙ୍କୁ ସବୁବେଳେ ଧରି ରଖନ୍ତି, ତାକୁ ଝରିଯିବା ଲାଗି କେବେହେଲେ ଛାଡ଼ି ଦିଅନ୍ତି ନାହିଁ । ଯେଉଁ ବସ୍ତୁ ଭଗବାନ୍‌ଙ୍କୁ ଅର୍ପିତ ହୋଇଯାଏ, ତାହା କ୍ଷୟଶୀଳ ହେଲେ ମଧ୍ୟ ଅକ୍ଷୟ ହୋଇଥାଏ । ତେଣୁ ନିଜର ସର୍ବସ୍ୱ ସତ୍-ପାତ୍ରରେ ଅର୍ପିତ ହେବା ଉଚିତ ।

ଶ୍ରୀ ଶୁକଦେବ କହିଲେ—ହେ ରାଜନ୍, ମହାରାଜ ବଳି ବଟୁବାମନଙ୍କ ପୂଜା ଶେଷକରି, ତାଙ୍କୁ କିଛି ମାଗିବା ପାଇଁ ଅନୁରୋଧ କରି କହିଲେ—"ହେ ବ୍ରହ୍ମନ୍ ! ଆପଣ ଏହି ଦୀନକୁ ଦର୍ଶନ ଦେଇ ଅନୁଗ୍ରହ କରିଅଛନ୍ତି । ମୋର ଏହି ଯଜ୍ଞଭୂମି ଆପଣଙ୍କ ପଦରଜରେ ପବିତ୍ର ହୋଇଛି । କି ପ୍ରକାର ମୁଁ ଆପଣଙ୍କ ସେବା କରିବି, ତାହା ମୋତେ ଜଣାଯାଉନାହିଁ ।

ଏହାଶୁଣି ବାମନ କହିଲେ—"ମହାରାଜ ! ମୁଁ ଗୋଟିଏ ଭିକ୍ଷୁକ ବ୍ରାହ୍ମଣ । ଆପଣଙ୍କ ଯଶ ତ୍ରିଭୁବନରେ ବ୍ୟାପି ଯାଇଛି । ଆପଣଙ୍କ ପ୍ରଶଂସା ଶୁଣି ଜଣେ ସାଧାରଣ ଦର୍ଶକ ଭାବରେ ମୁଁ ଏଠାକୁ ଆସିଯାଇଛି ।"

ବଳିରାଜା ବିନମ୍ର ଭାବରେ କହିଲେ—"ମହାଶୟ, ମୁଁ ଆପଣଙ୍କୁ ଜଣେ ସାଧାରଣ ଦର୍ଶକ ବୋଲି ଭାବୁନାହିଁ । ଆପଣ ମଧ୍ୟ ମନୁଷ୍ୟ ବୋଲି ମୋର ମନେ ହେଉନାହିଁ । ମୋର ମନେ ହେଉଛି—ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ତପସ୍ୟା ମୂର୍ତ୍ତିମାନ୍ ହୋଇ ମୋ' ଯଜ୍ଞକୁ କୃତାର୍ଥ କରିବା ପାଇଁ ଏଠାକୁ ଆପଣଙ୍କ ସ୍ୱରୂପରେ ଆସିଛି ।"

ବଟୁବାମନ କହିଲେ—"ରାଜନ୍, ଆପଣ ଧର୍ମାତ୍ମା । ଅତିଥିଙ୍କୁ କିପରି ସତ୍କାର କରାଯାଏ, ତାହା ଆପଣ ଜାଣନ୍ତି । ତେଣୁ ଆପଣ ଶିଷ୍ଟାଚାରର ସହିତ କଥାବାର୍ତ୍ତା କରୁଛନ୍ତି । ବେଶ୍ ଭଲକଥା, ଆପଣ ମୋ' ପ୍ରତି ଯଥେଷ୍ଟ ଶିଷ୍ଟାଚାର ପ୍ରଦର୍ଶନ କରିସାରିଲେଣି । ଏଣିକି ଆପଣ ଯାଇ ଦେବ, ବ୍ରାହ୍ମଣ, ଋଷି ଓ ପିତୃଗଣଙ୍କୁ ତର୍ପଣ କରି ଯଜ୍ଞର ସଫଳତା କାମନା କରନ୍ତୁ ।"

ଏହାଶୁଣି ବଳିରାଜା କହିଲେ—"ହେ ବ୍ରହ୍ମନ୍, ଆପଣଙ୍କ ଦେବଦୁର୍ଲ୍ଲଭ ସ୍ୱରୂପର ଦର୍ଶନ ହୋଇଯିବା ପରେ, ଆଉକିଛି କରିବାର ଆବଶ୍ୟକତା ନାହିଁ । ମୋର ମନେ ହେଉଛି—ଆପଣଙ୍କ ପବିତ୍ର ପାଦ ପ୍ରକ୍ଷାଳନ କରିବା ପରେ, ମୋର ସମସ୍ତ ଦୁଷ୍କୃତ ନଷ୍ଟହୋଇ ଯାଇଛି । ମୁଁ ଯଜ୍ଞର ସମସ୍ତ ଫଳ ଲାଭକରି ସାରିଲିଣି । ଆପଣଙ୍କ ପାଦୋଦକ ଶିରରେ ଧାରଣ କରି ମୁଁ ସମସ୍ତ ତୀର୍ଥଜଳରେ ସ୍ନାନ କରିବାର ଫଳ ପାଇସାରିଲିଣି । ଆପଣଙ୍କୁ ଅର୍ଚ୍ଚନା କରି ମୁଁ ସମସ୍ତ ଋଷି ଓ ପିତୃଗଣଙ୍କୁ ସନ୍ତୁଷ୍ଟ କରିସାରିଲିଣି । ଆପଣଙ୍କ ପାଦରଜରେ ବସୁମତୀ ପବିତ୍ର ହୋଇଛନ୍ତି । ମୁଁ ଆପଣଙ୍କୁ ଗୋଟିଏ ବିଷୟ ପଚାରିବାକୁ ଚାହୁଁଛି । କିନ୍ତୁ ସେଭଳି ପ୍ରଶ୍ନ କରିବା ଲାଗି ମୋ' ମନରେ ସଙ୍କୋଚ ଜାତ ହୋଇଛି ।"

"ନା ରାଜନ୍, ସେପରି ସଙ୍କୋଚ କରିବାର କୌଣସି କାରଣ ନାହିଁ । ଆପଣ ନିଃସଙ୍କୋଚରେ ମୋତେ ସବୁକିଛି ପଚାରି ପାରନ୍ତି ।"

"ବ୍ରହ୍ମନ୍", ବଳିରାଜା କହିଲେ—"ମୋର ମନେହେଉଛି ଆପଣ ମୋତେ କିଛିନା କିଛି ମାଗିବା ପାଇଁ ଏଠାକୁ ଆସିଛନ୍ତି ।"

ବଟୁବାମନ ହସି ହସି କହିଲେ—"ମହାରାଜ, ଆପଣ ଏହା କିପରି ଜାଣିଲେ ?"

ବଳିରାଜା ଅତ୍ୟନ୍ତ ବିନୀତ ଭାବରେ କହିଲେ—"ମୁଁ ଅବଶ୍ୟ ଦୃଢ଼ତାର ସହିତ କହି ପାରୁନାହିଁ, କିନ୍ତୁ ମୋର ଅନୁମାନ, ଆପଣ କୌଣସି ସଫଳ ପ୍ରୟୋଜନ ନିମିତ୍ତ ଏଠାକୁ ଆସିଛନ୍ତି । ଏହା ଆପଣଙ୍କ ବ୍ରାହ୍ମଣ ବେଶରୁ ବେଶ୍ ଜଣାପଡ଼ୁଛି । ବ୍ରାହ୍ମଣ ଭିକ୍ଷୁକ ହୋଇ ଜନ୍ମଗ୍ରହଣ କରିଛି । ସାଂସାରିକ ପ୍ରପଞ୍ଚ ତାକୁ ଗ୍ରାସକରେ ନାହିଁ । ସେ ଯଦି କେଉଁଠାକୁ ଯାଏ, ତେବେ କିଛି ମାଗିବା ଉଦ୍ଦେଶ୍ୟରେ ହିଁ ଯାଇଥାଏ । ଦ୍ୱିତୀୟରେ ଆପଣ ବ୍ରହ୍ମଚାରୀ ବେଶ ଧାରଣ କରିଛନ୍ତି ତାହାହିଁ ତା'ର ପ୍ରମାଣ । ବ୍ରହ୍ମଚାରୀମାନେ ନିତ୍ୟକର୍ମ ଓ ଅଧ୍ୟୟନରୁ ଅବକାଶ ପାଆନ୍ତି ନାହିଁ । କେବଳ ଅତ୍ୟନ୍ତ ପ୍ରୟୋଜନ ହେଲେ ସେମାନେ ଅନ୍ୟ ସ୍ଥାନକୁ, ବିଶେଷତଃ ରାଜଦ୍ୱାରକୁ ଯାଇଥାଆନ୍ତି । ଆହୁରି ମଧ୍ୟ ବ୍ରାହ୍ମଣମାନଙ୍କର ଆଜୀବିକା ହେଉଛି—ଅଧ୍ୟାପନ, ଯଜ୍ଞ ଓ ଦାନଗ୍ରହଣ । କିଛି ପ୍ରାପ୍ତିର ଆଶାନେଇ ବ୍ରାହ୍ମଣ ଯଜ୍ଞସ୍ଥଳରେ ଉପସ୍ଥିତ ହୁଏ । ଏହି ସମସ୍ତ କାରଣରୁ ମୁଁ ଏ'ପ୍ରକାର ଅନୁମାନ କରିଛି । ଏହା କ'ଣ ମିଥ୍ୟା ପ୍ରତୀତ ହେଉଛି ?"

ବଳିରାଜାଙ୍କ ଯୁକ୍ତି ଶୁଣି ବଟୁବାମନ ମନେ ମନେ ଲଜ୍ଜିତ ହୋଇ କେବଳ ଇଙ୍ଗିତରେ ସ୍ୱୀକୃତି ଜଣାଇଦେଲେ ।

ମହାରାଜ ବଳି ପ୍ରଥମ ଦର୍ଶନରେ ବଟୁବାମନଙ୍କ ପ୍ରତି ଆକୃଷ୍ଟ ହୋଇ-ଯାଇଥିଲେ । ତାଙ୍କ ଇଙ୍ଗିତରୁ ସେ ବଟୁବାମନଙ୍କ ମନୋଭାବ ଜାଣିପାରି ସାହସର ସହିତ କହିଲେ—"ବ୍ରାହ୍ମଣ, ଲଜ୍ଜା କିମ୍ବା ସଙ୍କୋଚ କରିବାର କୌଣସି କାରଣ ନାହିଁ । ଆପଣ ବ୍ରହ୍ମଚାରୀ ଏବଂ ସତ୍ପାତ୍ର ! ଆଜି ମୋର ଅହୋ ଭାଗ୍ୟ; ଆପଣଙ୍କ ପରି ଜଣେ ସୁଯୋଗ୍ୟ ବ୍ୟକ୍ତି ମୋ ନିକଟକୁ କିଛି ମାଗିବା ଲାଗି ଆସିଛନ୍ତି । ବ୍ରାହ୍ମଣମାନଙ୍କ କୃପାରୁ ମୋର କିଛି ଅଭାବ ନାହିଁ । ଆପଣ ଯାହା ଇଚ୍ଛା, ତାହା ମାଗିପାରନ୍ତି । ଯଦି ଆପଣ ରାଜ୍ୟ ପ୍ରାର୍ଥନା କରନ୍ତି, ମୁଁ ଅକାତରେ ତାହା ଅର୍ପଣ କରିବି ।"

ବଟୁବାମନ ହସି ହସି କହିଲେ—"ମହାରାଜ, ମୁଁ ଗୋଟିଏ ଛୋଟ ପିଲା; ଆପଣଙ୍କ ରାଜ୍ୟ ନେଇ ମୁଁ କ'ଣ କରିବି ?"

"ତା'ହେଲେ…", ବଳିରାଜା କହିଲେ—"ଆପଣଙ୍କର ଯାହା ମାଗିବାକୁ ଇଚ୍ଛା ହେଉଛି, ତାହାହିଁ ପ୍ରକାଶ କରନ୍ତୁ । ଆପଣ ଛୋଟପିଲା । ପିଲାମାନେ ଦୁଗ୍ଧ-ପାନ ପାଇଁ ଅଧିକ ମନଯୋଗୀ ହୁଅନ୍ତି । ସେଥିପାଇଁ ପାଞ୍ଚ, ଦଶ, ପଚାଶ କିମ୍ବା ଶହେ, ଦୁଇଶହ, ଏପରିକି ଲକ୍ଷେ ଦୁଇଲକ୍ଷ ଗାଈ ଆପଣ ମାଗିପାରନ୍ତି । ମୁଁ ସଦ୍ୟ ଦୁଗ୍ଧବତୀ ଧେନୁ ଦାନ କରିବା ଲାଗି ପ୍ରସ୍ତୁତ ଅଛି ।"

ବଟୁବାମନ କହିଲେ—ମହାରାଜ ! "ମୁଁ ଗାଈମାନଙ୍କୁ ନେଇ କୁଆଡ଼େ ଯିବି ? ଆପଣ ଦେଖୁଛନ୍ତି, ମୁଁ ମୋ ବସ୍ତ୍ରଭୂଷଣ ଧରି ଚାଲିପାରୁ ନାହିଁ । ସେଥିରେ ପୁଣି ଗାଈ ଦାନ ନେଇ କରିବି କଅଣ ?"

ବଳିରାଜା ଅତ୍ୟନ୍ତ ଉତ୍ସାହର ସହିତ କହିଲେ—"ଆପଣ ଗାଈ ନେଇ ନପାରନ୍ତି, କିନ୍ତୁ ଯଥେଷ୍ଟ ସୁବର୍ଣ୍ଣ ଦାନ ନିଅନ୍ତୁ । ନିଜ ପାଖରେ ସୁବର୍ଣ୍ଣ ଥିଲେ, ଆପଣ ତା' ବଦଳରେ ସବୁକିଛି ପାଇପାରିବେ । ଧନ ଦେଲେ ନାନାଦି ସୁମିଷ୍ଟ ଦ୍ରବ୍ୟ ମିଳିପାରିବ ଏବଂ ଧନବାନଙ୍କ ନିକଟକୁ ବହୁ ଜ୍ଞାନୀ, ଗୁଣୀ, ଦୀନ, ଦରିଦ୍ର ଲୋକ ମଧ୍ୟ ଆସିବେ । ତେଣୁ ଆପଣ ମନଇଚ୍ଛା ସୁବର୍ଣ୍ଣ ଦାନ ନେବାପାଇଁ ପ୍ରସ୍ତୁତ ହୋଇ-ଯାଆନ୍ତୁ ।"

ବ୍ରହ୍ମଚାରୀ ବାମନ କହିଲେ ବଳିରାଜ ! "ସୁବର୍ଣ୍ଣ ଧରି ମୁଁ କୁଆଡ଼େ ବୁଲିବି ? ପାଖରେ ଯଥେଷ୍ଟ ସୁବର୍ଣ୍ଣ ରହିଲେ, ତା' ସହିତ ଅପତ୍ୟ, ମଦ, ଅହଙ୍କାରାଦି ଦୁର୍ଗୁଣ ଆସିଯିବ ଏବଂ ମନରେ ରଜୋଗୁଣ ବୃଦ୍ଧି ପାଇବ । ତା' ଫଳରେ ମନୁଷ୍ୟ ନିର୍ଦ୍ଦୟ ହୋଇଯିବ । ମନୁଷ୍ୟ ମନରେ ନିର୍ଦ୍ଦୟତା ବୃଦ୍ଧି ପାଇଲେ, ତା'ର ବହୁ ଶତ୍ରୁ ହୋଇଯିବେ ଏବଂ ଶେଷକୁ ତାକୁ ହତ୍ୟାକରି ଶତ୍ରୁମାନେ ସୁବର୍ଣ୍ଣ ନେଇଯିବେ ।"

ତହୁଁ ବଳିରାଜା କହିଲେ—"ଠିକ୍ କହୁଛନ୍ତି ! ଆପଣ ସୁବର୍ଣ୍ଣ ନ ନେଇ, ତା' ବଦଳରେ ସୁନ୍ଦର ପ୍ରାସାଦ ମାଗିପାରନ୍ତି । ସେହି ଭବନ ମଧ୍ୟରେ ମୁଁ କୋମଳ ଶଯ୍ୟା, ସୁସ୍ୱାଦୁ ଖାଦ୍ୟ ପେୟ ଖଞ୍ଜିଦେବି ତା' ଫଳରେ ସାରାଜୀବନ ଆପଣଙ୍କୁ ବାସ, ଗ୍ରାସ ଓ ଆଚ୍ଛାଦନର ଚିନ୍ତା ରହିବ ନାହିଁ । ତା' ବ୍ୟତୀତ ଆପଣ ଗୋଟିଏ ସର୍ବସମ୍ପନ୍ନ ଗୃହର ଅଧିକାରୀ ହୋଇଯିବା ମାତ୍ରେ ମୁଁ ଆପଣଙ୍କ ପାଇଁ ଗୋଟିଏ ରୂପବତୀ ବ୍ରାହ୍ମଣ-କନ୍ୟା ଯୋଗାଡ଼ କରିଦେବି । ତା'ସହିତ ଚିରକାଳ ଉପଭୋଗ କରିବା ପାଇଁ ଯଥେଷ୍ଟ ଗ୍ରାମଦାନ ଦେଇଦେବି ଏବଂ ଗଜ, ଅଶ୍ୱ ଇତ୍ୟାଦି ଯାନବାହନ ମଧ୍ୟ ଖଞ୍ଜିଦେଲେ ଆପଣଙ୍କୁ ଆଉ ପଥଶ୍ରମ କରିବାକୁ ପଡ଼ିବ ନାହିଁ । ଏହାବ୍ୟତୀତ, ଅଉ ମଧ୍ୟ ଅନେକ କିଛି ଆପଣ ମାଗିପାରନ୍ତି । କୃପଣମାନଙ୍କଠାରୁ ମାଗିବା ଲାଗି ଲଜ୍ଜା ଲାଗେ, କିନ୍ତୁ ମୁଁ ସ୍ୱେଚ୍ଛାରେ ସମସ୍ତ ପଦାର୍ଥ ଦେବାକୁ ପ୍ରସ୍ତୁତ ଅଛି ।"

ଶ୍ରୀ ଶୁକଦେବ କହିଲେ—"ହେ ପାଣ୍ଡବ କୁଳତିଳକ, ବଟୁବାମନ ବଳିରାଜାଙ୍କ ପ୍ରତିଶ୍ରୁତି ଶୁଣି, ତାଙ୍କୁ ପ୍ରତିଜ୍ଞା କରାଇ ନିଜର ଈପ୍‌ସିତ ବସ୍ତୁ ମାଗିବା ପାଇଁ ପ୍ରସ୍ତୁତ ହୋଇଗଲେ ।

## ଛପ୍‌ପୟ

"ଲହୋ ମନହର ମହଲ ସୁନ୍ଦରୀ ସୁଖକର ଶୈୟା ।
ଅଥବା ଗଜ ରଥ ଅଶ୍ୱ ଦୁଧ କୀ ସୁଧୀ ଗୈୟା ॥
ଯୂ୍ୟା ଜସ ବୋଲେ ଆସ ବୌନଠୀ ଦ୍ୱିଜଲହନ ଲହୋ ।
ଅବଇ କରୂଁ ବବାହ ନ ମନ ମହଁ ବଟୁ ସକୁଚଓ ॥
ବଟୁ ସମ୍ପତ୍ତି ସୁତ ଗ୍ରାମ ଅରୂ, ଜୋ ଚାହୋ ସୋଇ କହହୁ ।
ଅଥବା ମେରେ ମହଲ ମହଁ, ଭୂପତ ବନ ଦ୍ୱିଜବର ରହହୁ" ।



# ବାମନଙ୍କ ଦ୍ୱାରା ବଳିଙ୍କ କୁଳ ପ୍ରଶଂସା

"ବଚସ୍ତବୈତଜ୍ଜନଦେବ ସୂନୃତମ୍
କୁଲୋଚିତଂ ଧର୍ମଯୁତଂ ଯଶସ୍କରମ୍ ।
ଯସ୍ୟ ପ୍ରମାଣଂ ଭୃଗବଃ ସାଂପରାୟେ
ପିତାମହଃ କୁଲବୃଦ୍ଧଃ ପ୍ରଶାନ୍ତଃ ॥
(ଭା : ୮।୧୯।୨)

## ଛପ୍ପୟ

'ସୁନ ନୃପ ବଲ କୀ ବାତ ବିପ୍ର କପଟୀ ସୁଖ ପାୟୋ ।
ଅସୁର ଫଁସାଓ୍ୱତ ହେତୁ କପଟ କୋ ଜାଲ ବିଛାୟୋ ॥
ବଢ଼େ ବାବା ସରସ କହେ—ବଲ ତୁମ ବଡ଼ ଭାଗୀ ।
ଚୈଯା ନ ହୋନ୍ହି ଅସ ଶୀଲ ଜହାଁ । ଭାର୍ଗବ ଗୁରୁତ୍ୟାଗୀ ॥
ପିତା ବିରୋଚନ ବିପ୍ର ହିତ, ପ୍ରାନ ଦୟୋ ପ୍ରନ ତକ୍ୟୋ ନହିଁ ।
ଭୟୋ ଭକ୍ତ ପ୍ରହଲାଦ ନର-ହର ପ୍ରକଟାୟୋ କଷ୍ଟ ସହି ॥

ଅର୍ଥାତ୍ ବାମନରୂପୀ ଭଗବାନ୍ ମହାରାଜ ବଳିଙ୍କୁ କହୁଛନ୍ତି—"ହେ ନରଦେବ, ଆପଣ ଯେଉଁପରି ମଧୁର ତଥା ଧର୍ମଯୁକ୍ତ ବାଣୀ କହୁଛନ୍ତି, ତାହା ଆପଣଙ୍କ ବଂଶର ଅନୁରୂପ ଅଟେ । ଭୃଗୁପୁତ୍ର ଆଚାର୍ଯ୍ୟ ଶୁକ୍ର ଆପଣଙ୍କ ଆଧ୍ୟାତ୍ମିକ କାର୍ଯ୍ୟର ପରମ ସହାୟକ ହୋଇପାରିଛନ୍ତି ଏବଂ ଆପଣଙ୍କ ପିତାମହ ପ୍ରହ୍ଲାଦଙ୍କ ଶାନ୍ତିମୟ ତଥା ମହନୀୟ ବ୍ୟକ୍ତିତ୍ୱ ବିଶ୍ୱରେ ପ୍ରସିଦ୍ଧି ଲାଭକରିଛି ।"

ନୀତି ତଥା ଯୁକ୍ତିଯୁକ୍ତ କାର୍ଯ୍ୟ ପରିଣାମରେ ସିଦ୍ଧିଲାଭ କରିଥାଏ । ଅନ୍ୟାନ୍ୟ କାର୍ଯ୍ୟପରି ଭିକ୍ଷା ମାଗିବା ସପକ୍ଷରେ ମଧ୍ୟ ଗୋଟିଏ ଯୁକ୍ତି ରହିଛି । ଲୋକମାନେ

କହନ୍ତି—ଯାହା ହାତରେ କିଛି କାମ ନହେବ ସେ ଭିକ ମାଗେ । ଏଥିରୁ ମନେ-ହେଉଛି—ଭିକ ମାଗିବା ନିତାନ୍ତ ସରଳ କାର୍ଯ୍ୟ । କିନ୍ତୁ ବାସ୍ତବରେ ଭିକ୍ଷାମାଗିବା ଆଦୌ ସରଳ କାର୍ଯ୍ୟ ନୁହେଁ । ଅନ୍ୟର ହୃଦୟରେ ଦୟା ସଞ୍ଚାର କରାଇବା ଅତ୍ୟନ୍ତ କଠିନ କାର୍ଯ୍ୟ । ଅନ୍ୟଥା ସେ ତା'ର ପରିଶ୍ରମ ଅର୍ଜିତ ଧନ ସହଜରେ ଜଣେ ଭିକ୍ଷୁକକୁ ଦେଇ ଦେବା ଆଦୌ ସହଜ କାମ ନୁହେଁ । ସେଥିପାଇଁ ଆଜିକାଲିର ଭିକ୍ଷୁକମାନେ ନାନା ପ୍ରକାର କୃତ୍ରିମ ଉପାୟରେ ଅଙ୍ଗପ୍ରତ୍ୟଙ୍ଗକୁ ବିକୃତ କରାଇ ଦାତାମାନଙ୍କ ଦୃଷ୍ଟି ଆକୃଷ୍ଟ କରୁଛନ୍ତି । ସ୍ୱୟଂ ଚରାଚର୍‌ନାଥ ବିଷ୍ଣୁ ମଧ୍ୟ ଭିକ୍ଷା ମାଗିବା ପୂର୍ବରୁ ଭିକ୍ଷୁକ ବେଶରେ ସଜ୍ଜିତ ହୋଇଥିଲେ ଏବଂ ବ୍ରହ୍ମାଣ୍ଡର ରଚୟିତା ହୋଇ-ମଧ୍ୟ ନିଜେ କ୍ଷୁଦ୍ର ରୂପରେ ଅବତୀର୍ଣ୍ଣ ହୋଇଥିଲେ ।

ଆଉ ମଧ୍ୟ ଯାଚକମାନେ ଦାତାର ପ୍ରଶଂସା କରିବା ଲାଗି ଅନେକ ପ୍ରକାର ଉପାୟ ଉଦ୍‌ଭାବନ କରନ୍ତି । ଦାତା କେଉଁ ବ୍ୟକ୍ତିଙ୍କୁ ବିଶେଷ ସମ୍ମାନ କରନ୍ତି ଏବଂ କେଉଁ ବ୍ୟକ୍ତିଙ୍କ ପ୍ରଭାବ ଦାତାଙ୍କ ଉପରେ ଅଧିକ ରହିଛି, ତା'ର ବିଚାର କରିବା ଭିକ୍ଷୁକର ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ସେହିମାନଙ୍କୁ ପ୍ରଥମେ ପ୍ରଶଂସା କଲେ, ଦାତା ପ୍ରଭାବିତ ହୋଇଥା'ନ୍ତି । ତଦ୍‌ବ୍ୟତୀତ ଦାତାଙ୍କ ପିତା, ପିତାମହଙ୍କୁ ମଧ୍ୟ ଯାଚକ ପ୍ରଶଂସା କରିବା ଉଚିତ । ସେମାନେ ଯେତେ ଅଯୋଗ୍ୟ ହେଲେ ମଧ୍ୟ ଦାତାର ନମସ୍ୟ । ତେଣୁ ବଂଶର ପ୍ରଶଂସାରେ ଦାତା ମନେ ମନେ ଉତ୍ଫୁଲ୍ଲ ହୋଇ ଉଠନ୍ତି । ଦାତାଙ୍କର କେତେକ କାର୍ଯ୍ୟକୁ ମଧ୍ୟ ଯାଚକ ପ୍ରଶଂସା କରିବା ବିଧେୟ । ତା' ଫଳରେ ଦାତାଙ୍କ ମନ ଉପରେ ପ୍ରଭାବ ପଡ଼ିଥାଏ । ଆଉ ଗୋଟିଏ ସମୟୋଚିତ କାର୍ଯ୍ୟପ୍ରତି ଯାଚକ ଦୃଷ୍ଟିଦେବା ଏକାନ୍ତ ଆବଶ୍ୟକ । ତା' ହେଉଛି—ହଠାତ୍ ନିଜର ଅଭିପ୍ରାୟ ପ୍ରକାଶ ନ କରିବା । ଦାତାଙ୍କ ନିକଟରେ ଉପସ୍ଥିତ ହୋଇ ଦୀର୍ଘ ଭୂମିକା ପ୍ରକାଶ କରିବା ପରେ, ନିଜର ଅଭିପ୍ରାୟ ପ୍ରକାଶ କଲେ, ତାହା ତାଙ୍କ ମନକୁ ସ୍ପର୍ଶ କରିଥାଏ ।

ଦାତା ଯଦି ପ୍ରଥମରୁ ଜାଣିପାରିବେ ଯେ, ଭିକ୍ଷୁକ ଅତି ଲୋଭୀ, ତେବେ ସେ ଭିକ୍ଷା ଦେବାକୁ କୁଣ୍ଠିତ ହେବେ । ପ୍ରଥମରୁ ନିଜର ତ୍ୟାଗବୃତ୍ତି ପ୍ରଦର୍ଶନ କରି ଭିକ୍ଷୁକ ଦାତାଙ୍କୁ ପ୍ରଭାବିତ କରିବା ଉଚିତ । ଏହି ସମସ୍ତ ବିଷୟ ପ୍ରତି ଦୃଷ୍ଟିଦେଇ ଭିକ୍ଷୁକ ଦାତାଙ୍କ ଆଗରେ ହାତ ପତାଇଲେ, ତାଙ୍କର ଆଶା ବିଫଳ ହୁଏ ନାହିଁ । ଆହୁରି ମଧ୍ୟ ଗୋଟିଏ ବିଷୟ ପ୍ରତି ଯାଚକ ବିଶେଷ ଧ୍ୟାନଦେବା ଆବଶ୍ୟକ । କୃପଣ-ଲୋକ ଆଗରେ ହାତ ପତାଇବା ଆଦୌ ଉଚିତ ନୁହେଁ । ସେ କିଛି ଦାନକଲେ ମଧ୍ୟ ପାଞ୍ଚ ଦଶ ସ୍ଥାନରେ ସେହି ବିଷୟ କହି ଯାଚକର ନିନ୍ଦା କରିବ । କିନ୍ତୁ ତ୍ୟାଗୀ, ସନ୍ତ

ପୁରୁଷ ଓ ଜ୍ଞାନୀବ୍ୟକ୍ତି ଯାଚକକୁ କୌଣସିମତେ ମନାକରିବେ ନାହିଁ, କାରଣ ସେ ମନାକରିବା ଲାଗି ଲଜ୍ଜାବୋଧ କରିବେ । ତେଣୁ ଲୋକଶିକ୍ଷା ଉଦ୍ଦେଶ୍ୟରେ ସ୍ୱୟଂ ଭଗବାନ୍ ବିଷ୍ଣୁ ଭିକ୍ଷୁକ ବେଶ ଧାରଣ କରିଥିଲେ ।”

ଶ୍ରୀ ଶୁକଦେବ କହିଲେ—“ହେ ରାଜନ୍, ମହାରାଜ ବଳି ଅତ୍ୟନ୍ତ ଆଗ୍ରହର ସହିତ ବଟୁବାମନଙ୍କୁ ଦାନ ଦେବାଲାଗି ପ୍ରସ୍ତୁତ ହୋଇଗଲେ । ମହାରାଜ-ବଳିଙ୍କର ଆଗ୍ରହ ଲକ୍ଷ୍ୟକରି, ବଟୁବାମନ ତାଙ୍କ ଆଗରେ ବିଭିନ୍ନ ଲୀଳା ପ୍ରଦର୍ଶନ କରିଥିଲେ । ବଟୁବାମନ ଯାଚକର ନୀତିଗୁଡ଼ିକ ମନେ ମନେ ଗ୍ରହଣ କରି, ପ୍ରଥମେ ଶୁକ୍ରାଚାର୍ଯ୍ୟଙ୍କୁ ଉଚ୍ଛ୍ୱସିତ କଣ୍ଠରେ ପ୍ରଶଂସା କରିବାକୁ ଲାଗିଲେ । ସେ ପ୍ରଶଂସାତ୍ମକ ବାକ୍ୟ ଆରମ୍ଭ କରି କହିଲେ—“ମହାରାଜ, ମୁଁ ଆପଣଙ୍କ ସମ୍ବନ୍ଧରେ ଯେତେ ଯାହା ଶୁଣିଥିଲି, ଆପଣ ତାହାର ବହୁ ଊର୍ଦ୍ଧ୍ୱରେ । ତା ହେବ ନାହିଁ କପରି ? ଯାହାଙ୍କର ଗୁରୁ ଓ ପରାମର୍ଶଦାତା ସ୍ୱୟଂ ଶୁକ୍ରାଚାର୍ଯ୍ୟ, ସେ ବ୍ୟକ୍ତି ମହାନ୍ ହେବେ ନାହିଁ କପରି ? ଶିଷ୍ୟମାନଙ୍କ ଉପରେ ଆଦର୍ଶ, ସୁଯୋଗ୍ୟ ତଥା ତପୋନିଷ୍ଠ ଗୁରୁଙ୍କର ପ୍ରଭାବ ପଡ଼ିଥାଏ । କନିଷ୍ଠ ରୁଚିର ଭିକ୍ଷୁକ ଆଗରେ କେବଳ ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ ଶିଷ୍ୟହିଁ ବିଜୟୀ ହୋଇପାରନ୍ତି । କେବଳ ସେତିକି ନୁହେଁ, ଅକୁଳୀନ ବ୍ୟକ୍ତିମାନେ ମଧ୍ୟ ଗୁରୁଙ୍କର ଉପଦେଶ ପାଇଲେ ସୁଦ୍ଧା ନିଜେ ଭଲ କାର୍ଯ୍ୟରେ ବ୍ରତୀ ହୁଅନ୍ତି ନାହିଁ । ଆପଣଙ୍କ କୁଳ କମ୍ ଉଜ୍ଜ୍ୱଳ ନୁହେଁ । ସେ ସମ୍ବନ୍ଧରେ ଆଉ କହିବି କ'ଣ ?”

ବଳିରାଜା ଅତ୍ୟନ୍ତ ବିନୀତଭାବରେ କହିଲେ—“ବ୍ରାହ୍ମଣ ଦେବ, ମୁଁ ଆପଣଙ୍କର ଦାସାନୁଦାସ ।”

ଅତ୍ୟନ୍ତ ଉଲ୍ଲସିତ ହୋଇ ଉଠି ବଟୁବାମନ କହିଲେ—“ମହାରାଜ; ଆପଣ ବିରୋଚନଙ୍କ ପୁତ୍ର । ମହାରାଜ ବିରୋଚନ ବ୍ରାହ୍ମଣମାନଙ୍କ ପାଇଁ ନିଜର ଜୀବନକୁ ଉତ୍ସର୍ଗ କରିଥିଲେ ।”

ପ୍ରକୃତ କଥା ହେଉଛି ମହାରାଜ ବିରୋଚନ ଅତ୍ୟନ୍ତ ତେଜସ୍ୱୀ, ଶୂର, ଦାନୀ ତଥା ଧନୁର୍ବେଦ ବିଶାରଦ ଥିଲେ । ସେ ନିଜର ବାହୁବଳରେ ସ୍ୱର୍ଗରୁ ଦେବତା-ମାନଙ୍କୁ ତଡ଼ିଦେଇଥିଲେ । ସେ ତାଙ୍କର ବୁଦ୍ଧିବଳରେ ତ୍ରିଲୋକର ଅଧିକାରୀ ହୋଇପାରିଥିଲେ । କିନ୍ତୁ ବ୍ରାହ୍ମଣମାନଙ୍କ ପ୍ରତି ତାଙ୍କ ମନରେ ଅସୀମ ଦୟା ଥିଲା । ଦେବତାମାନେ ବିରୋଚନଙ୍କୁ ବଳରେ ଜୟ କରି ନପାରି, କୂଟ କପଟ ବଳରେ ଜୟ କରିବାଲାଗି ଚିନ୍ତା କଲେ । ସେମାନେ ବ୍ରାହ୍ମଣ ରୂପ ଧାରଣ କରି ବିରୋଚନଙ୍କ ନିକଟରେ ପହଞ୍ଚିଲେ । ବ୍ରାହ୍ମଣ ଭକ୍ତ ବିରୋଚନ ସେମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା

ଜଣାଇଥିଲେ ହେଁ ବେଶ୍ ଜାଣିପାରିଲେ ଯେ, ସେମାନେ ଛଦ୍ମବେଶୀ ବ୍ରାହ୍ମଣ । ତଥାପି ସେ ଅଭ୍ୟର୍ଥନାରେ କୌଣସି ତ୍ରୁଟି ଦେଖାଇଲେ ନାହିଁ । ବିରୋଚନ ଛଦ୍ମବେଶୀ ବ୍ରାହ୍ମଣମାନଙ୍କୁ ସବିଶେଷ ପୂଜା କରି କହିଲେ—"ବ୍ରାହ୍ମଣଗଣ, ଆପଣ-ମାନେ କେଉଁ ଉଦ୍ଦେଶ୍ୟରେ ମୋ' ନିକଟକୁ ଆସିଛନ୍ତି ? ଦୟାକରି ତାହା ପ୍ରକାଶ କରନ୍ତୁ ।"

ଦେବଗଣ କହିଲେ —"ମହାରାଜ ! ଆପଣ ପ୍ରତିଜ୍ଞା କଲେ, ଆମେ ଆମର ମନୋରଥ ଆପଣଙ୍କ ଆଗରେ ପ୍ରକାଶ କରିବୁ ।"

ରାଜା ବିରୋଚନ ଆନନ୍ଦ ମନରେ କହିଲେ —"ବ୍ରାହ୍ମଣଗଣ, ମୁଁ ପ୍ରତିଜ୍ଞା କରୁଛି, ଆପଣମାନଙ୍କ ମନୋରଥ ପୂର୍ଣ୍ଣ କରିବ ! ଆପଣମାନେ ନିଃସଙ୍କୋଚରେ ତାହା ପ୍ରକାଶ କରନ୍ତୁ ।"

ତହୁଁ ଇନ୍ଦ୍ରାଦି ଦେବଗଣ ଆନନ୍ଦ ମନରେ କହିଲେ—"ହେ ରାଜନ୍, ଆମ୍ଭେମାନେ ଆପଣଙ୍କର ଆୟୁଷ କାମନା କରୁଛୁ । ଆପଣ ଆମ ପାଇଁ ଜୀବନ ଉତ୍ସର୍ଗ କରନ୍ତୁ ।"

ତହୁଁ ସହର୍ଷମାନସରେ ବିରୋଚନ କହିଲେ—"ବ୍ରାହ୍ମଣଗଣ, ମୁଁ ଆଜି ଧନ୍ୟ । ମୋର ଜୀବନ କୃତାର୍ଥ ହୋଇଛି । ମୁଁ ଅତ୍ୟନ୍ତ ଆନନ୍ଦରେ ଆପଣଙ୍କୁ ମୋର ଜୀବନ ଦାନ କରୁଛି ।"

ଏହି ପ୍ରସଙ୍ଗ ଉତ୍ଥାପନ କରି ବଟୁବାମନ କହିଲେ—"ହେ ବଳିରାଜା, ଆପଣଙ୍କ ପିତା ଇନ୍ଦ୍ରାଦିଦେବଗଣଙ୍କୁ ଚିହ୍ନିପାରି ମଧ୍ୟ ସେହିମାନଙ୍କ ଅନୁରୋଧରେ ନିଜର ଜୀବନ ଅର୍ପଣ କରିଥିଲେ । ତାଙ୍କପରି ଯଶସ୍ୱୀ ରାଜାଙ୍କ ଔରସରୁ ଆପଣ ଜନ୍ମଗ୍ରହଣ କରିଛନ୍ତି । ପିତାଙ୍କ ଆତ୍ମା ପୁତ୍ରଠାରେ ପ୍ରତିବିମ୍ବିତ ହୋଇଥାଏ । ଆପଣ ବ୍ରାହ୍ମଣଭକ୍ତ ହେବା ଆଦୌ ବିସ୍ମୟକର ବ୍ୟାପାର ନୁହେ । କାରଣ, ଆପଣ ଯଶସ୍ୱୀ ବିରୋଚନଙ୍କର ପୁତ୍ର ।"

ରାଜା ବଳି ଲଜ୍ଜିତ ହୋଇ କହିଲେ—"ବ୍ରାହ୍ମଣଦେବ, ମୁଁ ମୋ' ପିତାଙ୍କର ଚରଣ ଧୂଳିର ଗୋଟିଏ କଣିକାକୁ ମଧ୍ୟ ସମାନ ନୁହେଁ । ଶତଜନ୍ମ ବିତିଗଲେ ସୁଦ୍ଧା ମୁଁ ତାଙ୍କପରି ହୋଇପାରିବି ନାହିଁ ।"

ବଟୁବାମନ ଆହୁରି ଉତ୍ସାହିତ ହୋଇ କହିଲେ—"ମହାରାଜ, ଆପଣ ଏପରି କଥା କୁହନ୍ତୁ ନାହିଁ । ଆପଣଙ୍କ କୁଳରେ ଏହିପରି ଅନେକ ଯଶସ୍ୱୀ ବ୍ୟକ୍ତି ଜନ୍ମଗ୍ରହଣ କରିଥିଲେ । ସେହି ଗୁଣୀବ୍ୟକ୍ତିମାନଙ୍କର ପୁଞ୍ଜୀଭୂତ ଗୁଣ ଆପଣଙ୍କଠାରେ ଠୁଳ ହୋଇଛି । ସୂର୍ଯ୍ୟଙ୍କୁ ଦୀପ ଦେଖାଇଲାପରି ମୁଁ ମହାରାଜ ପ୍ରହ୍ଲାଦଙ୍କର ଗୁଣ

ସମ୍ପର୍କରେ କହିବାକୁ ଯାଉଛି । ପରମେଶ୍ୱରଙ୍କପରି ଭକ୍ତ ପ୍ରହ୍ଲାଦଙ୍କର ଗୁଣ ସର୍ବଦା କୀର୍ତ୍ତନ କରାଯାଉଛି । ସେ ଥିଲେ—ଭକ୍ତାଗ୍ରଣୀ, ଯଶସ୍ୱୀ, ଗୁଣଜ୍ଞ ତଥା ଯଜ୍ଞ-ସାର୍ଥକକାରୀ । ଆଜି ତାଙ୍କର ଯଶ ସୂର୍ଯ୍ୟଙ୍କପରି ସମଗ୍ର ବିଶ୍ୱବ୍ରହ୍ମାଣ୍ଡରେ ବ୍ୟାପିଯାଇଛି । ହେ ରାଜନ୍, ସେହି ଉଜ୍ଜ୍ୱଳ କୁଳରେ ଆପଣ ଜାତ ହୋଇଛନ୍ତି । ଆପଣ ମଧ୍ୟ ପିତା-ମହଙ୍କର ସମସ୍ତ ଗୁଣ ଆହରଣ କରିଛନ୍ତି । ବ୍ରାହ୍ମଣଙ୍କ ପ୍ରତି ସଦ୍‌ଭାବନା ପ୍ରଦର୍ଶିତ କରିବା ଆପଣଙ୍କର ପୈତୃକ ପରମ୍ପରା । କେବଳ ଦାନ କିମ୍ବା ଯଜ୍ଞରେ ନୁହେଁ ; ଆପଣଙ୍କ ପିତା, ପିତାମହ ଓ ପ୍ରପିତାମହ ସମସ୍ତେ ଯୁଦ୍ଧରେ ମଧ୍ୟ ଅନୁରୂପ ପଟୁତା ପ୍ରଦର୍ଶନ କରିଛନ୍ତି । ଆପଣଙ୍କ ବଂଶଧରଙ୍କଠାରୁ କେହି କେବେହେଲେ ନିରାଶ ହୋଇ ଫେରିନାହିଁ । ମୁଁ ନିରାଶ ହୋଇ ଫେରିଯିବି କିପରି ?''

ବଳି ନିଜ ବଂଶର ଗୌରବାବହ ଗାଥାରେ ଉଲ୍ଲସିତ ହୋଇ କହିଲେ— ''ହେ ବଟୁ, ଆପଣ ନିତାନ୍ତ ବାଳକ ଅଟନ୍ତି । ମୋ' ପିତା, ପିତାମହ ଆଦି ଗୌରବ-ଗାଥା ଆପଣ ଜାଣିଲେ କିପରି ?''

ହସି ହସି ବଟୁ ବାମନ କହିଲେ—'ସୂର୍ଯ୍ୟ, ଚନ୍ଦ୍ର, ହିମାଳୟ, ପୃଥିବୀ ଓ ସାଗରଙ୍କୁ ଆବାଳବୃଦ୍ଧବନିତା ସମସ୍ତେ ଜାଣନ୍ତି । ସେହିମାନଙ୍କପରି ମହାନ୍ ବ୍ୟକ୍ତି-ମାନଙ୍କୁ ନ ଜାଣିବ କିଏସେ ? ଆପଣ ଶୁକ୍ରାଚାର୍ଯ୍ୟ ଆଦି ଗୁରୁବର୍ଗଙ୍କଠାରୁ ନିଜ ବଂଶର ପବିତ୍ର ଚରିତ ଅନେକ ଶୁଣିଥିବେ । ମୁଁ ସେଥିମଧ୍ୟରୁ କେତୋଟି ଘଟଣା ବର୍ଣ୍ଣନା କରୁଛି । ଆପଣ ସେ ଆଖ୍ୟାନ ଶୁଣିଲେ ବିଶେଷ ଆନନ୍ଦିତ ହେବେ ଏବଂ ସେଥିରୁ ଆପଣ ଅନେକ ଶିକ୍ଷା ଲାଭ କରିବେ ।''

ଶ୍ରୀ ଶୁକଦେବ କହିଲେ—'' ହେ ରାଜନ୍ ପରୀକ୍ଷିତ ! ଏହିପରି ଭାବରେ ବଟୁ ବାମନ ବଳିରାଜାଙ୍କୁ ଉତ୍ସାହିତ କରାଇ ତାଙ୍କ ପିତାମହ ଓ ପ୍ରପିତାମହଙ୍କ ଆଖ୍ୟାନ ତାଙ୍କ ଆଗରେ ବର୍ଣ୍ଣନା କଲେ ।''

## ଛପ୍‌ପୟ

''ଯଦ୍ୟପି ହୀନ ଅଟୁ କୃପନ ଭୟେ ତୁମରେ କୁଳ ନାହିଁ ।
ଅସୁରବଂଶ କୋ ସୁଯଶ ବ୍ୟାପ୍ତ ସବରେ ଜଗ ମାହିଁ ।।
କଳ୍ପବୃକ୍ଷ କେ ସରସ ଭୟେ ପ୍ରବଳ ତୁମରେ ସବ ।
ଇଚ୍ଛା ପୂରନ କରୋ ସବନକୀ ତୁମହୁ ନୃପ ଅବ ।।
ହିରନକଶିପୁ ହିରନାକ୍ଷ ହୁ, ପ୍ରପିତାମହ ତୁମ୍‌ହରେ ଭୟେ ।
ଲଡ଼େ ବିଷ୍ଣୁ ତେଁ ସମରମହିଁ, ନାମ ଅମର ଜଗ କରି ଗୟେ ।।''

# ବାମନଙ୍କ ଦ୍ୱାରା ବଳିରାଜାଙ୍କ ପ୍ରପିତାମହଙ୍କ ପ୍ରଶଂସା

"ଯତୋ ଜାତୋ ହିରଣ୍ୟାକ୍ଷ ଶ୍ଚରନ୍ନେକ ଇମାଂ ମହୀମ୍ ।
ପ୍ରତିବୀରଂ ଦିଗ୍ବିଜୟେ ନାବିନ୍ଦତ ଗଦାୟୁଧଃ" ॥

(ଭା : ୮ । ୧୯ । ୫)

## ଛପ୍ପୟ

"ହିରଣ୍ୟାକ୍ଷ ନହିଁ ସମର ମାହିଁ କାହୂତେ ହାରେଯା ।
ବଳି କେ ବିଷ୍ଣୁ ବରାହ କପଟ ତେଂ ତାକୁଁ ମାରେଯା ।
ହିର ନହି ଭଟମ୍ହି ହତାଶ ପରାଜିତ ଆପହିଁ ମାନେଯା ।
ବନ୍ଧୁ ମୃତ୍ୟୁ ସୁନି ହିରନକଶିପୁନେ ସର ସନ୍ଧାନେୟା ॥
ତଦେଁ ବିଷ୍ଣୁ ତେଂ ଲଙ୍କନ ହିତ, ସୋଓ୍ୟତ ତେଂ ଶ୍ରୀପତି ଜରେ ।
ଦେଖି ବୀରକେ ତେଜ କୁଁ, ତଜି ଶୈୟ୍ୟା ପୁର ତେଂ ଭଗେ" ॥

ଅର୍ଥାତ୍ ବାମନରୂପୀ ବିଷ୍ଣୁ ବଳିରାଜାଙ୍କୁ କହୁଛନ୍ତି—'ହେ ରାଜନ୍, ଆପଣଙ୍କ କୁଳରେ ହିରଣ୍ୟାକ୍ଷ ଜନ୍ମ ହୋଇଥିଲେ । ସେଉଁ ବୀର କୌଣସି ସୈନ୍ୟସାମନ୍ତ ନ ନେଇ, ହାତରେ କେବଳ ଗଦାଧରି ଦିଗ୍ବିଜୟ କାମନାରେ ସମଗ୍ର ଭୂମଣ୍ଡଳ ପର୍ଯ୍ୟଟନ କରିଥିଲେ । କିନ୍ତୁ ତାଙ୍କ ସହିତ ଯୁଦ୍ଧ କରିବା ପାଇଁ କୌଣସି ପ୍ରତିପକ୍ଷୀ ବୀର ମିଳିଲେ ନାହିଁ ।

ବଂଶ ପରମ୍ପରାର ଗୋଟିଏ ସ୍ଥାୟୀ ପ୍ରଭାବ ରହିଛି । ନିଜ ବଂଶଧରଙ୍କ ବୀରତ୍ୱପୂର୍ଣ୍ଣ ଗାଥା ଶୁଣିଲେ ମନରେ ଏକ ଅପୂର୍ବ ଉନ୍ମାଦନା ସୃଷ୍ଟି ହୋଇଥାଏ । ତେଣୁ ଯୋଦ୍ଧାମାନେ ପ୍ରତିପକ୍ଷ ବୀରମାନଙ୍କୁ ଦର୍ପର ସହିତ କହିଥା'ନ୍ତି—ମୁଁ ସେହି ବଂଶର ସନ୍ତାନ । ସୂତ, ମାଗଧ, ଭାଟ ଓ ଚାରଣମାନେ ପୂର୍ବପୁରୁଷଙ୍କ ବୀରତ୍ୱପୂର୍ଣ୍ଣ

ଗାଥା ଗାନକରି ବୀରମାନଙ୍କ ପ୍ରାଣରେ ବୀରତ୍ୱର ଗରିମା ପରିପୂର୍ଣ୍ଣ କରିଦିଅନ୍ତି । କେତେକ ଗାଥାର ସ୍ମରଣରେ ଭୀରୁମାନେ ମଧ୍ୟ ଯୁଦ୍ଧର ଉନ୍ମାଦନାରେ ମାତିଉଠନ୍ତି ଏ ସମ୍ବନ୍ଧରେ ଗୋଟିଏ ପ୍ରାଚୀନ କାହାଣୀ କୁହାଯାଇପାରେ—

ଦୁଇଜଣ ବ୍ୟକ୍ତି କୌଣସି ଗୋଟିଏ ବିଷୟରେ କଳହ ଆରମ୍ଭ କରିଦେଲେ । ସେ ଦୁହିଙ୍କ ମଧ୍ୟରେ ଜଣେ ଥିଲେ – ବୈଶ୍ୟ ଓ ଅନ୍ୟ ଜଣକ କ୍ଷତ୍ରିୟ । ବୈଶ୍ୟ ଜଣକ ଥିଲେ—ବେଶ୍ ହୃଷ୍ଟପୁଷ୍ଟ ଓ କ୍ଷତ୍ରିୟ ନିତାନ୍ତ ଦୁର୍ବଳ । ଦୁହିଁଙ୍କ ମଧ୍ୟରେ ତୀବ୍ର ବାକ୍ୟବାଣର ବିନିମୟ ପରେ ହାତାହାତି ଆରମ୍ଭ ହୋଇଗଲା । ବୈଶ୍ୟ ଜଣକ ଦୁର୍ବଳ କ୍ଷତ୍ରିୟ ବ୍ୟକ୍ତିଟିକୁ ତଳେ ପକାଇ ଦେଇ ତା' ଛାତି ଉପରେ ଚଢ଼ା ହୋଇପଡ଼ି କହିଲା –"କହ···ଏଥର କ'ଣ କହୁଚୁ କହ···!"

ବିଚରା ଦୁର୍ବଳ କ୍ଷତ୍ରିୟ ଲୋକଟି ମୋଟାତାଜା ବୈଶ୍ୟର ପାଦ ଭାରରେ ଅତିଷ୍ଠ ହୋଇଉଠିଲା । ସେ କ୍ଷମା ପ୍ରାର୍ଥନା କରିବା ପୂର୍ବରୁ ବିନୀତଭାବରେ କହିଲା – "ଭାଇ, ତୁ କେଉଁ ଜାତିର ଲୋକ ?"

ବିଜୟୀ ବୈଶ୍ୟ ଜଣକ କହିଲା—"ମୁଁ ବୈଶ୍ୟ, ବ୍ୟବସାୟ କରିବା ଆମ କୁଳର ପରମ୍ପରା ! ଶୁଣିଲୁ ତ, ଏବେ କ'ଣ କହିବୁ···କହ !"

ଏତିକ ଶୁଣିବା ମାତ୍ରେ କ୍ଷତ୍ରିୟର ଧମନୀରେ ଜାତିଗତ ରକ୍ତ ପ୍ରବାହିତ ହୋଇଗଲା । ସେ ସାହସର ସହିତ କହିଲା—"ଯାଃ···ତୁ ବେପାରି ଟେ··· । ତୁ ସିନା ମାରପେଞ୍ଚ ନ ଜାଣି ମୋତେ ଜିତିଯିବୁ, ମୁଁ କ୍ଷତ୍ରିୟ ପିଲା, ମୋତେ ତୁ ଶାରୀରିକ ଶକ୍ତିରେ କ'ଣ ପାରିବୁ ?" ଏହା କହି ସେ ପାଦରେ ଏପରି ଏକ ନିର୍ଦ୍ଦୟୀ ଆଘାତ କଲା ଯେ, ହୃଷ୍ଟପୁଷ୍ଟ ବୈଶ୍ୟ ଜଣକ ତଳେ ପଡ଼ିଗଲା ଏବଂ କ୍ଷତ୍ରିୟ ଜଣକ ତା' ଛାତି ଉପରେ ମାଡ଼ି ବସିଲା । ତେଣୁ କୁହାଯାଇଛି—ବଂଶଗତ ମର୍ଯ୍ୟାଦା ଓ ଶକ୍ତିର କିଛି ଗୋଟିଏ ପ୍ରଭାବ ରହିଛି ।

ଶ୍ରୀ ଶୁକଦେବ ରାଜା ପରୀକ୍ଷିତଙ୍କୁ କହିଲେ—"ହେ ରାଜନ୍, ବଳିଙ୍କୁ ପ୍ରୋତ୍ସାହିତ କରିବା ଲାଗି ବାମନ ତାଙ୍କ ପ୍ରପିତାମହଙ୍କ ପ୍ରଶଂସା କରିବାକୁ ଲାଗିଲେ ।"

ଭଗବାନ୍ ବାମନ କହିଲେ—"ହେ ବଳିରାଜ, ଆପଣଙ୍କ ବଂଶ ସ୍ୱୟଂ ବ୍ରହ୍ମାଙ୍କଠାରୁ ଆରମ୍ଭ ହୋଇଛି । ବ୍ରହ୍ମାଙ୍କର ମାନସ ପୁତ୍ର ଥିଲେ – କଶ୍ୟପ, ତାଙ୍କର ଦିତି, ଅଦିତି ଆଦି ତେରଜଣ ପତ୍ନୀ ଥିଲେ । ସେ ହେଉଛନ୍ତି—ଜଣେ ମହାନ୍

ତପସ୍ୱୀ, କିନ୍ତୁ ସ୍ଥାବର ଜଙ୍ଗମାଦି ସବୁକିଛୁ ତାଙ୍କର ସୃଷ୍ଟି । ତେଣୁ ସେ ବ୍ରହ୍ମାଙ୍କ ପର ଜଣେ ପ୍ରଜାପତି ଅଟନ୍ତି । ତାଙ୍କ ପତ୍ନୀ ଦିତିଙ୍କଠାରୁ ହିରଣ୍ୟକଶିପୁ ଓ ହିରଣାକ୍ଷ ନାମକ ଦୁଇପୁତ୍ର ଜାତ ହୋଇଥିଲେ । ସେ ଦୁହେଁ ହେଉଛନ୍ତି—ଆପଣଙ୍କର ପ୍ରଥମ ପୂର୍ବଜ । ତାଙ୍କଠାରୁ ପ୍ରହ୍ଲାଦ ଏବଂ ଭକ୍ତ ପ୍ରବର ପ୍ରହ୍ଲାଦଙ୍କଠାରୁ ଆପଣଙ୍କ ଯଶସ୍ୱୀ ପିତା ବିରୋଚନ ଜାତ ହୋଇଛନ୍ତି । ଆପଣଙ୍କ ପୁତ୍ର ବାଣ ମଧ୍ୟ ଠିକ ବଂଶର ଅନ୍ୟମାନଙ୍କ ପରି ଅତ୍ୟନ୍ତ ଦାନୀ ମାନୀ, ଓ ପରାକ୍ରମୀ ହେବେ ।

ଆପଣଙ୍କ ପ୍ରପିତାମହଙ୍କ ମଧ୍ୟରେ ହିରଣ୍ୟକଶିପୁ ଜ୍ୟେଷ୍ଠ ଓ ହିରଣ୍ୟାକ୍ଷ କନିଷ୍ଠ ଥିଲେ । ହିରଣାକ୍ଷ ଏଡ଼େ ବଡ଼ ବୀର ଥିଲେ ଯେ, ତାଙ୍କ ସହିତ ଯୁଦ୍ଧକରିବା ଲାଗି ବିଶ୍ୱବ୍ରହ୍ମାଣ୍ଡରେ କେହି ପ୍ରସ୍ତୁତ ହେଲେ ନାହିଁ । ଶେଷରେ ସେ ହାତରେ ଗଦାଧରି ସମସ୍ତଙ୍କୁ ଯୁଦ୍ଧଲାଗି ଆହ୍ୱାନ କଲେ; କିନ୍ତୁ ଇନ୍ଦ୍ରାଦି ଦିକ୍‌ପାଳଗଣ ତାଙ୍କ ପାଦରେ ପଡ଼ି କ୍ଷମାପ୍ରାର୍ଥନା କଲେ । ସାକ୍ଷାତ୍ ଚରାଚର ନାଥ ବିଷ୍ଣୁ ମଧ୍ୟ ହିରଣ୍ୟାକ୍ଷଙ୍କ ଭୟରେ ଶୂକର ରୂପ ଧାରଣ କରି ପାତାଳରେ ଆତ୍ମଗୋପନ କଲେ । ମହାବୀର ହିରଣ୍ୟାକ୍ଷ ବିଷ୍ଣୁଙ୍କୁ ଖୋଜି ଖୋଜି ଯାଇ ପାତାଳରେ ପହଞ୍ଚିଲେ । କାରଣ ଯୁଦ୍ଧ କରିବା ଲାଗି ତାଙ୍କ ହସ୍ତରେ କଣ୍ଡୁ ଜାତ ହେଉଥିଲା । ଶେଷରେ ବରାହରୂପୀ ବିଷ୍ଣୁଙ୍କ ସହିତ ତାଙ୍କର ଯୁଦ୍ଧ ଆରମ୍ଭ ହୋଇଗଲା । ହିରଣ୍ୟାକ୍ଷଙ୍କ ବଳ ଓ ବିକ୍ରମରେ ସ୍ୱୟଂ ବିଷ୍ଣୁ ସ୍ତମ୍ଭୀଭୂତ ହୋଇଗଲେ । କିନ୍ତୁ ଭଗବାନ୍ ବିଷ୍ଣୁ ଅନେକ ଉପାୟରେ ହିରଣ୍ୟାକ୍ଷଙ୍କୁ ବଧକଲେ ସତ, କିନ୍ତୁ ତାଙ୍କ ବୀରତ୍ୱର ପ୍ରଶଂସା ସେ ସର୍ବତ୍ର ଗାନ କରିବାକୁ ଲାଗିଲେ ।

ଭାଇର ମୃତ୍ୟୁ ସମ୍ବାଦରେ ଅତ୍ୟନ୍ତ ଉତ୍ତେଜିତ ହୋଇ ହିରଣ୍ୟକଶିପୁ ବିଷ୍ଣୁଙ୍କୁ ବଧ କରିବା ଲାଗି ବୈକୁଣ୍ଠ ଧାମରେ ଯାଇ ଉପସ୍ଥିତ ହୋଇଗଲେ । ତାଙ୍କୁ ଦେଖି ବିଷ୍ଣୁ ମନେ ମନେ ଖୁବ୍ ଭୟକରି କେଉଁଠାରେ ଆତ୍ମଗୋପନ କରିବେ, ସେପରି ସ୍ଥାନ ଆଦୌ ଖୋଜି ପାଇଲେ ନାହିଁ । ଶେଷରେ ସେ ଚତୁରତାର ସହିତ ହିରଣ୍ୟକଶିପୁଙ୍କ ହୃଦୟ ମଧ୍ୟରେ ଲୁଚି ରହିଲେ । ଏଡ଼େବଡ଼ ପ୍ରଚଣ୍ଡ ପରାକ୍ରମୀ ବୀର ହିରଣ୍ୟକଶିପୁ ନିଜ ହୃଦୟରେ ଲୁଚିଥିବା ବିଷ୍ଣୁଙ୍କୁ ନପାଇ, ବୈକୁଣ୍ଠ ଧାମରେ ଏଣେତେଣେ ତାଙ୍କୁ ଖୋଜିବାକୁ ଲାଗିଲେ । ଶେଷରେ ସେ ବିଷ୍ଣୁଙ୍କୁ ଖୋଜିବାଲାଗି ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ମହ, ଜନ, ତପ ଓ ସତ୍ୟ ଆଦି ଲୋକରେ ବିଚରଣ କଲେ । ବିଷ୍ଣୁ କେଉଁଠି ବାହାରେ ଥିଲେତ ସେ ପାଇବେ ? କିନ୍ତୁ ବିଷ୍ଣୁ ଅତ୍ୟନ୍ତ ଚତୁରତା ର ସହିତ ସୂକ୍ଷ୍ମରୂପ ଧାରଣ କରି ହିରଣ୍ୟକଶିପୁଙ୍କ ହୃଦୟ ମଧ୍ୟରେ ପ୍ରବେଶ କରିଥିଲେ । ବୀରବର ହିରଣ୍ୟକଶିପୁ କୌଣସିଠାରେ ବିଷ୍ଣୁଙ୍କୁ ନପାଇ, ଶେଷକୁ ଗର୍ଜନ କରି ଚିତ୍କାର ସହିତ କହିଲେ—"ମୁଁ ବିଷ୍ଣୁଙ୍କୁ ଜୟକରି ପାରିଛି । ସେ 'ମୋ'ର ଭୟରେ

ଆତ୍ମ ବିସର୍ଜନ କରିଛନ୍ତି । ନୋହିଲେ, ମୁଁ ତାଙ୍କୁ ଅବଶ୍ୟ ଖୋଜ ବାହାର କରି-ଦେଇଥାଆନ୍ତି !"

ବିଷ୍ଣୁ ତାଙ୍କ ହୃଦୟ ମଧ୍ୟରେ ଆତ୍ମଗୋପନ କରି ରହିଥିବାରୁ, ସେହି ପୁଣ୍ୟ ଅବସରରେ ବିଷ୍ଣୁଙ୍କ କଳା ଧାରଣ କରି ଆପଣଙ୍କ ପିତାମହ ପ୍ରହ୍ଲାଦ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପୁତ୍ର ବିରୋଚନ ଥିଲେ – ଆପଣଙ୍କ ପିତା । ଥରେ ବାଳକ ବିରୋଚନଙ୍କ ସହିତ ଜନୈକ ଋଷି ପୁତ୍ରର କଳହ ହେଲା । ବିରୋଚନ କହୁଥିଲେ — "ମୁଁ ବଡ଼" ଏବଂ ଋଷିପୁତ୍ର କହୁଥିଲେ—"ମୁଁ ବଡ଼" । ଶେଷରେ ଦୁହେଁ ଯାକ ଭକ୍ତପ୍ରବର ପ୍ରହ୍ଲାଦଙ୍କ ନିକଟରେ ପହଞ୍ଚି ନିଷ୍ପତ୍ତି ଦେବାଲାଗି ଅନୁରୋଧ କଲେ । ପ୍ରହ୍ଲାଦ କ'ଣ କରିବେ, ହଠାତ୍ କିଛି ସ୍ଥିର କରିପାରିଲେ ନାହିଁ । ହେଲେ କ'ଣ ହେଲା, ସେ ଥିଲେ ସତ୍ୟସନ୍ଧ ଓ ନ୍ୟାୟପରାୟଣ । ସତ୍ୟ ଓ ନ୍ୟାୟକୁ ସେ ତ୍ୟାଗକରି ଦେଇପାରିଲେ ନାହିଁ । ପରିଶେଷରେ ସେ ନିଜର ନିଷ୍ପତ୍ତି ଶୁଣାଇଦେଇ କହିଲେ—"ବାସ୍ତବରେ ଋଷିକୁମାର ହେଉଛନ୍ତି—ଶ୍ରେଷ୍ଠ !"

"ହେ ରାଜନ୍, ବଟୁବାମନ କହିଲେ—"ଆପଣ ସେମାନଙ୍କ ତୁଳନାରେ ଆଦୌ ଊଣା ନୁହନ୍ତି । ବରଂ ସମସ୍ତଙ୍କର ସଦ୍‌ଗୁଣ ଓ ସାରତ୍ୱ ଗ୍ରହଣ କରି ଆପଣ ନିଜ କୁଳର ଚନ୍ଦ୍ରମା ରୂପେ ଅବତୀର୍ଣ୍ଣ ହୋଇଛନ୍ତି । ଆପଣ ନିଜ ବାହୁବଳରେ ଦେବଗଣଙ୍କୁ ପରାସ୍ତ କରି ସ୍ୱର୍ଗ ଅଧିକାର କରିପାରିଛନ୍ତି । ତ୍ରିଲୋକ ବର୍ତ୍ତମାନ ଆପଣଙ୍କ କୀର୍ତ୍ତିରେ ପରିପ୍ଳାବିତ ହେଉଛି । ଏତେ ବଡ଼ ଶକ୍ତିଶାଳୀ ଏବଂ ତ୍ରିଲୋକାଧି-ପତି ହୋଇଥିଲେ ସୁଦ୍ଧା ଆପଣ ଭୋଗବିଳାସରେ ସମସ୍ତ ଅତିବାହିତ ନକରି କେବଳ ଯଜ୍ଞ, ଦାନ, ତପସ୍ୟା ଓ ଅତିଥି ଅଭ୍ୟାଗତଙ୍କ ସେବାରେ କାଳଯାପନ କରୁଛନ୍ତି । ଆପଣ କଳ୍ପବୃକ୍ଷ ସଦୃଶ ସର୍ବଦା ଯାଚକମାନଙ୍କ ମନୋରଥ ପରିପୂର୍ଣ୍ଣ କରିବା ପାଇଁ ତତ୍ପର ଅଛନ୍ତି । ଆପଣ ଚନ୍ଦ୍ରମା'ଙ୍କ ପରି ସମସ୍ତଙ୍କୁ ଶୀତଳତା ଏବଂ ସୂର୍ଯ୍ୟଙ୍କ ପରି ପ୍ରକାଶ ଦାନ କରୁଛନ୍ତି । ଆପଣ ପୃଥିବୀ ସଦୃଶ ସହନଶୀଳ ଏବଂ ବାୟୁପରି ଭୋଗ-ବାସନାରେ ନିର୍ଲିପ୍ତ ଅଟନ୍ତି । ଆପଣଙ୍କ ଯଶୋରାଶି ଆକାଶପରି ନିର୍ମଳ ଏବଂ ଜଳ ସଦୃଶ ଆପଣ ଯାଚକମାନଙ୍କର ଜୀବନ ଅଟନ୍ତି । ଆପଣଙ୍କର ସମସ୍ତ ଗୁଣ ଗୁରୁଦେବ ଶୁକ୍ରାଚାର୍ଯ୍ୟଙ୍କ ଅନୁଗ୍ରହର ଫଳ, ମହର୍ଷି ଶୁକ୍ରାଚାର୍ଯ୍ୟ ସର୍ବସମର୍ଥ ବ୍ୟକ୍ତି ଅଟନ୍ତି । ସେ ଆପଣଙ୍କୁ ସର୍ବଦା ହିତକର ଉପଦେଶ ପ୍ରଦାନ କରୁଅଛନ୍ତି । ତାଙ୍କର ଉପଦେଶ ଫଳରେ ଆପଣ ଧର୍ମପ୍ରତି ଅତୁଟ ଆସ୍ଥା ରଖିପାରିଛନ୍ତି ।"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ଜଣେ ସାମାନ୍ୟ ବଟୁବାମନଙ୍କ ମୁଖରୁ ଅନର୍ଗଳ ଭାଷଣ ଶୁଣି ମହାରାଜ ବଳି ଅତ୍ୟନ୍ତ ପ୍ରୀତ ହୋଇଗଲେ । ସେ

ମନେ ମନେ ଉଲ୍ଲସିତ ହୋଇ ଭାବିଲେ—'ଏହି ବଟୁହସ୍ତରେ ମୁଁ ମୋର ସର୍ବସ୍ୱ ଦାନ କରିଦେବି'। ତେଣୁ ସେ କହିଲେ—"ହେ ବ୍ରହ୍ମଚାରିନ୍, ହେ ବ୍ରାହ୍ମଣ ଦେବତା, ହେ ପରମ ପୂଜନୀୟ, ଆପଣ ଶୀଘ୍ର ଆପଣଙ୍କ ମନସ୍କାମନା ମୋ' ଆଗରେ ପ୍ରକାଶ କରନ୍ତୁ। ଆପଣ ଯାହାକିଛି ମାଗିବେ, ମୁଁ ତାହା ନିଶ୍ଚିତରେ ଅବଶ୍ୟ ପୂରଣ କରିବି ! ଆପଣ ମନରୁ ସଙ୍କୋଚ ତ୍ୟାଗକରି ମନୋବାଞ୍ଛା ପ୍ରକାଶ କରନ୍ତୁ।"

"ହେ ପରୀକ୍ଷିତ, ବଳିରାଜା ଏତେ ଆଗ୍ରହ ପ୍ରକାଶ କରିଥିଲେହେଁ ବଟୁବାମନ ହଠାତ୍ ଦାନ ପ୍ରାର୍ଥନା କଲେ ନାହିଁ।

## ଛପ୍ପୟ

"ନହୀ ହୁବକଚୌଂ କୋଗ ଠୌର ଦେଖେଂ ଶ୍ରୀପତ ଜବ।
ଧାର ସୂକ୍ଷ୍ମତନୂ ଅସୁର ହୃଦୟ ମହଁ ପ୍ରବିସେ ଡର ତବ॥
ଖୋଜେ ସ୍ୱରଗ ପତାଳ ଭୂମି ପେ ପତୋ ନ ପାୟୋ।
ସମୁଝିଁ ଭଗୌଡ଼ୋ ଛୋଡ଼ି ଲୌଟି ଅପନେ ଘର ଆୟୋ॥
ତୁମ ଉପଜେ ତିହି ବଂଶ ମହଁ, ବିଶ୍ୱବିଦିତ ରଣଧୀର ହୋ।
ଯାଚକ ଇଚ୍ଛା କଳ୍ପତରୁ, ସବ ଦାନିନ ମହଁ ବୀର ହୋ॥"



## ବାମନଙ୍କ ଦ୍ୱାରା
## ତ୍ରିପାଦ ଭୂମି ପ୍ରାର୍ଥନା

"ତସ୍ମାତ୍ ତ୍ୱତ୍ତୋ ମହୀମୀଷଦ୍ ବୃଣେଽହଂ ବରଦର୍ଷଭାତ୍ ।
ପଦାନି ତ୍ରୀଣି ଦୈତ୍ୟେନ୍ଦ୍ର ସଂମିତାନି ପଦା ମମ" ॥

(ଭା ୮. ୧୯. ୧୬.)

**ଛପ୍‌ପୟ**

"ରାଜନ୍ ! ତୁମ ଠାରେ ତନିକ ଭୂମି ହେଁ ଯାଚନ ।
କେବଲ ଜପ କେ ହେତୁ ଲଗେ ଯାମେ ସୁଖ ଆସନ ॥
ଦାନ ଗ୍ରହନ ଅତି ଅଧମ ତଉ ନବ ହ କରନ ହିତ ।
ଲୈବେ ମହଁ ନହଁ ଦୋଷ ଅଧିକ ତୃଷ୍ଣା ହୈ ନନ୍ଦିତ ॥
କେବଲ ଅପନେ ପାଇଁ ଠାଁ ତୀନ ପୈର ପୃଥିବୀ ଚହୁଁ ।
ଅଧିକ ଲେହୁଁ ନହିଁ ଏକ ଡଗ, ସତ୍ୟ ସତ୍ୟ ଭୂପତି କହୁଁ ॥"

ଅର୍ଥାତ୍—ଶ୍ରୀ ବାମନ ଭଗବାନ୍ ମହାରାଜ ବଳିଙ୍କୁ କହିଲେ—"ହେ ରାଜନ୍, ଆପଣ ସମସ୍ତ ବରଦାତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଏଣୁ ମୁଁ ଆପଣଙ୍କୁ ତ୍ରିପାଦ ମେଦିନୀ ଦାନ ମାଗୁଛି । ମୁଁ ମୋର ପାଦରେ ସେହି ତିନିପାଦ ଭୂମି ଗ୍ରହଣ କରିବି ।"

ବଡ଼ଲୋକମାନଙ୍କୁ ଅଳ୍ପ କିଛି ମାଗିଲେ, ସେମାନେ ନିଜକୁ ଅପମାନ ହେଲା ବୋଲି ଭାବନ୍ତି । କିନ୍ତୁ କପଟୀ ଭିକ୍ଷୁକମାନେ ପ୍ରଥମେ ଆଙ୍ଗୁଳି ଧରୁ ଧରୁ ବାହା ଗିଳିବା ନ୍ୟାୟରେ ଯେତେବେଳେ ଆଚରଣ ଦେଖାନ୍ତି, ବଡ଼ଲୋକମାନେ ଅତ୍ୟନ୍ତ ଧର୍ମସଙ୍କଟର ସମ୍ମୁଖୀନ ହୋଇଥାଆନ୍ତି । ସେମାନେ ଏପରି ଏକ ଅସୁବିଧାରେ ପଡ଼ିଯାଆନ୍ତି ଯେ, 'ହଁ' ବା 'ନା' କରିବାଲାଗି ତାଙ୍କ ଜିଭ ଲେଉଟେ ନାହିଁ । କିନ୍ତୁ ଯେଉଁମାନେ ଜ୍ଞାନୀ, ଗୁଣୀ ଓ ମନସ୍ୱୀ; ସେମାନେ ଥରେ ମାତ୍ର ବଚନ ଦାନ କରି ଆଉ

ଧନଲେହେଲେ ପଛଘୁଞ୍ଚା ଦିଅନ୍ତି ନାହିଁ । ସେମାନେ ସତ୍ୟର ପ୍ରତିପାଳନ କରି ଜଗତରେ ଅମର କୀର୍ତ୍ତି ରଖିଯାଆନ୍ତି । ସେମାନେ ଯାଚକ ନିକଟରୁ ପରାଜିତ ହୋଇ ମଧ୍ୟ ବିଜୟବାନା ଉଡ଼ାଇ ଦିଅନ୍ତି ।

ଶ୍ରୀ ଶୁକଦେବ କହିଲେ—"ହେ ପରୀକ୍ଷିତ, ମହାରାଜ ବଳି ବାରମ୍ବାର ଅନୁରୋଧ କଲେ ମଧ୍ୟ ପ୍ରଥମେ ବଟୁବାମନ କିଛି ମାଗିଲେ ନାହିଁ । ପରେ ସେ କହିଲେ —'ହେ ଦୈତ୍ୟେନ୍ଦ୍ର, ମୁଁ ଆପଣଙ୍କ ଅନୁରୋଧ ଏଡ଼ି ନପାରି ଦାନ ଗ୍ରହଣ କରିବାକୁ ଆଗ୍ରହୀ ହୋଇଛି ।"

ଏହା ଶୁଣି ବଳିରାଜା ଆଗ୍ରହାନ୍ୱିତ ହୋଇ କହିଲେ—"ହଁ...ହଁ...ଆପଣ ମନଇଚ୍ଛା ଦାନ ଗ୍ରହଣ କରନ୍ତୁ ।"

ତହୁଁ ବଟୁବାମନ କହିଲେ— ରାଜନ ! ଆପଣ ମୋତେ କିଛି ପୃଥ୍ୱୀ ଦାନ-କରନ୍ତୁ । ମୁଁ ଅବଶ୍ୟ ଲୋଭୀ ବ୍ରାହ୍ମଣ ନୁହେଁ; ତେଣୁ ମାତ୍ର ମୋ'ର ପାଦରେ ତିନିପାଦ ଭୂମି ଦାନ ମାଗୁଛି । ସେତିକ ଦାନ ଦେଇ ଆପଣ ମୋ ଅଭିଳାଷ ପୂରଣ କରନ୍ତୁ ।"

ଏହା ଶୁଣି ରାଜା ବଳି ହସି ହସି କହିଲେ—"ବୃଦ୍ଧ ଲୋକମାନେ ଠିକ୍ କହନ୍ତି ଯେ, ପିଲାମାନଙ୍କର ବୁଦ୍ଧି ନାହିଁ । ଆପଣ କଥା କହିବାରେ ବୃଦ୍ଧମାନଙ୍କୁ ପରାଜିତ କରିପାରନ୍ତି, କିନ୍ତୁ ଅବୋଧ ଶିଶୁପରି ଆପଣ ଏ' କ'ଣ ମାଗୁଛନ୍ତି ? ଆପଣ ନିଜର ପ୍ରତିଭା ବଳରେ ମୋତେ ମୁଗଧ କରିଛନ୍ତି । ତେଣୁ ତିପାଦ ମେଦିନୀ କ'ଣ, ସମଗ୍ର ମେଦିନୀ ଲାଭ କରିବା ପାଇଁ ଆପଣ ଦାନ ମାଗିପାରନ୍ତି ।"

ବଳିରାଜାଙ୍କ ଉକ୍ତି ଶୁଣି ବାମନ କହିଲେ—"ହେ ରାଜନ୍, ମାଗିବା ହେଉଛି —ସବୁଠାରୁ ନିକୃଷ୍ଟ କାର୍ଯ୍ୟ । ଦାନ ଗ୍ରହଣକୁ ଋଷିମାନେ ସର୍ବଦା ନିନ୍ଦା କରିଛନ୍ତି । ସେମାନେ ଅପରିଗ୍ରହ ବୃତ୍ତିକୁ ଭୂରି ଭୂରି ପ୍ରଶଂସା କରନ୍ତି । ଯେଉଁ ବ୍ୟକ୍ତି କେବଳ ଆବଶ୍ୟକତା ଅନୁସାରେ ଦାନ ଗ୍ରହଣ କରେ, ତେବେ ତାହା ଦୋଷାବହ ହେବ ନାହିଁ ।"

ତାହା ଶୁଣି ବଳିରାଜା କହିଲେ—"ହେଉ, ଆପଣଙ୍କ କଥା ମୁଁ ମାନି-ନେଉଛି । କିନ୍ତୁ ମାତ୍ର ତିନିପାଦ ଭୂମିରେ ଆପଣଙ୍କର କେଉଁ କାର୍ଯ୍ୟ ସିଦ୍ଧ ହେବ ? ସେତିକ ସ୍ଥାନରେ ହୁଏତ ଆପଣ କେବଳ ବସିପାରନ୍ତି, କିନ୍ତୁ ଶୋଇପାରିବେ ନାହିଁ । ସେତେବେଳକୁ ପୁଣି ମୋ' ପାଖକୁ ଆସି କହିବେ—ଆଉ ତିନିପାଦ ଭୂମି ଦାନ ଦିଅନ୍ତୁ । କାରଣ ଆପଣଙ୍କ ପରି ସୁଜ୍ଞାନୀ ବ୍ରହ୍ମଚାରୀଙ୍କ ପାଇଁ ଗୋଟିଏ ଆଶ୍ରମ, ଯଜ୍ଞଶାଳା ଓ ଗୋଶାଳା ଆଦି ଆବଶ୍ୟକ । ତା'ପରେ ମଧ୍ୟ ଅଧ୍ୟୟନ ଓ ଅଧ୍ୟାପନ ପାଇଁ ସ୍ଥାନ

ଆବଶ୍ୟକ । ବାରମ୍ବାର ମୋ ନିକଟକୁ ଦାନ ଗ୍ରହଣ ପାଇଁ ଆସିବା ଅପେକ୍ଷା ଏକାଥରକେ ଆବଶ୍ୟକୀୟ ଭୂମି ମାଗିନିଅନ୍ତୁ । ଦାନ ଦେବା ସମୟରେ ମୁ ଗୋଟିଏ ବିଷୟ ପ୍ରତି ବିଶେଷ ଧ୍ୟାନ ଦେଇଥାଏ । ଯେଉଁ ବ୍ୟକ୍ତି ମୋ'ଠାରୁ ଦାନ ଗ୍ରହଣ କରୁଛି, ଜୀବନରେ ସେ ଆଉ କାହାର ଆଗରେ ଯେପରି ହାତ ନ ପାତେ । ଆପଣଙ୍କ ପାଦ ଯୋଡ଼ିକ ନିତାନ୍ତ ଗ୍ରେଟ । ସେଥିରେ ମାପି କରନେଲେ ତିନିପାଦ ଭୂମି କେତେ ହେବ ?"

ବଟୁବାମନ କହିଲେ—ରାଜନ୍, ! "ମୋର ପାଦଦୁଇଟି ଗ୍ରେଟ ହେଲେ-ମଧ୍ୟ ଶରୀର ଖୁବ୍ ଗ୍ରେଟ । କେବଳ ଗୋଟିଏ ସ୍ଥାନରେ ବସି ଧ୍ୟାନ, ଯୋଗ ଓ ତପସ୍ୟା କରିବା ପାଇଁ ମୋର ତିନିପାଦ ଭୂମି ଆବଶ୍ୟକ । କାରଣ, ଅନ୍ୟର ଭୂମିରେ ବସି ଜପକଲେ, ଜପ ଫଳର ଅର୍ଦ୍ଧାଂଶ ଭୂମି ମାଲିକଙ୍କ ନିକଟକୁ ଚାଲିଯାଏ । ତେଣୁ ମୁଁ କେବଳ ଗୋଟିଏ ସ୍ଥାନରେ ବସିବା ପାଇଁ ତିନିପାଦ ଭୂମି ମାଗୁଛି ।"

ବାମନଙ୍କ ମୁଖରୁ ଅକାଟ୍ୟ ଯୁକ୍ତି ଶୁଣି ବଳିରାଜା କହିଲେ—"ମହାଶୟ, ଆପଣଙ୍କ ଯୁକ୍ତି ଯଥାର୍ଥ । ତଥାପି ମନରେ ସନ୍ତୋଷ ଜାତ ହେଲଭଳି ଭୂମିଦାନ ଗ୍ରହଣ କରନ୍ତୁ ।".

ରାଜାଙ୍କ ଯୁକ୍ତିକୁ ପ୍ରତିହତ କରି ବଟୁବାମନ କହିଲେ—"ହେ ରାଜନ୍, ଯେଉଁ ବ୍ୟକ୍ତି ତ୍ରିପାଦମେଦିନୀ ପାଇ ସନ୍ତୁଷ୍ଟ ନହେବ, ସେ ସପ୍ତଦ୍ୱୀପା ଭୂମଣ୍ଡଳ ପାଇଲେ ମଧ୍ୟ ଆନନ୍ଦିତ ହେବ ନାହିଁ । କାରଣ ତୃଷ୍ଣାର ପରିସମାପ୍ତି ନାହିଁ । ମନୁ, ପ୍ରିୟବ୍ରତ, ଗୟ, ଭଗୀରଥ, ହିରଣ୍ୟକଶିପୁ ଆଦି ମହା ମହା ବୀରଗଣ ସସାଗରା ଧରାର ଅଧିପତି ହୋଇ ମଧ୍ୟ ତୃଷ୍ଣାରେ ବଶୀଭୂତ ହୋଇ, ସେହି ଭୂମିପାଇଁ ସେମାନେ ଯୁଦ୍ଧ କରିଛନ୍ତି । ଭୋଗର ବଶବର୍ତ୍ତୀ ଯେତେହେଲେ ମଧ୍ୟ ଲିପ୍‌ସା ପ୍ରଶମିତ ହୁଏନାହିଁ । ମହାରାଜ ଯଯାତି ନିଜର ବୃଦ୍ଧାବସ୍ଥା ପୁତ୍ରକୁ ଅର୍ପଣକରି, ଭୋଗ ବାସନାରେ ଲିପ୍ତ ହୋଇପଡ଼ିଲେ । କିନ୍ତୁ ପରିଶେଷରେ ସେ ନିଜେ କହିଥିଲେ—ତୃଷ୍ଣା କେବେହେଲେ ଭୋଗବିଳାସରେ ପ୍ରଶମିତ ହୁଏ ନାହିଁ, ବରଂ ତାହା ଘୃତଧାରାରେ ଅଗ୍ନି ବୃଦ୍ଧିଲାଭ କଲାପରି ବୃଦ୍ଧି ହୋଇ ଜଳିଉଠେ । ଏଣୁ ହେ ରାଜନ୍, ମୁଁ ମାତ୍ର ତ୍ରିପାଦ ମେଦିନୀରୁ ଅଧିକ ଦାନ ଗ୍ରହଣ କରିବି ନାହିଁ ।"

ବଳି କହିଲେ—"ହେ ବ୍ରହ୍ମଦେବ, ତ୍ରିପାଦ ମେଦିନୀ ନିଅନ୍ତୁ, ଅଥବା ତ୍ରିଲୋକ ମେଦିନୀ ନିଅନ୍ତୁ, ମୋର ସେଥିରେ ଆପତ୍ତି ନାହିଁ । ଆପଣ ଯାହା ନେବେ ମୁଁ ଦେବାଲାଗି ପ୍ରସ୍ତୁତ ଅଛି । କିନ୍ତୁ ଏହା ମୋ' ପଦ ପ୍ରତିଷ୍ଠାର ବିରୁଦ୍ଧାଚରଣ କରୁଛି । ଆପଣ ଆକାରରେ ନିତାନ୍ତ କ୍ଷୁଦ୍ର, ତେଣୁ ଯେତେ ଗ୍ରେଟ ଦାନ ଗ୍ରହଣ

କଲେମଧ୍ୟ ଆପଣଙ୍କ ମନରେ ସଙ୍କୋଚ ଜାତ ହେବ ନାହିଁ, କିନ୍ତୁ ମୋ' ଭଳି ଜଣେ ତ୍ରିଲୋକାଧିପତି ପକ୍ଷରେ ଏହା ହେବ ଏକ ଅପମାନଜନକ ବୃତ୍ତାନ୍ତ । ତେଣୁ ଆପଣ ମୋ' ସମ୍ମାନ ଅନୁଯାୟୀ ଦାନ ଗ୍ରହଣ କରନ୍ତୁ ।"

କପଟ ବେଶଧାରୀ ବିଷ୍ଣୁ କହିଲେ—"ରାଜନ୍, ମୁଁ ବ୍ରାହ୍ମଣ । ସନ୍ତୋଷ ହେଉଛି—ବ୍ରାହ୍ମଣର ଶ୍ରେଷ୍ଠ ଧନ । ବ୍ରାହ୍ମଣ ଆବଶ୍ୟକତାରୁ ଅଧିକ ଧନ ସଂଗ୍ରହ କଲେ, ପତନର ଗର୍ତ୍ତ ଆଡ଼କୁ ଅଗ୍ରସର ହୋଇଥାଏ । ଯାହା କିଛି ମିଳିଲା, ସେଥିରେ ସନ୍ତୁଷ୍ଟ ହେଲେ, ବ୍ରାହ୍ମଣର ବ୍ରହ୍ମତ୍ୱ ପ୍ରଶଂସିତ ହୁଏ । ମୋର ଆବଶ୍ୟକତା ତ୍ରିପାଦ-ମେଦିନୀରେ ପୂରଣ ହୋଇପାରିବ ! ମୁଁ ଆଉ ଅଧିକ ଦାନ ନେଇ କରିବି କ'ଣ ? ଅଧିକ ସଂଗ୍ରହ କଲେ, ପାପର ଭାଗୀ ହେବାକୁ ପଡ଼ିବ ।"

ଦୈତ୍ୟରାଜ ବାଲବ୍ରହ୍ମଚାରୀଙ୍କ ହଠ ଲକ୍ଷ୍ୟକରି ରହିଛି—ରାଜହଠ, ସ୍ତ୍ରୀହଠ, ଓ ବାଳହଠ । ମୁଁ ନିଜେ ରାଜା ହୋଇଥିଲେହେଁ, ହଠ କରିବାର କେବେ ସୁଯୋଗ ପାଇନାହିଁ । ମୋ' ପତ୍ନୀ ଏକନିଷ୍ଠ ପତିବ୍ରତା । ତେଣୁ ସେ ମୋ' ଆଗରେ କେବେ-ହେଲେ କୌଣସି ବିଷୟରେ ହଠ କରିନାହିଁ । କିନ୍ତୁ ଆଜି ବାଳକର ହଠ ବିଷୟରେ ମୋର ପ୍ରତ୍ୟକ୍ଷ ଧାରଣା ହୋଇଛି । ଆପଣଙ୍କର ଏହି ଛୋଟ ଛୋଟ ପାଦ ଦୁଇଟିରେ କେତେ ଭୂମି ହେବ ଯେ, ଆପଣ ତିନିପାଦ ଭୂମି ନେବାପାଇଁ ଜିଦ୍ ଧରିଛନ୍ତି ! ଏତିକିମାତ୍ର ଭୂମି ଦାନ ଦେବାଲାଗି ମୋତେ ଲଜ୍ଜାବୋଧ ହେଉଛି । ଆପଣଙ୍କୁ ମୋର ଅନୁରୋଧ, ଆପଣ ଆଉ କିଛି ମାଗିନିଅନ୍ତୁ ।"

ବଟୁବାମନ ପୂର୍ବପରି ଜିଦ୍ ଧରି କହିଲେ—"ମହାରାଜ, ଏତିକି ଭୂମିରେ ମୋର କାର୍ଯ୍ୟ ମେଣ୍ଟିପାରିବ । ମୁଁ ଆଉ ଅଧିକ ଭୂମି ସଂଗ୍ରହ କରି ପାପର ଭାଗୀ-ଦାର ହେବାକୁ ଚାହେଁ ନାହିଁ । ତାହା ମଧ୍ୟ ଧର୍ମ ଓ ନ୍ୟାୟ ସଙ୍ଗତ ହେବନାହିଁ ।"

ବଳିରାଜା ହସି ହସି କହିଲେ—"ହେଉ, ଯାହା ଆପଣଙ୍କ ଇଚ୍ଛା ! ଆପଣ ତ୍ରିପାଦ ଭୂମି ଗ୍ରହଣ କରନ୍ତୁ । କିନ୍ତୁ ମୋର ଅନୁରୋଧ ପାଦରେ ମାପିବାବେଳେ ଆପଣ ଅଧିକ ଭୂମିକୁ ପାଦ ବଢ଼ାଇବେ ।"

ହସି ହସି ବଟୁବାମନ କହିଲେ—"ଦାନ ଗ୍ରହଣ ସମୟରେ ସେ ବିଷୟ ବିଚାର କରିବ । ଆପଣ ପ୍ରଥମେ ଦାନ ଦେବାପାଇଁ ସଂକଳ୍ପ କରନ୍ତୁ ।"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ପରୀକ୍ଷିତ, ବାମନଙ୍କ କଥାମାନି ବଳିରାଜା ତାଙ୍କୁ ଦାନ ଦେବାଲାଗି ଉଦ୍ୟତ ହେଲେ । ମହର୍ଷି ଶୁକ୍ରାଚାର୍ଯ୍ୟ ବଟୁ-

ବାମନଙ୍କ ପ୍ରକୃତ ସ୍ୱରୂପ ସମ୍ବନ୍ଧରେ ବେଶ୍ ଜାଣିଥିଲେ । ତେଣୁ ସେ ବଳିରାଜାଙ୍କୁ ସଂକଳ୍ପ ନ କରିବାଲାଗି ଅନେକ ପ୍ରକାର ନୀତିପୂର୍ଣ୍ଣ ଉପଦେଶ ଦେବାକୁ ଲାଗିଲେ ।"

## ଛପ୍ପୟ

"ହଁସି ବଲି ବୋଲେ ବଟୋ ! ବାତ ବୃଦ୍ଧ କି ଓ୍ୱନ ଭାଖୋ ।
କିନ୍ତୁ ସ୍ୱାର୍ଥ ମହଁ ବୁଦ୍ଧି ତନିକ ବାମନ ନହିଁ ରାଖୋ ।।
ମୋ କୁଁ କରି ସନ୍ତୁଷ୍ଟ ତୀନ ପଗ ପୃଥ୍ୱୀ ଭିକ୍ଷା ।
ମାଁଗୋ ମାନୋ ମିଲୀ ନହଁୀ ଦ୍ୱାରଥ କୀ ଶିକ୍ଷା ।।
କପଟୀ ବଟୁ ବୋଲେ ବଦେ, ହୌଂ ଲୋଭୀ ବାମନ ନହୀଂ ।
ତୁରତ ଦେହୁ ସନ୍ଦେହ ମନ, ଫିର୍ ନାହୀଂ କର ଦୈଂ କହୀଂ"



# ଶୁକ୍ରାଚାର୍ଯ୍ୟଙ୍କୁ ଉପଦେଶ

"ଏଷ ତେ ସ୍ଥାନମୈଶ୍ୱର୍ଯ୍ୟଂ ଶ୍ରିୟଂ ତେଜୋ ଯଶଃ ଶ୍ରୁତମ୍ ।
ଦାସ୍ୟତ୍ୟାଚ୍ଛିଦ୍ୟ ଶକ୍ରାୟ ମାୟାମାଣବକୋ ହରିଃ ॥

(ଭା. ୮ । ୧୯ । ୩୨ )

## ଛପ୍ପୟ

ଲୈ ସୁବର୍ଣ୍ଣ ଜଲପାତ୍ର କହେଁ ବଲି ଅଚ୍ଛା, ଲୀଜୈ ।
ଶୁକ୍ର ବୀଚ ମହଁ ରୋକି କହେଂ ନୃପ ଭୂମି ନ ଦୀଜୈ ॥
ୟହ ବଟୁ ବାମନ ନହୀଂ ବଦଲି କେ ବେଶ ବନାୟୋ ।
କମଲପତି ୟହ ବିଷ୍ଣୁ କପଟ ତେଂ ଠଗିବେ ଆୟୋ ॥
ଜବ ଫୈଲୱେ ପୈର ନିଜ, ବଟୁ ବିରାଟ ବନ ଜାୟଗୋ ।
ର ଜ୍ୟ ଭ୍ରଷ୍ଟ ଅସୁରନ କରୈ, ଅମରନ ଅଧିପ ବନାୟୋଗୋ ॥"

ଅର୍ଥାତ୍ ମହାରାଜ ବଳିଙ୍କୁ ବୁଝାଇବାକୁ ଯାଇ ଶୁକ୍ରାଚାର୍ଯ୍ୟ କହିଲେ— "ରାଜନ୍, ଏହାଙ୍କୁ ସାଧାରଣ ବ୍ରାହ୍ମଣ ବୋଲି ମନେକରନ୍ତୁ ନାହିଁ । ଏ ତୁମର ଐଶ୍ୱର୍ଯ୍ୟ, ଲକ୍ଷ୍ମୀ ତଥା ବିଶ୍ୱବିଖ୍ୟାତ ଯଶକୁ ତୁମଠାରୁ ଛଡ଼ାଇ ନେଇ, ଇନ୍ଦ୍ରଙ୍କୁ ଦେଇଦେବେ । ଏ' ମାୟାରେ ବାମନ ରୂପ ଧାରଣ କରିଛନ୍ତି, କିନ୍ତୁ ପ୍ରକୃତରେ ଏ' ହେଉଛନ୍ତି —ବିଷ୍ଣୁ ।

ଯଜମାନଙ୍କ ହିତପାଇଁ ଯେଉଁ ବ୍ୟକ୍ତି ସମସ୍ତ କାର୍ଯ୍ୟ କରନ୍ତି, ତାଙ୍କୁ ପୁରୋହିତ କୁହାଯାଏ । ଯଜମାନ ଓ ପୁରୋହିତଙ୍କ ମଧ୍ୟରେ ପିତାପୁତ୍ରର ସମ୍ପର୍କ ରହିଥାଏ । ଯଜମାନଙ୍କ ଘରକୁ ପୁରୋହିତ ନିଜର ଘରବୋଲି ମନେକରେ ଏବଂ ତାଙ୍କର ହିତକାମନାରେ ସେ ତତ୍ପର ରହିଥାଏ । ଯଜମାନ ପୁରୋହିତଙ୍କୁ ନ ପଚାରି କୌଣସି ଇହଲୌକିକ କିମ୍ବା ପାରଲୌକିକ କାର୍ଯ୍ୟ କରନ୍ତି ନାହିଁ । ପୁରୋହିତ ବଶିଷ୍ଠଙ୍କ ଆଜ୍ଞାରେ ଜଣେ ରାଜା ଯୁବରାଜଙ୍କୁ ସାମାନ୍ୟ ଅପରାଧରେ ରାଜ୍ୟରୁ ତଡ଼ି

ଦେଇଥିଲେ । ମୋଟ ଉପରେ କହିବାକୁ ଗଲେ, ଯଜମାନ ପୁରୋହିତଙ୍କ ଆଜ୍ଞାକୁ ଅବଧାନ ହୋଇ ପାଳନ କରୁଥିଲେ ଏବଂ ପୁରୋହିତ ମଧ୍ୟ ଯଜମାନର ସର୍ବବିଧ ମଙ୍ଗଳ କାମନା କରୁଥିଲେ । ତେଣୁ ଉଭୟଙ୍କ ସମ୍ପର୍କକୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ତଥା ପବିତ୍ର ମନେ କରାଯାଉଥିଲା ।

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ଅନେକ ସମୟ ପର୍ଯ୍ୟନ୍ତ ଭକ୍ତ ପ୍ରହ୍ଲାଦ ବଳିବା ପରେ ବାମନ ତିନିପାଦ ଭୂମିରୁ ଅଧିକ ନେବାପାଇଁ କୌଣସିମତେ ପ୍ରସ୍ତୁତ ହେଲେ ନାହିଁ । ତହୁଁ ବଳି ନିରାଶ ହୋଇ କହିଲେ—"ବ୍ରହ୍ମନ୍, ଯାହା ଆପଣଙ୍କ ଇଚ୍ଛା । ଆପଣ ମୋ' ରାଜ୍ୟ ମଧ୍ୟରେ ଯେଉଁ ସ୍ଥାନକୁ ପସନ୍ଦ କରୁଛନ୍ତି, ସେଠାରୁ ତିନିପାଦ ମେଦିନୀ ଗ୍ରହଣ କରନ୍ତୁ । ମୁଁ ଏହା ସଂକଳ୍ପ କରୁଛି ।

ଏତିକ କହି ସେ ହାତରେ ସୁବର୍ଣ୍ଣ ଝାରିରୁ ଜଳ ଗଡ଼ାଇବାମାତ୍ରେ ଶୁକ୍ରାଚାର୍ଯ୍ୟ ହସି ହସି କହିଲେ—"ରାଜନ୍, ଆପଣ ଏ କ'ଣ କରୁଛନ୍ତି ?"

ଆନନ୍ଦରେ ଉଲ୍ଲସିତ ହୋଇ ବଳିରାଜ କହିଲେ—"ଗୁରୁଦେବ, ଆପଣ କ'ଣ କିଛି ଏ ଯାଏଁ ଶୁଣିନାହାନ୍ତି ? ମୁଁ ଏହି ସୁନ୍ଦର ବାଳ ବ୍ରହ୍ମଚାରୀ ବଟୁବାମନଙ୍କୁ 'ତିନିପାଦ ମେଦିନୀ' ଦାନ କରିବାକୁ ଯାଉଛି ।"

ଦୃଢ଼ସ୍ୱରରେ ପ୍ରତିବାଦ ଜଣାଇ ଶୁକ୍ରାଚାର୍ଯ୍ୟ କହିଲେ—"ନାଃ···ଆପଣ ଏହାଙ୍କୁ ଭୂମିଦାନ ଦେଇପାରିବେ ନାହିଁ । ଏଥିପାଇଁ ସଙ୍କଳ୍ପ କରିବା ଉଚିତ ହେବ ନାହିଁ ।

ଏହା ଶୁଣି ମହାରାଜ ବଳି ଅବାକ୍ ହୋଇ ଗୁରୁଙ୍କ ମୁହଁକୁ ଚାହିଁ ରହିଲେ । ସେ ମନେ ମନେ ଭାବିଲେ—"ଆଜିଯାଏ କେବେହେଲେ ଦାନ ଦେବା ଲାଗି ଗୁରୁଦେବ ମୋତେ ବାରଣ କରିନାହାନ୍ତି, ଆଜି ଏ କ'ଣ ? ସେ ବିସ୍ମିତ ହୋଇ ପଚାରିଲେ—"ଗୁରୁଦେବ, ଜଣେ କ୍ଷୁଦ୍ର ବ୍ରାହ୍ମଣ କୁମାରକୁ ଆପଣ ମାତ୍ର ତିନିପାଦ ଭୂମି ଦେବାଲାଗି ବାରଣ କରୁଛନ୍ତି କାହିଁକି ? ଆପଣଙ୍କ ଉଦ୍ଦେଶ୍ୟ ମୁଁ ଆଦୌ ବୁଝିପାରୁନାହିଁ ।

ଶୁକ୍ରାଚାର୍ଯ୍ୟ ମୁହଁରେ କୁଟୀଳ ହାସ୍ୟରେଖା ଫୁଟାଇ କହିଲେ—"ସେ ବ୍ରାହ୍ମଣ ହୋଇଥିଲେ ମୋର କିଛି ଆପତ୍ତି ନଥାନ୍ତା । କିନ୍ତୁ ଏ ଆପଣଙ୍କୁ ଠକିବାକୁ ଆସିଛନ୍ତି । ଏ ହେଉଛନ୍ତି—କପଟ ବେଶଧାରୀ ବିଷ୍ଣୁ । ଏ ବଟୁବାମନ ରୂପ ଧାରଣ କରି, ଏଠାରେ ମାୟାଜାଲ ରଚନା କରିବାକୁ ଆସିଛନ୍ତି । ଏ ନିଜକୁ ଲୁଚାଇବା ଲାଗି ଅନେକ ଉପାୟ ଅବଲମ୍ବନ କରିଛନ୍ତି, କିନ୍ତୁ ମୋ' ଆଖିକୁ ଠକିଦେବା ଆଦୌ

ସହଜ ନୁହେଁ । ମୁଁ ତାଙ୍କର ସମସ୍ତ କାର୍ଯ୍ୟକଳାପ ଜାଣିଛି । ଏ ବଡ଼ ମାୟାବୀ । ନରସିଂହ ରୂପ ଧାରଣ କରି ଏ' ହିରଣ୍ୟକଶିପୁ ଓ ଶୂକର ରୂପ ଧରି ହିରଣ୍ୟାକ୍ଷଙ୍କୁ କପଟରେ ବଧ କରିଛନ୍ତି । ବର୍ତ୍ତମାନ ବାମନ ରୂପ ଧାରଣ କରି ତୁମକୁ ଠକିବା ଲାଗି ଆସିଛନ୍ତି । ତେଣୁ ଏ' ଭୂମିଦାନ ମୁଁ ଆଦୌ କରାଇ ଦେବିନାହିଁ !"

ବଳିରାଜା କହିଲେ—"ଗୁରୁଦେବ ! ଆପଣ ସମସ୍ତଙ୍କୁ ସନ୍ଦେହ କଲେ ଚଳିବ କିପରି ? ସେ ଯାହା ହେଉ ନା କାହିଁକି, ମୋ' ନିକଟକୁ ସେ ଭିକ୍ଷୁକ ହୋଇ ଆସିଛନ୍ତି । ସେ ମାତ୍ର ତ୍ରିପାଦ ଭୂମିଦାନ ମାଗୁଛନ୍ତି । ଆପଣ ଆପତ୍ତି କରୁଛନ୍ତି କାହିଁକି ?"

ନିଜ ମନ୍ତବ୍ୟ ଉପରେ ଗୁରୁତ୍ୱ ଦେଇ ଶୁକ୍ରାଚାର୍ଯ୍ୟ କହିଲେ—"ତ୍ରିପାଦ ଭୂମି ବୋଲି ଭାବନ୍ତୁ ନାହିଁ ମହାରାଜ ! ସେ ତ୍ରିପାଦରେ ଆପଣଙ୍କର ସମସ୍ତ ବୈଭବ ଲୁଣ୍ଠନ କରିନେବେ । ସେ ତ୍ରିପାଦରେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ମାଗିନେଇ ଦେବ-ଗଣଙ୍କୁ ଅର୍ପଣ କରିଦେବେ । ତାଙ୍କର ଉଦ୍ଦେଶ୍ୟ ମୁଁ ଭଲଭାବରେ ଜାଣିଛି । ଦେବତାମାନଙ୍କ କାର୍ଯ୍ୟସାଧନ ଲାଗି, କଶ୍ୟପଙ୍କ ଔରସରେ ସେ ଅଦିତିଙ୍କ ଗର୍ଭରେ ଜନ୍ମଗ୍ରହଣ କରିଅଛନ୍ତି । ଏହାଙ୍କୁ ତୁମେ କିଛି ଦେବାପାଇଁ ସଙ୍କଳ୍ପ କରିବା ଅର୍ଥ-ସର୍ବସ୍ୱ ହରାଇ ବସିବା । ମନେରଖ, ତୁମର ଦାନାପଣିଆ ଫଳରେ ଅସୁର କୁଳର ସାଙ୍ଘାତିକ ଅମଙ୍ଗଳ ସାଧିତ ହେବ । ଅସୁରମାନେ ଧନ, ଧାନ୍ୟ, ବଳ, ବୁଦ୍ଧି, ଖ୍ୟାତି, ପ୍ରତିପତ୍ତି ହରାଇ, ଶ୍ରୀହୀନ ହୋଇଯିବେ । ଆଜି ଯେପରି, ଆପଣଙ୍କ ଭୟରେ ଦେବଗଣ ନାନା କଷ୍ଟ ଭୋଗକରି ଆତ୍ମଗୋପନ କରି ବୁଲୁଛନ୍ତି, ଆପଣଙ୍କ ବିବେକହୀନ କାର୍ଯ୍ୟ ଫଳରେ କାଲି ପୁଣି ଅସୁରମାନେ ସେହିପରି ଯାଯାବର ଜୀବନଯାପନ କରିବେ । ତେଣୁ ମୁଁ କୌଣସିମତେ ଏ' ଦାନ କରାଇ ଦେବିନାହିଁ ।"

ବଳିରାଜା ଏହା ଶୁଣି ମନେ ମନେ ନିତାନ୍ତ ଦୁଃଖିତ ହୋଇ କହିଲେ—"ଗୁରୁଦେବ, ଗୋଟିଏ ଟେଣ୍ଟିଆ ପିଲାକୁ କେନ୍ଦ୍ରକରି ଆପଣ ଏ'ସବୁ କ'ଣ ବକି ଯାଉଛନ୍ତି ? ଏହି ବ୍ରାହ୍ମଣ ବାଳକ ପ୍ରଥମରୁ ସଙ୍କୋଚ କରି କିଛି ମାଗୁ ନଥିଲେ, କିନ୍ତୁ ମୁଁ ତାଙ୍କୁ ବାଧ କରିବାରୁ ସେ ମୋରି ଅନୁରୋଧ ସ୍ୱୀକାର କରି ମାତ୍ର ତ୍ରିପାଦ ମେଦିନୀ ମାଗିଛନ୍ତି । ସେତକ ଦେଇଦେବାରେ ଆପଣ ବାଧା ସୃଷ୍ଟି କରୁଛନ୍ତି । ଜଣେ ବ୍ରାହ୍ମଣ ଅନ୍ୟ ଜଣେ ବ୍ରାହ୍ମଣକୁ ଦେଖିଲେ 'ଶ୍ୱାନଙ୍କ ପରି ଗର୍ଜି ଉଠନ୍ତି' ବୋଲି ଯେଉଁ ଲୋକୋକ୍ତି ରହିଛି, ତାହା ଏବେ ସାର୍ଥକ ହେବାକୁ ଯାଉଛି । ସେ ଯାହା ହେଉ, ବଟୁବାମନ ଯେ କେହି ହୁଅନ୍ତୁ ନା କାହିଁକି; ଥରେ ପ୍ରତିଜ୍ଞା କରି ମୁଁ ପ୍ରତ୍ୟାଖ୍ୟାନ କରିବି କିପରି ? ଆପଣ କ'ଣ ଚାହାନ୍ତି ଯେ, ମୁଁ ମିଥ୍ୟାବାଦୀ ରୂପେ ଲୋକରେ ଉପହସିତ ହୁଏ ? ନିଜେ ସ୍ୱତଃପ୍ରବୃତ୍ତ ଭାବରେ ପ୍ରତିଜ୍ଞା କରି, ସେଥିରୁ ଓହରି ଯାଏ ?"

ଶୁକ୍ରାଚାର୍ଯ୍ୟ ଅତ୍ୟନ୍ତ ଗମ୍ଭୀର ସ୍ୱରରେ କହିଲେ—"ମହାରାଜ, ଆପଣ ପାଗଳ ହୋଇଯାଇଛନ୍ତି । ଯାହାକୁ ଏହି ବଟୁ ମିଥ୍ୟାବାଦୀ ବୋଲି ପ୍ରମାଣିତ କରିବାକୁ ଚାହିଁବେ, ସେ ସତ୍ୟବାଦୀ ହୋଇପାରିବ କିପରି ? ଯାହାର ପ୍ରତିଜ୍ଞାକୁ ସେ ବିଫଳ କରିବାକୁ ଚାହିଁବେ, ତାକୁ ସଫଳ କରିବାର ଶକ୍ତି କାହାର ? ଆପଣ ଯେଉଁ ପାଦଯୋଡ଼ିକୁ ଠିକ ଠିକ ପାଦବୋଲି କହୁଛନ୍ତି, ତାହା ହେଉଛି—ଛଦ୍ମପାଦ । ଭୂମି ମାପିବା ସମୟରେ ଆପଣ ଦେଖିବେ, ଏହି ବଟୁବାମନଙ୍କର ଗୋଟିଏ ପାଦ ସମଗ୍ର ପୃଥିବୀ ଓ ପାତାଳକୁ ଆବୋରି ବସିବ । ଅନ୍ୟ ଗୋଟିଏ ପାଦରେ ସେ ସ୍ୱର୍ଗକୁ ଅଧିକାର କରିବା ପରେ, ତୃତୀୟ ପାଦ ପାଇଁ ଭୂମି ଦାନ ଆପଣ ଦେବେ କେଉଁଠୁ ? ସେତେବେଳେ ଆପଣ ପ୍ରତିଜ୍ଞା କରି ବିଫଳ ହେବେ ନାହିଁକି ? ସେହି ପ୍ରତିଜ୍ଞା ଭଙ୍ଗ ବିଫଳରେ ଆପଣ ନର୍କଗାମୀ ହେବେ ନାହିଁକି ? ସେତେବେଳେ ମିଥ୍ୟାବାଦୀ ହେବା ଅପେକ୍ଷା ଏବେଠାରୁ ସ୍ପଷ୍ଟଭାବରେ କହନ୍ତୁ—ନାଃ, ମୁଁ ଏପରି ଅସ୍ୱାଭାବିକ ଦାନଦେଇ ପାରିବି ନାହିଁ !"

ଅତ୍ୟନ୍ତ ଦୀନଭାବରେ ରାଜା ବଳି କହିଲେ—"ଗୁରୁଦେବ, ଆପଣ ଏପରି କହନ୍ତୁ ନାହିଁ ! ଥରେ ମୋ' ମୁଖରୁ ଯେଉଁ ସଙ୍କଳ୍ପ ବାହାରି ଯାଇଛି, ସମସ୍ତ ଶକ୍ତିର ବିନିମୟରେ ମୁଁ ତାକୁ ପାଳନ କରିବା ଲାଗି ଚେଷ୍ଟା କରିବି !"

"ମହାରାଜ !" ଅତ୍ୟନ୍ତ ବ୍ୟଥିତ କଣ୍ଠରେ ଶୁକ୍ରାଚାର୍ଯ୍ୟ କହିଲେ—"ମୁଁ ଆପଣଙ୍କୁ ପୁତ୍ରବତ୍ ସ୍ନେହ କରେ ! ସେହି ଅଧିକାରରେ ଆପଣଙ୍କ ହିତ ଚିନ୍ତାକରି କହୁଛି ! ଭାବାବେଶରେ ଅନେକ କଥା ମୁହଁରୁ ବାହାରିଯାଏ । କିନ୍ତୁ ପ୍ରାଣୀ ପ୍ରଥମେ ନିଜର ତଥା ନିଜ କୁଳର ହିତ ଚିନ୍ତା କରିବା ଉଚିତ ନୁହେଁ କି ?"

ବଳିରାଜା ଅତ୍ୟନ୍ତ ବିନମ୍ରୀ ହୋଇ କହିଲେ—"ଗୁରୁଦେବ, ଆପଣ ମୋତେ ସଦାସର୍ବଦା ଦାନର ମହତ୍ତ୍ୱ ସମ୍ବନ୍ଧରେ ବୁଝାଇ ଆସିଛନ୍ତି । ଆପଣ ମୋତେ ବୁଝାଇ କହିଛନ୍ତି—ନୌକାରେ ପାଣି ଭରିଗଲେ ଏବଂ ଭଣ୍ଡାରରେ ଧନ ବୃଦ୍ଧିଲାଭ କଲେ ତାକୁ ଦୁଇହାତରେ ବାହାରକୁ ଫିଙ୍ଗି ଦେବ । ଅର୍ଥାତ୍ ନୌକାରୁ ଜଳ ବାହାର କରିଦେଇ ଆତ୍ମରକ୍ଷା କରିବା ଯେପରି ନିତାନ୍ତ ଆବଶ୍ୟକ, ସେହିପରି ସମୃଦ୍ଧ ଧନଭଣ୍ଡାରରୁ ଧନ ଦାନ କରି କୀର୍ତ୍ତି ରକ୍ଷା କରାଯିବ ଏକାନ୍ତ ବିଧେୟ । ଦାନ ଫଳରେ ଇହଲୋକ ଓ ପରଲୋକ ସମୃଦ୍ଧ ହୋଇଥାଏ ।"

"ମୁଁ ତାହା କେବେହେଲେ ଅସ୍ୱୀକାର କରିନାହିଁ ! ଏବେ ମଧ୍ୟ କହୁଛି—ଦାନ କରିବା ଆଦୌ କୁକର୍ମ ନୁହେଁ । କିନ୍ତୁ ଆତ୍ମଘାତୀ ହୋଇ ଦାନ ଦେବାକୁ ମୁଁ ଆଦୌ ପସନ୍ଦ କରେ ନାହିଁ । ଘରର ପିଲା କୁଟୁମ୍ବଙ୍କୁ ଭୋକରେ ମାରି, ମୁକ୍ତ ହସ୍ତରେ

ଦାନ କରିବା କୌଣସିମତେ ପୁଣ୍ୟ ନୁହେଁ । ବରଂ ତାହା ମୋ' ମତରେ ପାପ ! ଅଧର୍ମ !! ଯେଉଁମାନେ ଆପଣଙ୍କ ଆଶ୍ରୟ କରି ରହିଛନ୍ତି, ସେମାନଙ୍କ ସୁରକ୍ଷା ଲାଗି ଆପଣ ଯତ୍ନବାନ୍ ହେବା ଉଚିତ । ଆଶ୍ରିତ ଲୋକମାନଙ୍କୁ ମରଣ ମୁଖକୁ ଠେଲି ଦେଇ ଦାନ ଦେବାରେ କି ମହତ୍ତ୍ୱ ରହିଛି ! ମୁଁ ସେଭଳି ଦାନକୁ କେବେହେଲେ ସତ୍କର୍ମ ବୋଲି କହିପାରିବି ନାହିଁ ।"

ଶୁକ୍ରାଚାର୍ଯ୍ୟଙ୍କ ନୀତିପୂର୍ଣ୍ଣ ବାଣୀ ଶୁଣି ବଳିରାଜା କହିଲେ—"ନିଜର ସର୍ବସ୍ୱ ଧର୍ମ କାର୍ଯ୍ୟରେ ଲଗିଯିବାଠାରୁ ଆଉ ସତ୍କାର୍ଯ୍ୟ କ'ଣ ଅଛି ?"

"ତାହା ତ୍ୟାଗୀ ଓ ତପସ୍ୱୀମାନଙ୍କୁ ଶୋଭାପାଏ । ଜଣେ ଆଦର୍ଶ ଗୃହସ୍ଥର ଧର୍ମ ଭିନ୍ନ !" ଶୁକ୍ରାଚାର୍ଯ୍ୟ କହିଲେ—"ମୁଁ ଆପଣଙ୍କୁ ବ୍ୟାବହାରିକ ଧର୍ମ ସମ୍ବନ୍ଧରେ କହୁଛି ଶୁଣନ୍ତୁ ।"

## ଛପ୍ପୟ

ଧର୍ମଭୀରୁ ବନ କହେଁ ଗୁରେ ! ଚୌର୍ୟ ପାପ କମାୱେଁ ।
ଦାନ ଧର୍ମ ମହଁ ବ୍ୟର୍ଥ ଆପ ରୋଡ଼ା ଅଟକାୱେଁ ।।
ବୈସେ ହୀ ବଟୁ ସକୁଚ ବହୁତ ଧନ ଦାନ ନ ଚାହେଁ ।
ଉଲଟୀ ପଟ୍ଟୀ ତଉ ଆପ ପୁନି ମୋଇ ପଢ଼ାୟେଁ ।।
ଭୟୁ କହାବତ ସତ୍ୟ ୟହ, ଜୋ ପ୍ରସିଦ୍ଧ ଜଗ ବାତ ହୈ ।
ବାମନ ବାମନ କୂଁ ଲଖୈଂ, କୂକରବତ ଗୁର୍ରାତ ହୈ ।" ।।



# ବ୍ୟାବହାରିକ ଧର୍ମ

"ଧର୍ମାୟ ଯଶସେଽର୍ଥାୟ କାମାୟ ସ୍ୱଜନାୟ ଚ ।
ପଞ୍ଚଧା ବିଭଜନ୍ ବିତ୍ତ ମିହାମୁତ୍ର ଚ ମୋଦତେ ।"

( ଭା· ୮ । ୧୯ । ୩୭ )

## ଛପ୍ପୟ

"ବୋଲେ ଶୁକ୍ରାଚାର୍ଯ୍ୟ ବ୍ୟର୍ଥ ତୂ ବାତ ବନାଓଂ ।
ଧର୍ମ କର୍ମ ବିନୁ ଲଖେ ମୋଇ ଉପଦେଶ ସିଖାଓଁ ।।
ଅର୍ଥ ବୃଦ୍ଧି, ଯଶ, ଭୋଗ, ଧର୍ମ ଅରୁ ସ୍ୱଜନ ହେତୁ ନର ।
କରେଂ ଦ୍ରବ୍ୟ ବ୍ୟୟ ସଦା ଗୃହୀକୋ ୟହ ମଗ ସୁଖକର ।।
ଅନ୍ନ ବସ୍ତ୍ର ବିନୁ ନାରୀ ଅରୁ, ବଚ୍ଚେ ଭୂଖେ ଧର ମରେ ।
କଟରି ଦାନ ଯଶ ହେତୁ ଜେ, ବୁଧ ଜନ କୀ ନିନ୍ଦା କରେଂ ।।"

ଅର୍ଥାତ୍—ଶୁକ୍ରାଚାର୍ଯ୍ୟ ବଳିଙ୍କୁ ବ୍ୟାବହାରିକ ଧର୍ମ ବୁଝାଇବାକୁ ଯାଇ କହିଲେ—"ହେ ରାଜନ୍, ଯେଉଁ ବ୍ୟକ୍ତି ନିଜ ଧନକୁ ପାଞ୍ଚଭାଗରେ ବିଭକ୍ତ କରି, ଧର୍ମ, ଯଶ, ଧନବୃଦ୍ଧି, କାମ ଉପଭୋଗ ତଥା ସ୍ୱଜନଙ୍କ ଉନ୍ନତିରେ ବ୍ୟୟ କରେ ସେହି ବ୍ୟକ୍ତି ଇହଲୋକ ଓ ପରଲୋକରେ ସୁଖ ଲାଭ କରେ ।"

କୁଟୁମ୍ବ ଓ ପ୍ରାଣ ବିନିମୟରେ ଯେଉଁ ଧର୍ମାଚରଣ କରାଯାଏ—ତାହା ହେଉଛି ବିଶୁଦ୍ଧ ଧର୍ମ । ସେଥିରେ ଛଳ କପଟ ତ୍ୟାଗପୂର୍ବକ ଧର୍ମାଚରଣ କରାଯାଏ । ଅନ୍ୟଟି ହେଉଛି—ବ୍ୟାବହାରିକ ଧର୍ମ ।

ବିଶୁଦ୍ଧ ଧର୍ମରେ କର୍ତ୍ତବ୍ୟନିଷ୍ଠା ଉପରେ ବିଶେଷ ଗୁରୁତ୍ୱ ଆରୋପଣ କରାଯାଏ । ରାଜା ହରିଶ୍ଚନ୍ଦ୍ର ସତ୍ୟ ପାଳନକୁ ଏକମାତ୍ର ଧର୍ମ ବୋଲି ବିବେଚନା କରିଥିଲେ । ସେଇଥିପାଇଁ ସେ ସତ୍ୟ ଲାଗି ରାଜ୍ୟ ଓ ଯଶର ମୋହ ତ୍ୟାଗ କରିଥିଲେ । କେବଳ ସେତିକି ନୁହେଁ, ସେ ସତ୍ୟରକ୍ଷା ପାଇଁ ସ୍ତ୍ରୀ-ପୁତ୍ରଙ୍କୁ ବିକ୍ରୟ କରି, ଶେଷରେ

ଜନକୁ ବିକ୍ରୟକରି ଦେଇଥିଲେ । ଏତେସବୁ ହୋଇଥିଲେ ମଧ୍ଯ ସେ ସତ୍ୟଧର୍ମକୁ ଛାଡ଼ି ନଥିଲେ । କିନ୍ତୁ ବ୍ୟାବହାରିକ ଧର୍ମର ମହତ୍ତ୍ୱ ଭିନ୍ନ । ସେଥିରେ ବ୍ୟକ୍ତି ଯୋଗ ଓ କ୍ଷେମ ପାଳନପୂର୍ବକ ଧର୍ମ ଆଚରଣ କରିଥାଏ । ନିଜ ଜୀବନ ତଥା ବୃତ୍ତି ଉପରେ ବିପଦ ପଡ଼ୁଥିବାର ଦେଖାଗଲେ, ବ୍ୟକ୍ତି ସେହି ଧର୍ମକୁ ତ୍ୟାଗ କରିଥାଏ । ମିତଭକ୍ତମାନେ ସେହି ବ୍ୟାବହାରିକ ଧର୍ମର ଆଶ୍ରୟ ଗ୍ରହଣ କରନ୍ତି । ସେମାନଙ୍କ ମତରେ—ବ୍ୟକ୍ତି ବଞ୍ଚି ରହିଲେ, ଜୀବନରେ ଅନେକ ମଙ୍ଗଳମୟ କାର୍ଯ୍ୟ କରିପାରେ ! କିନ୍ତୁ ଧର୍ମର ଦୁହାଇ ଦେଇ ସେମାନେ ଆତ୍ମବିସର୍ଜନ କରିବାକୁ ପସନ୍ଦ କରନ୍ତି ନାହିଁ ।"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ବଳିରାଜା ବ୍ୟାବହାରିକ ଧର୍ମ ସମ୍ବନ୍ଧରେ ପ୍ରଶ୍ନ କରନ୍ତେ ଶୁକ୍ରାଚାର୍ଯ୍ୟ କହିଲେ—"ମହାରାଜ, କେବଳ ଉଦର ପୋଷଣ ଲାଗି ବ୍ୟକ୍ତି ଜନ୍ମ ହୋଇନାହିଁ । ସ୍ୱୋପାର୍ଜିତ ଧନକୁ ପାଞ୍ଚଭାଗରେ ବିଭକ୍ତ କରି ତାହାକୁ ଭିନ୍ନ ଭିନ୍ନ ମାର୍ଗରେ ବ୍ୟୟ କଲେ, ପ୍ରକୃତ ବ୍ୟାବହାରିକ ଧର୍ମ ପାଳିତ ହୁଏ ।"

—"ଗୁରୁଦେବ, ଅର୍ଜିତ ସମ୍ପତ୍ତିକୁ ପାଞ୍ଚ ଭାଗକରି କେଉଁ କେଉଁ ପଞ୍ଚ-କର୍ମରେ ବ୍ୟୟ କରିବାକୁ ହେବ, ତାହା ଆପଣ ମୋତେ ବୁଝାଇ କହନ୍ତୁ ।"

ଶୁକ୍ରାଚାର୍ଯ୍ୟ କହିଲେ—"ମନେକର ଜଣେ ଲୋକ ପାଞ୍ଚଶହ ମୁଦ୍ରା ଆୟ କରୁଛି । ସେଥିମଧ୍ୟରୁ ପ୍ରଥମେ ଏକ ପଞ୍ଚମାଂଶ ବା ଏକଶତ ମୁଦ୍ରା ସେ ଧର୍ମକାର୍ଯ୍ୟରେ ବ୍ୟୟ କରିବା ଉଚିତ । କାରଣ ଧର୍ମ ଉପାର୍ଜନ ବିନା ବ୍ୟକ୍ତି ଦୟାହୀନ ତଥା ଶୁଷ୍କ ପ୍ରକୃତିର ହୋଇଯାଏ । କେବଳ ଧର୍ମହିଁ ପ୍ରାଣୀ ସହିତ ପରଲୋକକୁ ଯାଇଥାଏ । ଆମେ ଯାହା ଇହଲୋକରେ କରିବା, ପରଲୋକରେ ତାହାହିଁ ଲାଭକରିବା । ଏହା ଏକପ୍ରକାର 'ପରଲୋକ କୋଷ' ନାମରେ ନାମିତ ହୋଇଥାଏ ।"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତମହର୍ଷି, ପରଲୋକଗତ କୋଷ ପୁଣି କଅଣ ?"

ଏହା ଶୁଣି ସୂତମହର୍ଷି ହସି ହସି କହିଲେ—"ମହାରାଜ, ଏ' ସମ୍ପର୍କରେ ମୁଁ ଗୋଟିଏ ଆଖ୍ୟାୟିକା ଶୁଣାଉଛି—

"ଜଣେ ଧନବାନ୍ କୃଷକଙ୍କ ଘରକୁ ଗୋଟିଏ ଧର୍ମଶୀଳା ବୋହୂ ଆସିଲେ । ସେ ଲକ୍ଷ୍ୟକଲେ ଯେ, ଘରେ ଦାନ ପୁଣ୍ୟାଦି ଧର୍ମକାର୍ଯ୍ୟ ଆଦୌ କରାଯାଉ ନାହିଁ । ତେଣୁ ସେ ଗୋଟିଏ ଏକାନ୍ତ ସ୍ଥାନରେ ବସି ପ୍ରତିଦିନ କିଛିକ୍ଷଣ ରୋଦନ କରିବାକୁ ଲାଗିଲେ । ଦିନେ ଶ୍ୱଶୁର ଅନ୍ୟମାନଙ୍କୁ ପଚାରିଲେ—"ଆମ ବୋହୂ କାହିଁକି ପ୍ରତିଦିନ

କିଛି ସମୟ ଏକାନ୍ତରେ ବସି ରୋଦନ କରୁଛୁ । ଏହାର କାରଣ କ'ଣ ତାକୁ ପଚାର ବୁଝ । ମୋ' ଘରେ କୌଣସି ଦ୍ରବ୍ୟର ଅଭାବ ନାହିଁ । ଆଉ କେଉଁ ଜିନିଷ ପାଇଁ ସେ କାନ୍ଦୁଛି, ତାକୁ ପଚାର !"

ଏହା ଶୁଣି ବୋହୂ କହି ପଠାଇଲା—"ପ୍ରତିଦିନ ବାସି ଅନ୍ନ ଖାଇ ଖାଇ ମୋତେ ବିରକ୍ତି ଲାଗିଲାଣି । ଏଠାରେ ସମସ୍ତେ କେବଳ ବାସି ଅନ୍ନ ଖାଉଛନ୍ତି ଏବଂ କିଛିହେଲେ ସଞ୍ଚୟ କରୁନାହାନ୍ତି ।"

ବୋହୂର ଉତ୍ତର ଶୁଣି ବିସ୍ମିତ ହୋଇ ଧନପତି କହିଲେ—"ଆମ ଘରେ କେହି ଜଣେ ହେଲେ ବାସି ଅନ୍ନ ଖାଆନ୍ତି ନାହିଁ । ତା'ପରେ ମୋ' ପାଖରେ କୋଟି କୋଟି ଟଙ୍କା ସଞ୍ଚିତ ହୋଇ ରହିଛି ।"

ଶ୍ୱଶୁରଙ୍କ ଉତ୍ତର ଶୁଣି ବୋହୂ କହିଲା—"ଏବେ ଆମ୍ଭେମାନେ ଯାହା ଖାଉଥାଉ, ତାହା ପୂର୍ବଜନ୍ମର ଦାନପୁଣ୍ୟର ଫଳ । ପୂର୍ବଜନ୍ମରେ ଆମେ ଯାହା ସଞ୍ଚୟ କରି ରଖିଥିଲେ, ତାକୁ ହିଁ ଖାଉଥାଉଁ । ସେଇଥିପାଇଁ ମୁଁ କହୁଛି —ଆମେମାନେ ବାସି ଅନ୍ନ ଖାଇଥାଉଁ । ଯେଉଁ ଧନ ଘରେ ସଞ୍ଚିତ ହୋଇ ରହିଛି, ତାହା ଏହିଠାରେ ରହିଯିବ । ପରଲୋକ ପାଇଁ ଏହା ଆଦୌ କାମରେ ଲାଗିବ ନାହିଁ । ପରଲୋକକୁ ସାଥିରେ ନେବା ପାଇଁ ଦାନ ପୁଣ୍ୟ କରିଯିବା ଆବଶ୍ୟକ । ସେ କାର୍ଯ୍ୟ ଏ ଘରେ ହେଉନାହିଁ ।

ଶ୍ୱଶୁର ଏହା ଶୁଣି ଅତ୍ୟନ୍ତ ଲଜ୍ଜିତ ହେଲେ ଏବଂ ସେହିଦିନଠାରୁ ସାଧ୍ୟମତ ଦାନ ପୁଣ୍ୟରେ ଅର୍ଥ ବ୍ୟୟ କରିବାକୁ ଲାଗିଲେ ।

ସୂତମହର୍ଷି କହିଲେ—"ହେ ଶୌନକ, ପରମେଶ୍ୱର ଯାହାଙ୍କୁ ସାମର୍ଥ୍ୟ ଦେଇଛନ୍ତି, ସେ ଯଦି ଦାନ ପୁଣ୍ୟ ନ କରନ୍ତି, ତେବେ ପରଲୋକ ପାଇଁ ତାଙ୍କର କିଛି ରହେ ନାହିଁ । ଏଭଳି ଲୋକଙ୍କୁ ମୂର୍ଖରେ ଗଣନା କରାଯାଏ । ଏ' ସମ୍ବନ୍ଧରେ ମୁଁ ଆପଣମାନଙ୍କୁ ଆଉ ଗୋଟିଏ ମନୋରଞ୍ଜକ କାହାଣୀ ଶୁଣାଉଛି ।

ଜଣେ ଧନବାନ୍ ଲୋକଙ୍କ ଘରେ ଗୋଟିଏ ଚାକର ରହୁଥିଲା । ସେ ବଡ଼ରି ପ୍ରକୃତିର ଥିଲା—ସାଧାସିଧା, ଗାଉଁଲି ତଥା ଧାର୍ମିକ ପ୍ରକୃତିର ବ୍ୟକ୍ତି । ଆପଣମାନେ ଜାଣନ୍ତି – ସାଦାସିଧା ଏବଂ ଧର୍ମଭୀରୁ ଲୋକଙ୍କୁ ସମସ୍ତେ ଉପହାସ କରିଥାନ୍ତି । ସେମାନଙ୍କୁ ଥଟ୍ଟା, ପରିହାସ କରିବାରେ ତଥାକଥିତ ବୁଦ୍ଧିମାନ୍ ଲୋକେ ବାହାଦୁରୀ ଦେଖାଇ ଆନନ୍ଦ ଅନୁଭବ କରନ୍ତି । ସେ ଚାକରଟି ଅନେକ ଦିନରୁ ସେ ଘରେ ରହି ମାଲିକର ଖୁବ୍ ବିଶ୍ୱାସ ପାତ୍ର ହୋଇଯାଇଥିଲା । ସେ କେବେହେଲେ ଧନ ସଞ୍ଚୟ କରୁ ନଥିଲା । ତାକୁ ଯାହା କିଛି ବେତନ ମିଳୁଥିଲା, ସେ ଧନକୁ ଦାନ କରିଦେଉଥିଲା ।

କିନ୍ତୁ ଗୃହସ୍ୱାମୀ ଥିଲେ—ନିତାନ୍ତ କୃପଣ । ସବୁବେଳେ ସେ ଧନ ସଞ୍ଚୟ କରିବାରେ ଲାଗିଥିଲେ । ଯେତେବେଳେ ତାଙ୍କୁ ଅବସର ମିଳୁଥିଲା । ସେ ଗାଉଁଲି ଚାକର ସହିତ ଥଟ୍ଟା ତାମସାରେ ସମସ୍ତ ବିତାଇ ଦେଉଥିଲେ ।

ଥରେ ଗୃହ ସ୍ୱାମୀ ଖଣ୍ଡିଏ ବଙ୍କା ଟେଢ଼ା ଠେଙ୍ଗା ଆଣି ଚାକରଟିକୁ ଦେଇ କହିଲେ—"ଘାସିଆ, ତୁ ଏହି ବିଚିତ୍ର ଠେଙ୍ଗାଟି ରଖ ! ତୁ ଯାହାକୁ ତୋ'ଠାରୁ ଅଧିକ ମୂର୍ଖ ବୋଲି ମନେକରିବୁ, ତାକୁ ଏହି ଠେଙ୍ଗାଟି ଦେଇଦେବୁ ।"

ଆଜ୍ଞାକାରୀ ଚାକରଟି ପ୍ରତିଦିନ ଠେଙ୍ଗାଟିକୁ ନେଇ ହାଟ ବଜାରକୁ ଯାଏ । ଗୃହସ୍ୱାମୀ ତାକୁ ପ୍ରତିଦିନ ପଚାରନ୍ତି—"କ'ଣ କେହି ତୋ'ଠାରୁ ଅଧିକ ମୂର୍ଖ ମିଳିଲେ ?"

"ନା···ଆଜ୍ଞା, ଆଜି ପର୍ଯ୍ୟନ୍ତ କେହି ମିଳିନାହାନ୍ତି···" । ଚାକରଟିର ସରଳ ଉତ୍ତର ଶୁଣି ମାଲିକ ହସି ହସି ଗଡ଼ିଯାଆନ୍ତି ।

ଥରେ ଗୃହସ୍ୱାମୀ ହଇଜାରେ ଆକ୍ରାନ୍ତ ହେଲେ । ବୈଦ୍ୟମାନେ ବହୁ ଯତ୍ନ କଲେ ମଧ୍ୟ କିଛି ଫଳ ହେଲା ନାହିଁ । ଶେଷକୁ ସେ ନିଜର ପ୍ରିୟ ଚାକରଟିକୁ ଡାକି କହିଲେ—"ଘାସିରାମ, ଏଥର ମୁଁ ଚାଲିଲି !"

ଚାକରଟି ସଙ୍ଗେ ସଙ୍ଗେ ଉତ୍ତର ଦେଲା—"ମୁଁ ଆପଣଙ୍କ ସାଙ୍ଗରେ ଯିବି ଆଜ୍ଞା !"

ମାଲିକ ମୁହଁରେ ଶୁଖିଲା ହସ ଫୁଟାଇ କହିଲା—"ନାଁ'ରେ ସେ ପୁରକୁ ଆଉ କେହି ସାଥିରେ ଯାଆନ୍ତି ନାହିଁ ।"

"ତା'ହେଲେ ମାଲିକ, ସେ ଘୋଡ଼ା ଗାଡ଼ିଟିକୁ ସାଙ୍ଗରେ ନେଇଯାଆନ୍ତୁ !"

ମାଲିକଙ୍କୁ ଖୁବ୍ କଷ୍ଟବୋଧ ହେଉଥିଲା । ସେ କେବଳ ମୁଣ୍ଡଟି ହଲାଇ ଦେଲେ । ଚାକରଟି ନିତାନ୍ତ ସରଳ ଭାବରେ କହିଲା—"ଆଜ୍ଞା, ଗାଡ଼ି ଘୋଡ଼ା ସାଙ୍ଗରେ ନ ନେଲେ ଚାଲିବ କେମିତି ହଜୁର ? ତା' ଛଡ଼ା ସବୁ ଚାଉଳ, ଗୁଆ ଘିଅ, ମୁଗଡ଼ାଲି, ମସଲାମସଲି, ଗଦି ବିଛଣା, ମୋଟା ତକିଆ ଏ'ସବୁ ନ ନେଲେ ଆପଣ ଅସୁବିଧାରେ ପଡ଼ିବେ । କ'ଣ କ'ଣ ନେବେ କୁହନ୍ତୁ, ମୁଁ ସବୁ ବନ୍ଦୋବସ୍ତ କରିଦେବି ।"

ଚାକରର ବୋକାମିରେ ମାଲିକ ମନେ ମନେ ବିରକ୍ତ ହୋଇଯାଇ କହିଲେ—"ଆରେ ବୋକା, ସେ ପୁରକୁ ଏଠାରୁ କିଛି ସାଥିରେ ଯାଇପାରେ ନାହିଁ । ଏ' ଶରୀରଟା ମଧ୍ୟ ଏହିଠାରେ ରହିଯିବ । କେବଳ ସାଥିରେ ଯିବ ପାପ ଓ ପୁଣ୍ୟ ।"

ଘାସିଆ ତା' ଠେଙ୍ଗାଟିକୁ ଘେନ ଆସି ମାଲିକଙ୍କୁ କହିଲେ—"ଓଃ, ଏତେ ଦିନ ପରେ ମୋ'ଠାରୁ ବଡ଼ ମୂର୍ଖ ଜଣେ ମିଳିଗଲେ । ଆପଣହିଁ ମୋ'ଠାରୁ ଅଧିକ ମୂର୍ଖ । କାରଣ, ଯାହା ଆପଣଙ୍କ ସାଥିରେ ଯିବ ନାହିଁ, ସେଗୁଡ଼ାକୁ ଗୋଟାଇବା ପାଇଁ ଆପଣ ରାତିଦିନ ଏତେ ପରିଶ୍ରମ କରୁଥିଲେ ? ପରଲୋକକୁ ନେବାପାଇଁ କିଛି ହେଲେ ଦାନ ପୁଣ୍ୟ କଲେ ନାହିଁ !"

ଚାକରର କଥାଟି ମାଲିକଙ୍କ ମନକୁ ବେଶ୍ ଘେନିଲା । ଯା'ହେଉ, ହଇଜା ରୋଗରୁ ମାଲିକ ଭଲ ହୋଇଗଲେ ଏବଂ ତା' ପରଠାରୁ ଦାନ ପୁଣ୍ୟ କରି ଧର୍ମ-ଅର୍ଜନ କରିବାକୁ ଲାଗିଲେ ।"

ସୂତ ମୁନି କହିଲେ—"ହେ ଶୌନକ, ଯାହା ଆୟ କରିବ, ସେଥିରୁ ଅନ୍ତତଃ ଏକ ପଞ୍ଚମାଂଶ ଧର୍ମ କାର୍ଯ୍ୟରେ ବ୍ୟୟ କରାଯିବା ବିଧେୟ । ଶୁକ୍ର ମହର୍ଷି ସେହି ଉପଦେଶ ଦେଇ ରାଜା ବଳିଙ୍କୁ ବୁଝାଇଥିଲେ ।"

ବଳିରାଜାଙ୍କ ଜିଜ୍ଞାସା ଅନୁସାରେ ଶୁକ୍ରାଚାର୍ଯ୍ୟ କହିଲେ—"ମହାରାଜ, ପାଞ୍ଚଶହ ଟଙ୍କାରୁ ଏକଶତ ଟଙ୍କା ଧର୍ମ କାର୍ଯ୍ୟରେ ବ୍ୟୟ କରିବା ପରେ, ଆଉ ଏକଶତ ଟଙ୍କା ଯଶ ଅର୍ଜନ କାର୍ଯ୍ୟରେ ବ୍ୟୟିତ ହେବା ଉଚିତ । କାରଣ, ଯଶ କୀର୍ତ୍ତି ନଥିଲେ ବ୍ୟକ୍ତି ମୃତତୁଲ୍ୟ ପରିଗଣିତ ହୁଏ । କୁକୁର ଓ ଶୂକର ମଧ୍ୟ କୌଣସିମତେ ପେଟ ପୂରାଇ ବଞ୍ଚିରହି ପାରୁଛନ୍ତି । ଏଣୁ ଯଶୋପାର୍ଜନ ହେଉଛି—ବ୍ୟକ୍ତିର ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ । ବିଦ୍ୟାର୍ଥୀଙ୍କୁ ସାହାଯ୍ୟ କରିବା, ସର୍ବସାଧାରଣଙ୍କ ପାଇଁ ଦାତବ୍ୟ ଔଷଧାଳୟ, ଦେବାଳୟ, ଧାର୍ମିକ ପୁସ୍ତକ ପାଠାଗାର ଆଦି ନିର୍ମାଣ କରି ଯଶୋପାର୍ଜନ କରିବା ଏକାନ୍ତ ଆବଶ୍ୟକ ।"

ଶୁକ୍ରାଚାର୍ଯ୍ୟ କହିଲେ—"ହେ ରାଜନ୍, ଆଉ ଏକଶତ ଟଙ୍କା ସଞ୍ଚୟ କରି ଧନ ବୃଦ୍ଧି କରିବା ଆବଶ୍ୟକ । ଅବଶେଷ ରହିଥିବା ଏକଶତ ଟଙ୍କା କୁଟୁମ୍ବ ପୋଷଣ ଅର୍ଥରେ ଖର୍ଚ୍ଚ କରାଯିବା ଉଚିତ ହେବ । ଯେ ନିଜର ଜ୍ଞାତି ଓ କୁଟୁମ୍ବଙ୍କ ପାଇଁ ଅର୍ଥ ବ୍ୟୟ ନ କରେ, ତା' ଉପାର୍ଜନର ମୂଲ୍ୟ କ'ଣ ? ଏଣୁ ହେ ରାଜନ୍, ଆତ୍ମୀୟ ସ୍ୱଜନଙ୍କ ହିତପାଇଁ ଧନ ବ୍ୟୟ କରାଯିବା ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ।

"ହେ ରାଜନ୍ ! ଆଜି ଆପଣ ଆତ୍ମୀୟ, ସ୍ୱଜନ, ପରିବାରବର୍ଗ ସମସ୍ତଙ୍କୁ ପଛକୁ ପକାଇ ଦେଇ, ସର୍ବସ୍ୱ ଦାନ ଦେବା ପାଇଁ ଆଗଭର ହୋଇଛନ୍ତି । ବଟୁବାମନ ତିନିପାଦ ମେଦିନୀ ଛଳରେ ଆପଣଙ୍କର ସର୍ବସ୍ୱ ଅପହରଣ କରିନେବେ ! ଆପଣଙ୍କ ଧନ ସମ୍ପତ୍ତିର କେବଳ ଆପଣ ଅଧିକାରୀ ନୁହନ୍ତି । ସେଥିରେ ସମସ୍ତଙ୍କର ଅଧିକାର ରହିଛି, ତାକୁ ଆପଣ ଅବିଚାରିତ ଭାବରେ ବଟୁବାମନଙ୍କୁ ଟେକିଦେବେ କିପରି ? ଏଇଥିପାଇଁ ମୁଁ ଆପଣଙ୍କୁ ଏ' ଦାନ ଦେବାଲାଗି ବାରଣ କରୁଛି ।"

ମହାରାଜ ବଳି ନିତାନ୍ତ ଅସହାୟ ହୋଇ ପଡ଼ିଲାପରି ଧୀର ସ୍ୱରରେ ଉତ୍ତର ଦେଲେ—"ଗୁରୁଦେବ, କେବଳ କୁଶହସ୍ତ ହୋଇ ଯାଚକ ହାତରେ ଜଳ ଦେଲେ ସଂକଳ୍ପ ହୁଏ ନାହିଁ । ମୁଁ ମୋର ସଂକଳ୍ପ ବଚନରେ କହିସାରିଛି । ମନ୍ତ୍ରପାଠ କରି କେବଳ ସେହି ବାଚନିକ ସଂକଳ୍ପକୁ ପରିପୁଷ୍ଟ କରାଯାଇଥାଏ । ମୁଁ ସଂକଳ୍ପକରି ଦାନ ନ ଦେଲେ ନର୍କଗାମୀ ହେବି । ସଂକଳ୍ପକରି ନ ଦେଲେ ଦୋଷ ହେବ ନାହିଁ ବୋଲି କ'ଣ କେଉଁ ଶାସ୍ତ୍ରରେ ଲିଖିତ ଅଛି ?"

ଶୁକ୍ରାଚାର୍ଯ୍ୟ ଗୁରୁଗମ୍ଭୀର ସ୍ୱରରେ କହିଲେ—"ହୁଁ...", "ଏହା ବେଦବହିତ କର୍ମ ବୋଲି ମୁଁ ପ୍ରମାଣ ଦେଇପାରିବି । ମୁଁ ଆପଣଙ୍କୁ ଋକ୍‌ବେଦରୁ ସେହି ମନ୍ତ୍ର ପାଠ କରି ବୁଝାଇ ଦେଉଛି, ଶୁଣନ୍ତୁ ।"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ଶୁକ୍ରାଚାର୍ଯ୍ୟ ଦୃଢ଼ତାର ସହିତ ବଳିଙ୍କ ସଂକଳ୍ପକୁ ବିରୋଧ କରି, ବେଦମନ୍ତ୍ରକୁ କଦର୍ଥ କରି ଶୁଣାଇଲେ ।"

## ଛପ୍‌ପୟ

"ଘର ମହଁ ବାଲକ ନାରୀ ମାତୁ ପିତୁ ତଜି କେ ଖାଇ ।
ବିନୁ ପୂଛେ ଜୋ ଦାନ କରୈ ସୋ ପାପ କମାଇ ।।
ବୋଲେ ବଲି ଗୁରୁଦେବ ! ଦାନ ଦୈ ଦୀନ୍ହୋ ମନତୈଂ ।
ଅବ କସ ଝୁଠୋ ବନୂଁ ବ୍ରହ୍ମଚାରୀ ବାମନ ତୈଂ ।।
କହି କୈ ଦେଉଁ ଦାନ ନହିଁ, ତୋ ପୀଛେ ପଛତାଉଁ ଗୋ ।
ଦୋଷୀ ହୋଂ ହ୍ୱୈ ଜାଉଁଗୋ, ଅନ୍ତ ନରକ ମହଁ ଜାଉଁଗୋ ।।"



## ଶୁକ୍ରାଚାର୍ଯ୍ୟଙ୍କ ଉକ୍ତି

"ପରାଗ୍ ରକ୍ତମପୂର୍ଣ୍ଣଂ ବା ଅକ୍ଷରଂ ଯତ୍ ତଦୋମିତି ।
ଯତ୍ କିଞ୍ଚିଦୋମିତି ବ୍ରୂୟାତ୍ ତେନ ରଚ୍ୟେତବୈ ପୁମାନ୍ ॥
ଭିକ୍ଷବେ ସର୍ବ ମୋ ଙ୍କୁର୍ବନ୍ ନାଲଂ କାମେନ ଗୃମ୍ଣନେ ॥"

(ଭା· ୮ । ୧୯ । ୪୧)

### ଛପ୍ପୟ୍

"ସୁନ ଲୈଂ ଶୁକ୍ରାଚାର୍ଯ୍ୟ କହେଁ ତୂ ଧର୍ମ ନ ଜାନୈ ।
ଧର୍ମତତ୍ତ୍ୱ ଅତି ଗୂଢ଼ ବିଜ୍ଞ ନର ହୀ ପହଚାନେ ॥
ହାଁ । ଦେଂଗେ, ଯେ ବଚନ, ଅର୍ଥ ବ୍ୟାପକ କେ ଦ୍ୟୋତକ
ସଦା କହେ ନହିଁ ଦେହିଁ ଧର୍ମ ଯଶ କେ ଯେ ଶୋଷକ ॥
ବିନୁ ବିଚାର ଦୈଂ ଦେହିଁ ଜେ, ତେ ପୀଛେଂ ମାଂଗତ ଫିର ହିଁ ।
ଏସେ ଦାତା କୁଁ ସଦା, ଭିକ୍ଷୁକ ନିତ ପୀଡ଼ିତ କରହିଁ ॥"

ଅର୍ଥାତ୍—ଶ୍ରୀ ଶୁକ୍ରାଚାର୍ଯ୍ୟ ବଳିରାଜାଙ୍କୁ ବୁଝାଇ କହୁଛନ୍ତି—"ମହାରାଜ, ଓମ୍ ଅର୍ଥାତ୍ ହଁ ଦେବି । ଏହି ଶବ୍ଦଟି ଅପୂର୍ଣ୍ଣ ଏବଂ ଦୂରତାର ଦ୍ୟୋତକ । କେବଳ କରିବାର ଇଚ୍ଛା । ଯାହା କହୁଅଛ, ତାହା ଦେଇଦେବା ପାଇଁ କହିଦେଲେ ପୁରୁଷ ସବୁଦିଗରୁ ଶୂନ୍ୟ ହୋଇଯାଏ । ଭିକ୍ଷୁକ ଆସିବାମାତ୍ରେ ଯେ କହିଦିଏ—ସବୁକିଛି ଦେଇଦେବି, ସେ କେବେହେଲେ ନିଜର ଖେତକୁ ସୁରକ୍ଷିତ କରିପାରେ ନାହିଁ ।

ବେଦ ଶାସ୍ତ୍ରରେ ଅନେକ ବଚନ ରହିଛି । ସେଥିମଧ୍ୟରୁ ସବୁ ବଚନଗୁଡ଼ିକ ନିଜର ବୁଦ୍ଧି ଅନୁସାରେ, ନିଜ ମତକୁ ପୁଷ୍ଟ କରିଥାଏ । ଭଗବାନ୍ ବେଦବ୍ୟାସଙ୍କ ରଚିତ 'ବ୍ରହ୍ମସୂତ୍ର' ଗୋଟିଏ ମହାନ୍ ଗ୍ରନ୍ଥ । ତାହାକୁ ଆଚାର୍ଯ୍ୟମାନେ ଭିନ୍ନ ଭିନ୍ନ ଅର୍ଥ କରିଥାଆନ୍ତି । କେହି ତାହାର ମଧ୍ୟରୁ ଦ୍ୱୈତ ଅର୍ଥ ବାହାର କରନ୍ତି, ଅନ୍ୟ କେହି ଅଦ୍ୱୈତ ଅର୍ଥ ମଧ୍ୟ ବାହାରକରେ, ଅନ୍ୟ କେହି ବିଶିଷ୍ଟାଦ୍ୱୈତ ଅର୍ଥ କରିଥା'ନ୍ତି

ଏବଂ ଅନ୍ୟ କେତେକ ସେଥିରୁ ସୁଦ୍ଧା ଦ୍ୱୈତ ଅର୍ଥ ବାହାର କରନ୍ତି । ଏହିପରି ଭାବରେ ସମସ୍ତେ ସେଥିରୁ ନିଜର ମତ ଉପସ୍ଥାପିତ କରିଛନ୍ତି ।

ଏହି ଜଗତ୍ ତ୍ରିଗୁଣାତ୍ମକ, ତେଣୁ ବେଦ ମଧ୍ୟ ତ୍ରୈଗୁଣ୍ୟ ଅର୍ଥର ସମାହାର । ଯେଉଁ ବ୍ୟକ୍ତି ଯେଉଁ ଗୁଣ ସମ୍ପନ୍ନ, ସେ ବେଦକୁ ସେପରି ଅର୍ଥ କରିଥାଏ । ପୋଟଳୀ ବଣିଆ ପାଖରେ ତ୍ରିଫଳା ରହିଛି ଏବଂ କୋଚିଲା, ଶଙ୍ଖିଆ ଆଦି ବିଷାକ୍ତ ଦ୍ରବ୍ୟ ମଧ୍ୟ ରହିଛି । ତା' ପାଖରେ ଅନେକ ପ୍ରକାର ବସ୍ତୁ ରହିଛି । ଯାହାର ଯେଉଁ ବସ୍ତୁ ଆବଶ୍ୟକ, ସେ ସେହି ଅନୁସାରେ ତା'ଠାରୁ ଆଣିଥାଏ । ଏହିପରି ଭାବରେ ବେଦରେ କେତେକ ବ୍ୟାବହାରିକ ବିଷୟ ରହିଛି । ବୁଦ୍ଧିମାନ୍ ବ୍ୟକ୍ତିମାନେ ନିଜ ନିଜର ସ୍ୱାର୍ଥ ଅନୁସାରେ ସେଥିରୁ ଅର୍ଥ ବାହାର କରନ୍ତି ଏବଂ ସେହି ଅନୁସାରେ ଉପଦେଶ ପ୍ରଦାନ କରନ୍ତି ।"

ଶ୍ରୀ ଶୁକଦେବ କହିଲେ—"ହେ ପରୀକ୍ଷିତ, ରାଜା ବଳି କହିଲେ—ମୁଁ ବଟୁବାମନଙ୍କୁ ତ୍ରିପାଦ ମେଦିନୀ ଦାନ ଦେବାପାଇଁ ପ୍ରତିଶ୍ରୁତି ଦେଇସାରିଛି । ବର୍ତ୍ତମାନ ତାଙ୍କୁ ମନା କରିଦେଇ ପ୍ରତିଜ୍ଞା ଭଙ୍ଗ କିପରି କରିବି ? ତାହାଶୁଣି ଶୁକ୍ରାଚାର୍ଯ୍ୟ କହିଲେ —"ମହାରାଜ, ସତ୍ୟ କ'ଣ ତାହା ନିର୍ଣ୍ଣୟ କରିବା ଅତ୍ୟନ୍ତ କଠିନ ! ବେଳେବେଳେ ସତ୍ୟ ପରି ଜଣାପଡ଼ୁଥିବା ବିଷୟ ମଧ୍ୟ ଅସତ୍ୟ ହୋଇଥାଏ । ଅନ୍ୟ କେତେବେଳେ ଅସତ୍ୟ ପରି ଅନୁଭୂତ ହେଉଥିବା ବିଷୟ ସତ୍ୟ ବୋଲି ଜଣାପଡ଼େ ।"

ଏହା ଶୁଣି ବଳି କହିଲେ —"ଗୁରୁଦେବ, ଆପଣ ସନ୍ଦେହାସ୍ପଦ ବିଷୟ ସମ୍ବନ୍ଧରେ କହିଲେ; କିନ୍ତୁ ମୁଁ ତ ନିଃସନ୍ଦେହ ଭାବରେ ତାଙ୍କୁ ପ୍ରତିଶ୍ରୁତି ଦେଇଛି । ମୁଁ ବଟୁବାମନଙ୍କୁ ଦେବି ବୋଲି କହିସାରିଛି, ଏବେ ତାଙ୍କୁ ମନା କରିଦେଲେ ଅସତ୍ୟ ଆଚରଣ ହେବନାହିଁ କି ? ଆପଣ ମୋତେ ମିଥ୍ୟାବାଦୀ ବୋଲି ପ୍ରମାଣ କରାଇବା-ପାଇଁ ଚେଷ୍ଟା କରୁଛନ୍ତି କାହିଁକି ?

ଶୁକ୍ରାଚାର୍ଯ୍ୟ ବିରକ୍ତି ପ୍ରକାଶ କରି କହିଲେ —"ମହାରାଜ, ଆପଣଙ୍କ ଯୁକ୍ତି-ଶକ୍ତିକ ନିତାନ୍ତ ପିଲାଳିଆ ହୋଇଯାଉଛି ! ମୋ' ଯୁକ୍ତିକୁ ଆପଣ ଭଲଭାବରେ ବୁଝନ୍ତୁ । 'ହଁ' କହି ସ୍ୱୀକାର କରିଗଲେ ତାହା ସତ୍ୟ । 'ବ୍ରହ୍ମ' ଅଛନ୍ତି, ଏହା ସତ୍ୟ ! 'ନାହିଁ' ବୋଲି କହିଲେ ଅସତ୍ୟ ହେବ । ଆମେ ଯାହା କହୁଥାଉଁ—'ବ୍ରହ୍ମସତ୍ୟ, ଜଗତ୍ ମିଥ୍ୟା' ଏହା କାହାଦ୍ୱାରା ପ୍ରମାଣିତ ହୁଏ ?"

ଉତ୍ତର ଦେଇ ବଳିରାଜା କହିଲେ—"ଗୁରୁଦେବ, ଏହା ଶରୀରର ସଂସର୍ଗ ଦ୍ୱାରା ହୋଇଥାଏ ।"

ବଳିରାଜାଙ୍କ ଉତ୍ତରରେ ଆନନ୍ଦିତ ହୋଇ ଶୁକ୍ରାଚାର୍ଯ୍ୟ କହିଲେ—"ହଁ ଠିକ୍ କହୁଛନ୍ତି ! ଜ୍ଞାନପ୍ରାପ୍ତିର ସାଧନ ହେଉଛି—ଶରୀର । ଏ' ଶରୀରର ଉତ୍ପତ୍ତି ଅସତ୍ୟରୁ ସମ୍ଭବ ହୋଇଛି । ମୂଳ ପ୍ରକୃତି ବିକୃତ ହେଲେ ଚବିଶ ତତ୍ତ୍ୱର ଉତ୍ପତ୍ତି ହୋଇଥାଏ । ତେଣୁ ଏହି ସମସ୍ତ ପଦାର୍ଥ ନଷ୍ଟଶୀଳ ଏବଂ ମିଥ୍ୟା । ଅସତ୍ୟ ପଦାର୍ଥରୁ ଜାତ ଦେହଦ୍ୱାରା ସତ୍ୟସ୍ୱରୂପୀ ବ୍ରହ୍ମ ପ୍ରାପ୍ତ ହୁଅନ୍ତି । ତେଣୁ ଏହି ଦେହରୂପକ ବୃକ୍ଷଟି ଅସତ୍ୟ ଏବଂ ସେଥିରୁ ସାଧନ ରୂପକ ଫୁଲ ଓ ମୋକ୍ଷ ରୂପକ ଫଳ ଜାତ ହେଉଛି । ଯଦି ଅସତ୍ୟ ରୂପକ ଦେହଟି ନ ରହିବ, ତେବେ ସତ୍ୟ ରୂପକ ଫଳ ପ୍ରାପ୍ତହେବ କିପରି ? ମୂଳ କାଟିଦେଲେ ଯେପରି ବୃକ୍ଷଟି ଶୁଷ୍କ ହୋଇଯାଏ, ଠିକ୍ ସେହିପରି ଅସତ୍ୟ ଦେହ ନଷ୍ଟ ହୋଇଗଲେ ତାହା ଶୁଷ୍କ ହୋଇଯିବ, ଏଥିରେ ସନ୍ଦେହ ନାହିଁ ।"

ବଳି ଆଶ୍ଚର୍ଯ୍ୟ ହୋଇ କହିଲେ—"ଗୁରୁଦେବ, ଆଜି ଆପଣ ସମ୍ପୂର୍ଣ୍ଣ ନୂଆ କଥା ଶୁଣାଉଛନ୍ତି । ତେଣୁ ଆପଣଙ୍କ ମତ ଅନୁସାରେ ପ୍ରତ୍ୟେକ ବ୍ୟକ୍ତି ମିଥ୍ୟା କହିବା ଉଚିତ !"

ଶୁକ୍ରାଚାର୍ଯ୍ୟ ସଙ୍ଗେ ସଙ୍ଗେ ଉତ୍ତର ଦେଇ କହିଲେ—"ସର୍ବଦା ଅସତ୍ୟ ଆଚରଣ କରିବାକୁ ମୁଁ କହୁନାହିଁ । ମୋ' କହିବାର ଉଦ୍ଦେଶ୍ୟ ହେଉଛି—ଯଥା-ସମ୍ଭବ ସତ୍ୟ ଆଚରଣ କରିବା ଉଚିତ । କିନ୍ତୁ ଯେଉଁଠି ସତ୍ୟ ଆଚରଣରେ ଜୀବିକା ନଷ୍ଟ ହୋଇଯାଉଛି, ଏବଂ ଯେଉଁଠାରେ ଶରୀର ରକ୍ଷାର ପ୍ରଶ୍ନ ଆସି ଉପସ୍ଥିତ ହୁଏ, ସେଠାରେ ତର୍କସଙ୍ଗତ ମାର୍ଗରେ ଆତ୍ମରକ୍ଷା କରିବାକୁ ହୁଏ ଏବଂ ସେହି ଉପାୟରେ ସର୍ବସ୍ୱ ରକ୍ଷା କରିବାକୁ ହୁଏ ।"

ମହାରାଜ ବଳି କହିଲେ—"ଗୁରୁଦେବ, ଏ' କ୍ଷେତ୍ରରେ ପ୍ରତ୍ୟକ୍ଷ ଅସତ୍ୟ ଆଚରଣ ହେଉଛି । ବଟୁବାମନ ମୋତେ ତିନିପାଦ ଭୂମି ମାଗିଲେ ଏବଂ ମୁଁ ତାଙ୍କୁ ଦେବି ବୋଲି 'ହଁ' କହିଲି, ଏଥିରୁ ଆଉ କି ପ୍ରକାର ଯୁକ୍ତି ବାହାର କରିବି ? 'ହଁ' ଦେବି ବୋଲି କହି ପୁଣି 'ନାଁ' କହିଲେ ତାହା ଅସତ୍ୟ ହେବ ନାହିଁକି ?"

ଶୁକ୍ରାଚାର୍ଯ୍ୟ କହିଲେ—"ମହାରାଜ, ମୁଁ ଯାହା କହୁଛି, ଆପଣ ତା'ର ମୂଳତତ୍ତ୍ୱ ବୁଝିବାକୁ ଚେଷ୍ଟା କରୁନାହାନ୍ତି । ତାକୁ ଉପରଠାଉରିଆ ଭାବରେ ବିଚାର କରୁଛନ୍ତି । ଆପଣଙ୍କ ପାଖକୁ ପ୍ରତିଦିନ ଯାଚକ ଆସୁଛନ୍ତି । ଆପଣ ସମସ୍ତଙ୍କୁ କହୁଛନ୍ତି—'ହଁ ଦେବି ।' କିନ୍ତୁ ଏହାର ଅର୍ଥ ନୁହେ ଯେ, ଆପଣ ସର୍ବସ୍ୱ ଅର୍ପଣ କରିଦେବେ । ନିଜ ଶରୀର, ସ୍ତ୍ରୀ, ପୁତ୍ର, ରାଜ୍ୟ, ଭଣ୍ଡାର ସବୁକିଛି ଲୁଟାଇ ଦେବେ । ତା' ନୁହେଁ, ଆପଣ ସବୁକିଛି ରକ୍ଷା କରିବା ପରେ, ଯାଚକ ହସ୍ତରେ ଯାହା କିଛି

ଅର୍ପଣ କରିବେ । 'ହଁ ଦେବି' ଏହାର ଅର୍ଥ ଅତ୍ୟନ୍ତ ବ୍ୟାପକ । ଏହାର ପ୍ରଥମ ଅର୍ଥ ହୋଇପାରେ—ମୋ' ପାଖରେ ଯେଉଁ ବସ୍ତୁ ଅଛି, ମୁଁ ତାକୁ ସଙ୍ଗେ ସଙ୍ଗେ ନିଜର ସୂନି ପରିହାରପୂର୍ବକ ଦେଇଦେବି । କିନ୍ତୁ କେତେ ଦେବି; କେତେବେଳେ ଦେବି; କେତେଦିନ ପର୍ଯ୍ୟନ୍ତ ଦେବି, ସବୁଦିନ ପାଇଁ ଦେବି କିମ୍ବା ଅଳ୍ପଦିନ ପାଇଁ ଦେବି, ସେହି ବାକ୍ୟରୁ ଏହାର ସଙ୍କେତ ମିଳେ ନାହିଁ । ଭିକ୍ଷୁକର କାର୍ଯ୍ୟ ହେଉଛି—ମାଗିବା । ସେ ଯଦି ଅନ୍ନ ମାଗେ, ତାକୁ ଅନ୍ନଦାନ ଦେବା ଆମର ଧର୍ମ । କିନ୍ତୁ ଏହାର ଅର୍ଥ ନୁହେଁ ଯେ, ଘରେ ଯେତେ କିଛି ଅନ୍ନ ରନ୍ଧା ହୋଇଛି—ସବୁତକ ନେଇ ଭିକାରିର ଥାଳରେ ଢ଼ାଳିଦେବା ।

"ମହାରାଜ, ଏ ଦୁନିଆରେ ନେବା ଲୋକଙ୍କର ଅଭାବ ନାହିଁ । ସେମାନେ ଯେତେବେଳେ ଯାହା ମାଗିବେ, ଯଦି ଆମେ ସେମାନଙ୍କୁ ଦେଇଦେବା, ତେବେ ସର୍ବସ୍ୱ ଉଜୁଡ଼ି ଯିବ । ବିନା ପରିଶ୍ରମରେ ଧନ ପାଇବାକୁ କିଏ ବା ନ ଚାହିଁବ ? ଭିକ୍ଷୁକକୁ ବ୍ରହ୍ମାଣ୍ଡଯାକର ଧନ ଦେଇଦେଲେ, ସେ କେବେହେଲେ ମନା କରିବ ନାହିଁ । କିମ୍ବା ତା'ର ତୃପ୍ତି ହେବ ନାହିଁ । ତେଣୁ ଦାତାର କର୍ତ୍ତବ୍ୟ ହେଉଛି--ବୁଝି ବିଚାରି ଦାନ କରିବା । 'ହଁ ଦେବି' 'ଏଇ ଦେଉଛି' ବୋଲି ଯେଉଁ ବ୍ୟକ୍ତି ସର୍ବଦା କହି ହେଉଛି, ସେ ଦାନ ଦେଇ ଦେଇ ନିର୍ଦ୍ଧନ ହୋଇଯାଏ । ଯେ ସର୍ବଦା 'ନାହିଁ' କରେ ତା'ର ପାଖରେ ଲକ୍ଷ୍ମୀ ସ୍ଥିର ହୋଇ ରହନ୍ତି । ଏଇଥିପାଇଁ ଧନୀମାନେ କୃପଣ ହୋଇଥିବାର ଦେଖାଯାଏ ଏବଂ କୃପଣତା ବିନା ଧନ ଏକତ୍ରିତ ହୋଇପାରେ ନାହିଁ ।"

ମହାରାଜ ବଳି ହସି ହସି କହିଲେ—"ତା'ହେଲେ······, ଆପଣ କ'ଣ କହିବାକୁ ଚାହୁଁଛନ୍ତି ? ଯାଚକ ଘରକୁ ଆସିଲେ ତାକୁ ମନା କରିଦେବା ଉଚିତ ହେବ ଏବଂ ସବୁବେଳେ 'ନାହିଁ' 'ନାହିଁ' କହି ଭିକ୍ଷୁକକୁ ଘଉଡ଼ାଇ ଦେବା । କାରଣ, ଆପଣଙ୍କ ମତରେ ଧନ ଦାନ କଲେ, ତାହା ଶେଷ ହୋଇଯିବ !"

ଶୁନାଗ୍ରୁପ୍ୟ ମନେ ମନେ ବିରକ୍ତ ହୋଇଥିଲେହେଁ, ବଳିରାଜାଙ୍କୁ ବୁଝାଇବାକୁ କହିଲେ—"ନା···ନାଃ···; ମୁଁ ତାହା କହୁନାହିଁ । ଆପଣ ମୋ' କଥାର ଭିନ୍ନ ଅର୍ଥ କରୁଛନ୍ତି । ମୁଁ ଗୋଟିଏ ସିଦ୍ଧାନ୍ତରେ ଉପନୀତ ହୋଇ ଆପଣଙ୍କୁ ଏପରି କହୁଛି । ଯେଉଁ ବ୍ୟକ୍ତି ଭିକ୍ଷୁକକୁ ସର୍ବସ୍ୱ ଅର୍ପଣ କରିବାକୁ ପ୍ରସ୍ତୁତ ହେବ, ସେ ନିଜର ସ୍ୱାର୍ଥ ସୁରକ୍ଷିତ କରିପାରିବ ନାହିଁ । କିନ୍ତୁ ଯେଉଁ ବ୍ୟକ୍ତି ସର୍ବଦା 'ନାହିଁ' କରେ, ସେ ଧନଧାନ୍ୟ ସୁରକ୍ଷିତ କରିପାରେ ଏବଂ ଲୋକସମାଜରେ କୃପଣ ନାମରେ ଅଭିହିତ ହୁଏ । ଏଭଳି ବ୍ୟକ୍ତି ଜନସମାଜରେ ନିନ୍ଦିତ ହୁଏ ଏବଂ କେହି ଭୁଲରେ ସୁଦ୍ଧା ତା' ନାଆଁ ଧରନ୍ତି ନାହିଁ । ସେଭଳି ଲୋକର ବଞ୍ଚିବା ମରିବା ସମାନ ।"

"କୃପଣ ବ୍ୟକ୍ତିକୁ ମକ୍ଷିଚୂଷ୍ କୁହାଯାଏ । କାରଣ ସେ ମାଛିଗୋଡ଼ରେ ଲାଗିଥିବା ସିରପକୁ ମଧ୍ୟ ଯେ କୌଣସିମତେ ବାହାର କରି ସଂଗ୍ରହ କରିବାକୁ ଚାହେଁ । ସେ ବଞ୍ଚିଥିବାବେଳେ କିଛି ନିଜେ ଖାଏ ନାହିଁ କିମ୍ବା କାହାରିକୁ କିଛି ଦିଏ ନାହିଁ । କେବଳ ସଞ୍ଚୟ ହେଉଛି—ତା'ର ପ୍ରକୃତି । ସେଇଥିପାଇଁ ପିଲାମାନେ ସେପରି ଲୋକକୁ ଦେଖିବାମାତ୍ରେ ତାକୁ ଚଡ଼ାଇବା ଲାଗି କହନ୍ତି—'ବୁଢ଼ା ସଞ୍ଚି ରଖିଥାଏ ଧନ, ତାକୁ ମୂଷାକରେ ଜଳପାନ ।"

"ତେଣୁ ମହାରାଜ' ମୁଁ ଆପଣଙ୍କୁ କୃପଣ ହେବାଲାଗି କୌଣସିମତେ ଉପଦେଶ ଦେଉନାହିଁ । କିନ୍ତୁ ଶକ୍ତି ଅନୁସାରେ ଦାନ ଦେବାହିଁ ବିବେକୀ ଲୋକର କାର୍ଯ୍ୟ । ମାଗିବା ଲୋକର ସ୍ୱତନ୍ତ୍ର ଇଚ୍ଛା ରହିବା ଉଚିତ ନୁହେଁ । ସେ କେବଳ ନିର୍ଦ୍ଦିଷ୍ଟ ବସ୍ତୁ ମାଗିବାରେ, କିନ୍ତୁ ଦେବାଲୋକ ଅର୍ଥାତ୍ ଗୋଟିଏ ଦାତା ବିଚାର ବୁଦ୍ଧି ଖଟାଇ ତା'ର ଉଦ୍ଦେଶ୍ୟ ପୂରଣ କରିବା ଉଚିତ । ସର୍ବସ୍ୱ ଦାନ କରି ନିଜେ ଭିକ୍ଷୁକ ହେବା ନୀତିକୁ ମୁଁ ବିରୋଧ କରୁଛି । ମୋ' ମତରେ ଦାତା ମଧ୍ୟମ ମାର୍ଗ ଗ୍ରହଣ କରିବା ଉଚିତ ।"

ଗୁରୁଦେବଙ୍କ କଥାର ଗୁରୁତ୍ୱ ବୁଝିପାରି ବଳିରାଜା କହିଲେ—ଗୁରୁଦେବ, ଆପଣଙ୍କ ସିଦ୍ଧାନ୍ତର ଅର୍ଥ ମୁଁ ବେଶ ବୁଝୁଛି । ତେଣୁ ଯାଚକର ମାଗୁଣି ଶୁଣିବା ପରେ ମୁଁ ଯଦି କହିଥାନ୍ତି—ମହାଶୟ, ମୁଁ ଏତେ ଦେଇପାରିବି ନାହିଁ । ମୋ' ଶକ୍ତି ଅନୁସାରେ ଦେବି, ତେବେ ଆପଣଙ୍କ ସିଦ୍ଧାନ୍ତ ମୋ' ପ୍ରତି ଲାଗୁ ହୋଇଥାନ୍ତା ! କିନ୍ତୁ ବଟୁବାମନ ମୋତେ ଯେତେବେଳେ 'ତ୍ରିପାଦ ମେଦିନୀ' ଦାନ ମାଗିଲେ, ମୁଁ ସେତିକ ତାଙ୍କୁ ନିଶ୍ଚୟ ଦେବି ବୋଲି ସ୍ୱୀକାର କରିଛି । ସେ ମୋତେ ସ୍ୱୀକାର କରିବା ଲାଗି ବାଧ୍ୟ କରି ନଥିଲେ । ବରଂ ମୁଁ ତାଙ୍କୁ ବାଧ୍ୟ କରିଛି—ସେତିକ ବ୍ୟତୀତ ଆହୁରି କିଛି ମାଗିବା ଲାଗି । ତେଣୁ ଏ କ୍ଷେତ୍ରରେ ମୁଁ ସ୍ୱୀକାର କରି ପୁଣି ମନା କରିଦେଲେ ମିଥ୍ୟାବାଦୀ ହେବି ନାହିଁକି ?"

ଶୁକ୍ରାଚାର୍ଯ୍ୟ ପୁଣିଥରେ ନୂତନ ପ୍ରସ୍ତାବ ଦେଇ କହିଲେ—"ମହାରାଜ, ମୁଁ ଆପଣଙ୍କୁ ତ୍ରିପାଦ ମେଦିନୀ ଦେବାପାଇଁ ବାରଣ କରୁନାହିଁ । ସେ ତ୍ରିପାଦ ମେଦିନୀ ସ୍ଥାନରେ ତିନିଶହ ପାଦ ଭୂମି ନେଇପାରନ୍ତି, କିନ୍ତୁ ସେ ନିଜ ପାଦରେ ମାପି ନେବେ ନାହିଁ । ଆମେ ଆମ ପାଦରେ ମାପିଦେବା । ଏଥିରେ ଯାଚକଙ୍କର କିଛି ହାନି ହେଉନାହିଁ । ବରଂ ତାଙ୍କର ଚାହିଦା ଅପେକ୍ଷା ଆମେ ଅଧିକ ଦେଉଥାଉଁ ।"

ବଳିରାଜା ହାତଯୋଡ଼ି କହିଲେ—"ଗୁରୁଦେବ, ଆପଣ କିଛି ଖରାପ ଭାବିବେ ନାହିଁ । ମୁଁ ମିଥ୍ୟାବାଦୀ ହୋଇପାରିବି ନାହିଁ । ବଟୁବାମନ ମୋତେ କେବଳ

ତିନପାଦ ଭୂମି ମାଗିଛନ୍ତି ଏବଂ ସେ ନିଜ ପାଦରେ ମାପିନେବାପାଇଁ ପ୍ରଥମରୁ କହିଛନ୍ତି । ମୁଁ ତାଙ୍କୁ ନିଜ ପାଦରେ ମାପିନେବା ପାଇଁ ସ୍ୱୀକୃତି ପ୍ରଦାନ କରିଛି । ବର୍ତ୍ତମାନ ମୁଁ କେଉଁ ମୁହଁରେ କହିବି ଯେ, ଆପଣ ନିଜ ପାଦରେ ମାପି ଭୂମିଦାନ ନେଇପାରିବେ ନାହିଁ ! ଏପରି ମିଥ୍ୟା କହିବାକୁ ମୁଁ ଆଦୌ ପସନ୍ଦ କରୁନାହିଁ ।”

ଶୁକ୍ରାଚାର୍ଯ୍ୟ ନିଜ ମନ୍ତବ୍ୟରେ ଅଟଳ-ରହି କହିଲେ—“ଠିକ୍ କହୁଛନ୍ତି ଆପଣ; କିନ୍ତୁ କେତେକ କ୍ଷେତ୍ରରେ ଅସତ୍ୟ ଭାଷଣ ଦୋଷାବହ ହୁଏ ନାହିଁ । ମୁଁ ତାହା ଆପଣଙ୍କୁ ଶାସ୍ତ୍ରୀୟ ବଚନଦ୍ୱାରା ବୁଝାଇ ଦେଉଛି ଶୁଣନ୍ତୁ ।”

ଶ୍ରୀ ଶୁକଦେବ କହୁଛନ୍ତି—“ହେ ଉତ୍ତରାନନ୍ଦନ, ଶୁକ୍ରାଚାର୍ଯ୍ୟ ବଟୁବାମନଙ୍କୁ ଦାନ ନ ଦେବାପାଇଁ ବଳିରାଜାଙ୍କୁ ଅନେକପ୍ରକାର ବୁଝାଇଥିଲେ ।

## ଛପ୍ପୟ

ନହୀଂ ସର୍ବଥା କରୈ ନ ନିଜ ସର୍ବସ୍ୱ ଗଁ ମାୱୈ ।
ଭିକ୍ଷୁକ ଆୱୈ ଦେଇ କଛୁ କଛୁ ଟାଲ ବତାୱୈ ॥
ଅପନୀ ବୃତ୍ତି ବଚାଯ୍ ଵିତ୍ତସମ କରୈ ଦାନ ନିତ ।
ଲୋକ ଔର ପରଲୋକ ମାଁହି ରାଖେ ଅପନୋ ହିତ ॥
ରକ୍ଷା ତନ ଧନ କୀ କରୈ, ସଦା ସତ୍ୟ ବୋଲେ ବଚନ ।
କହୂଁ ଅସତ୍ୟ ବୋଲେ ବିବଶ, ହ୍ୱୈ ପ୍ରସଙ୍ଗବଶ ବିଜ୍ଞଜନ ॥



# ସ୍ଥଳ ବିଶେଷରେ
# ଅସତ୍ୟ ଦୋଷାବହ ନୁହେ

ସ୍ତ୍ରୀଷୁ ନର୍ମବିବାହେ ଚ ବୃତ୍ତ୍ୟର୍ଥେ ପ୍ରାଣସଙ୍କଟେ ।
ଗୋ ବ୍ରାହ୍ମଣାର୍ଥେ ହିଂସାୟାଂ ନାନୃତଂ ସ୍ୟାଜ୍ଜୁଗୁପ୍ସିତମ୍ ॥"

ଛପ୍‌ପୟ

"ହଁସୀ ଖେଲ ମହଁ ଔର କାମିନୀ କ୍ରୀଡ଼ା ମାହିଁ ।
ହୋୟ ଜୀବିକା ନାଶ ପାନ କାହୂକେ ଜାହୀ ॥
ନିଜ ପ୍ରାନନ କେ ହେତୁ ବିପ୍ର ଗୌ ରକ୍ଷା ହୋୱେ ।
ତୋ ବିଶେଷ ନହିଁ ଦୋଷ ସତ୍ୟ କୁଁ ଯଦ ନର ଖୋୱେ ॥
ମାତୁ ପିତା ଅତି ବୃଦ୍ଧ ହୈଁ, ବାଳକ ଅତି ଅଜ୍ଞାନ ହୈଂ ।
ଜପ ତପ ପ୍ରାନନ କୁଁ ରଖୈ, ସତ୍ୟ ଦେହ ମହଁ ପ୍ରାନ ହୈଂ ॥"

ଅର୍ଥାତ୍ ଶୁକ୍ରାଚାର୍ଯ୍ୟ ବଳିରାଜାଙ୍କୁ କହୁଛନ୍ତି—"ମହାରାଜ, ସ୍ତ୍ରୀମାନଙ୍କ ସମ୍ବନ୍ଧରେ, ହସଖେଳରେ, ବିବାହରେ, ଜୀବିକା ଅର୍ଜନରେ, ପ୍ରାଣସଙ୍କଟ ସମୟରେ, ଗୋ ବ୍ରାହ୍ମଣଙ୍କ ରକ୍ଷା କାର୍ଯ୍ୟରେ ଏବଂ ସର୍ବୋପରି କୌଣସି ବ୍ୟକ୍ତିର ବଧ ଅବସରରେ ମିଥ୍ୟା କହିବା ଆଦୌ ଦୋଷାବହ ନୁହେ ।

ଶାସ୍ତ୍ରରେ ଅନେକ ନିୟମ ରହିଛି ଏବଂ ପ୍ରତ୍ୟେକ ନିୟମର ଅପବାଦ ରହିଛି । ସନ୍ଧ୍ୟା, ବନ୍ଦନ, ଅଗ୍ନିହୋତ୍ର କରିବା ପାଇଁ ଶାସ୍ତ୍ରରେ ବିଧାନ ରହିଛି । କିନ୍ତୁ ତା'ର ଅପବାଦ ହେଉଛି—ସୂତକ ଓ ମୃତ୍ତିକା ସମୟରେ ତାହା କରାଯିବ ନାହିଁ । କେବଳ ସେତିକି ନୁହେ, ଯଜ୍ଞାଦି ଅନୁଷ୍ଠାନରେ ବ୍ୟସ୍ତ ରହିଥିବା କିମ୍ବା କୌଣସି ପରୋପକାର କାର୍ଯ୍ୟରେ ଲାଗିଥିବା ସମୟରେ, ଅବସର ନ ମିଳିଲେ ସନ୍ଧ୍ୟା, ବନ୍ଦନା ଓ ଅଗ୍ନିହୋତ୍ରାଦି ନ କରିବା ଆଦୌ ଦୋଷାବହ ନୁହେ ।

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ବଳିରାଜା କୌଣସିମତେ ମିଥ୍ୟାର ଆଶ୍ରୟ ନେବାକୁ ପ୍ରସ୍ତୁତ ହେଲେ ନାହିଁ । କିନ୍ତୁ ତାଙ୍କ ଗୁରୁ ତଥା ଅସୁର କୁଳର ସଂରକ୍ଷକ ଆଚାର୍ଯ୍ୟ ଶୁକ୍ର ରାଜାଙ୍କୁ ବୁଝାଇବାକୁ ଯାଇ କହିଲେ—"ମହାରାଜ, ଆଠଗୋଟି ଅବସରରେ ମିଥ୍ୟା କହିବା ଆଦୌ ଦୋଷାବହ ନୁହେଁ ।"

ବଳିରାଜା ସେହି ଅବସରଗୁଡ଼ିକ ସମ୍ବନ୍ଧରେ ସବିଶେଷ ବିବରଣୀ ଜାଣିବାକୁ ଚାହାନ୍ତେ ଶୁକ୍ରାଚାର୍ଯ୍ୟ କହିଲେ—"ହେ ରାଜନ୍, ସ୍ତ୍ରୀମାନଙ୍କୁ ପ୍ରସନ୍ନ କରିବା ଉଦ୍ଦେଶ୍ୟରେ ମିଥ୍ୟା କହିଲେ ତାହା ଦୋଷଯୁକ୍ତ ନୁହେ । ମନେକରନ୍ତୁ, ଜଣକର ପତ୍ନୀ ଗୋଟିଏ ମୂଲ୍ୟବାନ୍ ଶାଢ଼ୀ କିଣିବା ଲାଗି ସ୍ୱାମୀଙ୍କ ଆଗରେ ଅଳିକଲା । ଯଦି ସ୍ୱାମୀ ସେହି ମୂଲ୍ୟବାନ୍ ଶାଢ଼ୀଟି କିଣିଦେଇ ନପାରେ ତା'ହେଲେ, ସ୍ତ୍ରୀ ଅଭିମାନରେ ଫୁଲିଉଠେ । ସେ ସମୟରେ ସ୍ୱାମୀଙ୍କର ଆର୍ଥିକ ସ୍ଥିତି କ'ଣ ତାହା ସେ ବୁଝିବାକୁ ପ୍ରସ୍ତୁତ ହୁଏ ନାହିଁ । ତେଣୁ ସେପରି ପରିସ୍ଥିତିରେ ସ୍ୱାମୀ କୌଣସି ପ୍ରକାର ମନଭୁଲାଣିଆ ମିଛକହି ପରିସ୍ଥିତିରୁ ଉଧୁରିଯିବା ଲାଗି ଚେଷ୍ଟାକରେ । ସେପରି କ୍ଷେତ୍ରରେ ମିଥ୍ୟା କହିବା ଆଦୌ ଦୋଷାବହ ନୁହେଁ ।

"ଆହୁରି ମଧ୍ୟ, ସ୍ତ୍ରୀ ଲୋକମାନେ ସାଧାରଣତଃ କୌଣସି ଗୁପ୍ତକଥା ପେଟରେ ରଖିପାରନ୍ତି ନାହିଁ । କିନ୍ତୁ ସେମାନେ ସମସ୍ତ ପ୍ରକାର ଗୁପ୍ତତଥ୍ୟ ଶୁଣିବା ଲାଗି ଖୁବ୍ ଆଗ୍ରହ ପ୍ରକାଶ କରନ୍ତି । ସେପରି ଅବସରରେ ଏଣୁତେଣୁ ମିଛକଥା କହି ସେମାନଙ୍କୁ ଭୁଲାଇଦେବା ଆଦୌ ଅନୁଚିତ କାର୍ଯ୍ୟ ନୁହେ ।

"ଏ ସମ୍ବନ୍ଧରେ ଗୋଟିଏ କାହାଣୀ କହୁଛି, ଶୁଣନ୍ତୁ ! ଜଣେ ରାଜା ଯୋଗୀରାଜଙ୍କଠାରୁ ଗୋଟିଏ ମନ୍ତ୍ର ଶିଖିଥିଲେ । ସେହି ମନ୍ତ୍ରବଳରେ ସେ ପଶୁ, ପକ୍ଷୀ, କୀଟ ଓ ପତଙ୍ଗଙ୍କ ଭାଷା ବୁଝିପାରୁଥିଲେ । କିନ୍ତୁ ସେହି ମନ୍ତ୍ରର ରହସ୍ୟ ଅନ୍ୟ-ଆଗରେ ପ୍ରକାଶ କରିଦେଲେ, ରାଜାଙ୍କର ମୃତ୍ୟୁ ହେବ ବୋଲି ଯୋଗିରାଜ ଦୃଢ଼-ଚେତାବନୀ ଶୁଣାଇଥିଲେ । ଦିନେ ରାଜା ଅନ୍ତଃପୁରରେ ବସି ପିମ୍ପୁଡ଼ିମାନଙ୍କ କଥା ଶୁଣି ହସିଦେଲେ । ରାଜାଙ୍କୁ ହସିବାର ଦେଖି, ରାଣୀ ହସର କାରଣ ଜାଣିବାକୁ ଚାହିଁଲେ । ରାଜା ସତ୍ୟ କଥା ପ୍ରକାଶ କରି କହିଲେ – "ମହାରାଣୀ, ମୁଁ କାହିଁକି ହସିଲି, ଯଦି କହିଦେବି, ତା'ହେଲେ ମୋର ମୃତ୍ୟୁ ହୋଇଯିବ ।' କିନ୍ତୁ ରାଣୀ ରାଜାଙ୍କ କଥାରେ ବିଶ୍ୱାସ ନକରି, ଜିଦ୍ ଧରି କହିଲେ—ଆପଣ ଯଦି ମୋତେ ସେ ରହସ୍ୟ କଥା ନ କହିବେ ତା'ହେଲେ ମୁଁ ବିଷଖାଇ ଆତ୍ମହତ୍ୟା କରିଦେବି । ଏହା ଶୁଣି ରାଜା ଅତ୍ୟନ୍ତ ବିବ୍ରତ ହୋଇଯାଇ ଯୋଗିରାଜଙ୍କ ସହିତ ପରାମର୍ଶ କଲେ । ଯୋଗିରାଜ କହିଲେ —ଆପଣ ଆଦୌ ସେ ଗୁପ୍ତତଥ୍ୟ ରାଣୀଙ୍କ ଆଗରେ ପ୍ରକାଶ

କରନ୍ତୁ ନାହିଁ । ସେ ଆଦୌ ବିଷପାନ କରି ଆତ୍ମହତ୍ୟା କରିବେ ନାହିଁ । ରାଜା ସେହି ଅନୁସାରେ ରାଣୀଙ୍କ ଆଗରେ ଗୋପନୀୟ ତଥ୍ୟ ପ୍ରକାଶ କଲେ ନାହିଁ । ରାଣୀ କିଛିଦିନ ଅଭିମାନ କରି ପୁଣି ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲେ ।

"ମହାରାଜ", ଶୁକ୍ରାଚାର୍ଯ୍ୟ କହିଲେ—"ରାଜା ଯଦି ସେତେବେଳେ ପ୍ରକୃତ ସତ୍ୟକଥା ନ କହି, ଅନ୍ୟ କୌଣସି ମନଭୁଲାଣିଆ ମିଛକଥା କହିଦେଇ-ଥାଆନ୍ତେ, ତେବେ ଅବସ୍ଥା ଏତେ ଜଟିଳ ହୋଇ ନ'ଥାନ୍ତା ! ତେଣୁ କୁହାଯାଇଛି— ସ୍ତ୍ରୀମାନଙ୍କ ଆଗରେ ମିଛ କହିବା ଆଦୌ ଦୋଷାବହ ନୁହେଁ ।

ହସ ଖେଳ ଅବସ୍ଥାରେ ମିଥ୍ୟାକଥା ମୁହଁରୁ ବାହାରିଗଲେ, ଆଦୌ ଦୋଷଯୁକ୍ତ ନୁହେଁ । ହସ ଖେଳ ଅବସରରେ ମିଥ୍ୟା ଭାଷଣ ଅବଶ୍ୟ ଗ୍ରହଣୀୟ ନୁହେଁ, କିନ୍ତୁ ସେପରି ଅବସ୍ଥାରେ ମୁହଁରୁ ବାଗ୍‌ଚଳତାବଶତଃ ମିଥ୍ୟା କଥା ବାହାରି ପଡ଼େ । ଅଭିନୟ କଲାବେଳେ ନଟନଟୀ ରାଜାରାଣୀ ବେଶ ପିନ୍ଧି ପ୍ରକୃତ ରାଜା ରାଣୀଙ୍କ ପରି କଥାବାର୍ତ୍ତା କରନ୍ତି । ତା' ମଧ୍ୟ ମିଥ୍ୟା ଭାଷଣ । କିନ୍ତୁ ଅଭିନୟ ମଞ୍ଚରେ ସେପରି କରିବା ଆଦୌ ଦୂଷଣୀୟ ନୁହେଁ ।

ତୃତୀୟ ପ୍ରସଙ୍ଗ ହେଉଛି—ବିବାହ ଅବସର । ସେ ସମୟରେ ମିଥ୍ୟାଭାଷଣ କରିବା ଆଦୌ ପାପ ନୁହେଁ । କନ୍ୟା ପକ୍ଷର ଲୋକମାନେ କନ୍ୟାର ପ୍ରକୃତ ରୂପଗୁଣ ସମ୍ବନ୍ଧରେ ଜଣାନ୍ତି ନାହିଁ । ଗୋଟିଏ ଗୁଣସ୍ଥାନେ ଝିଅର ସବୁଟିକି ଦୁର୍ଗୁଣ ପ୍ରକାଶ କରିଦେଲେ, ବରପକ୍ଷ ଆଦୌ ବିବାହ କରିବାକୁ ରାଜି ହେବେ ନାହିଁ । ସେହିପରି ବରପକ୍ଷରୁ ମଧ୍ୟ ବରର ଧନ ସମ୍ପତ୍ତି ତଥା ଦୁର୍ଗୁଣ ଗୁଡ଼ିକୁ ଲୁଚାଇ କନ୍ୟାପକ୍ଷ ଲୋକଙ୍କୁ ମିଥ୍ୟା କଥା କୁହାଯାଇଥାଏ । ତାହା ନ କଲେ, ବିବାହ ହୋଇପାରିବ ନାହିଁ ।

ଜୀବିକା ଅର୍ଜନ ସମୟରେ ମିଥ୍ୟା କହିବା ଦୋଷଯୁକ୍ତ ନୁହେଁ । ସାଧାରଣତଃ ବ୍ୟବସାୟୀମାନେ ନିଜ ଜିନିଷର ପ୍ରକୃତ ମୂଲ୍ୟ ଗ୍ରାହକ ଆଗରେ ପ୍ରକାଶ ନ କରି, ରାଣ ନିୟମ ପକାଇ ଗ୍ରାହକଙ୍କୁ ସନ୍ତୁଷ୍ଟ କରାଇଥାନ୍ତି । ସେପରି ଛଳନାପୂର୍ଣ୍ଣ କଥା ପ୍ରକାଶ ନ କଲେ ଗ୍ରାହକ ଫେରିଯିବାର ସମ୍ଭାବନା ଥାଏ । ତେଣୁ ଆଜୀବିକା ଅର୍ଜନ ସମୟରେ କେବେହେଲେ ସତ୍ୟଭାଷଣ କରାଯାଏ ନାହିଁ ଏବଂ ସେ ସମୟରେ ମିଥ୍ୟା କହିବା ଦୋଷଯୁକ୍ତ ନୁହେଁ ।

ଜୀବନ ସଙ୍କଟାପନ୍ନ ହେଲେ, ସେଥିରୁ ଉଦ୍ଧାର ପାଇବା ପାଇଁ ମିଥ୍ୟା କହିବା ଆଦୌ ପାପ ନୁହେଁ । ମଣିଷ ବଞ୍ଚିରହିଲେ ପାପର ପ୍ରାୟଶ୍ଚିତ୍ତ କରିପାରେ । ପ୍ରାଣରକ୍ଷା ନିମିତ୍ତ ବିଶ୍ୱାମିତ୍ରଙ୍କ ପରି ମହର୍ଷି ମଧ୍ୟ ଅଖାଦ୍ୟ ପଦାର୍ଥ ଭୋଜନ କରାଇଥିଲେ ।

ଆଉ ଜଣେ ଋଷି ଭୋକରେ ବ୍ୟାକୁଳ ହୋଇ ଗୋଟିଏ ମାହୁନ୍ତ ପାଖରେ ପହଞ୍ଚ ଖାଦ୍ୟ ମାଗିଲେ । ତା' ପାଖରେ ଅଇଁଠା ହୋଇଥିବା ସିଝା କୋଳଥ ବ୍ୟତୀତ ଆଉ କିଛି ନଥିଲା । ସେ ବାରଣ କରିବା ସତ୍ତ୍ୱେ ଋଷି ସେହି ଅଇଁଠା ସିଝା କୋଳଥ ଖାଇ ପ୍ରାଣ ରକ୍ଷାକଲେ । ଋଷି ଖାଇସାରିବା ପରେ, ମାହୁନ୍ତ ଋଷିଙ୍କୁ ପାଣି ଆଣି ପିଇବା ଲାଗି ଦିଅନ୍ତେ ଋଷି କହିଲେ—"ତୁମେ ଛୁଇଁଥିବା ପାଣି ମୁଁ ପିଇବି ନାହିଁ ।"

ଏହା ଶୁଣି ମାହୁନ୍ତ ଆଶ୍ଚର୍ଯ୍ୟ ହୋଇ କହିଲା—"ଋଷି ମହାରାଜ୍, ଏଇଲେ ଆପଣ ମୋ ଅଇଁଠା ଖାଇଲେ, ସେଥିରେ ଆପଣଙ୍କର ଧର୍ମ ନଷ୍ଟହେଲା ନାହିଁ, ଅଥଚ ମୁଁ ଛୁଇଁଥିବା ପାଣି ପିଇଦେଲେ ଆପଣ ଅଜାତିଆ ହୋଇଯିବେ ?"

ଋଷି ମହାଶୟ ଶାନ୍ତ ସ୍ୱରରେ କହିଲେ—"ବାବା, ସେତେବେଳେ ମୋତେ ଖୁବ୍ ଭୋକ ଲାଗୁଥିଲା । ତୁମ ଅଇଁଠା ସେତେବେଳେ ମୁଁ ଖାଇ ନଥିଲେ ମୋ' ପ୍ରାଣ ବାହାରି ଯାଇଥାଆନ୍ତା । ପ୍ରାଣରକ୍ଷା ପାଇଁ ମୁଁ ତୁମ ଅଇଁଠା କୋଳଥ ଖାଇ କ୍ଷୁଧା ନିବାରଣ କରିଛି । ଏହା ଫଳରେ ମୁଁ ବଞ୍ଚିଗଲି । ଏହାପରେ ତୁମ ଅଇଁଠା ଖାଇ ମୁଁ ଯେଉଁ ପାପ କରିଛି, ତା'ର ପ୍ରାୟଶ୍ଚିତ କରିବି । କିନ୍ତୁ ପାଣି ଯେ କୌଣସି ସ୍ଥାନରେ ମିଳିବ ଏବଂ ମୁଁ ନିଜେ ପାଣି ଆଣି ପିଇପାରିବି । ଏହା ଜାଣିଶୁଣି ମୁଁ ଯଦି ତୁମ ହାତରୁ ପାଣି ପିଏ, ତେବେ ସେ ପାପର ପ୍ରାୟଶ୍ଚିତ ନାହିଁ । ଆତ୍ମରକ୍ଷା ପାଇଁ ମଣିଷ ଯେ କୌଣସି ପାପ କଲେ ମଧ୍ୟ ତାହା ସେପରି ଦୋଷାବହ ନୁହେ ।"

ଗୋମାତାଙ୍କ ସୁରକ୍ଷା ଲାଗି ଯଦି ମିଥ୍ୟା କହିବାକୁ ପଡ଼େ ତେବେ ତାହା ପାପ ନୁହେଁ । ମନେକର—ଗୋଟିଏ ଗାଈ ଜୀବନ ବିକଳେ କଂସେଇ କବଳରୁ ମୁକ୍ତ ହୋଇ ପଳାଇ ଯାଉଛି । କଂସେଇ ତା' ପଛେ ପଛେ ଧାଇଁଛି । ସେତେବେଳେ ଯଦି ସେ କଂସେଇ ଗାଈର ସନ୍ଧାନ ଦେବା ପାଇଁ ତୁମକୁ ପଚାରେ, ତେବେ ତୁମେ ସତ୍ୟକଥା ନ କହି ତାକୁ ଭୁଲାଇ ଦେବ । ସେ ସମୟରେ ସତ କଥା କହିବା ଅଧର୍ମ କାର୍ଯ୍ୟ ହେବ ।

ଏହା ଶୁଣି ମହର୍ଷି ଶୌନକ କହିଲେ—"ହେ ସୂତ ମହର୍ଷି, ଏ' କି ନୂଆ କଥା ଆପଣ କହୁଛନ୍ତି ? ସତ୍ୟ କହିଲେ, ଅଧର୍ମ ହେବ କିପରି ?"

ଶୌନକଙ୍କୁ ଉତ୍ତର ଦେଇ ସୂତମୁନି କହିଲେ—"ବ୍ରହ୍ମନ୍, ଅନେକ ସମୟରେ ସତ୍ୟ ବୋଲି ଜଣାପଡ଼ୁଥିବା ବିଷୟ, ଅସତ୍ୟ ଓ ଅସତ୍ୟ ପରି ବୋଧହେଉଥିବା ବିଷୟ ସତ୍ୟ ହୋଇଥାଏ । ଏ ସମ୍ବନ୍ଧରେ ମୁଁ ଆପଣମାନଙ୍କୁ ଗୋଟିଏ କାହାଣୀ ଶୁଣାଇ ଦେଉଛି ।

କୌଣସି ଗୋଟିଏ ସ୍ଥାନରେ ଜଣେ ଭଗବଦ୍ ଭକ୍ତ ଥିଲେ । ସେ ବୁଲି ବୁଲି ଚାରଧାମ ତୀର୍ଥ ଯାତ୍ରା କରିବାକୁ ବାହାରିଲେ । ଶେଷରେ ପୁରୀ ଧାମ ଉଦ୍ଦେଶ୍ୟରେ ଯାଉଁ ଯାଉଁ ବାଟରେ ଜଣେ ଗୃହସ୍ଥଙ୍କ ଘରେ ଆଶ୍ରୟ ନେଲେ । ସାଧୁ ଜଣକ ଯୁବକ ଓ ଖୁବ୍ ସୁନ୍ଦର ଥିଲେ । ସେ ଗୃହସ୍ଥ ଥିଲେ—ବୃଦ୍ଧ ଓ ତାଙ୍କର ପତ୍ନୀ ଥିଲେ ଯୁବତୀ ଓ ସୁନ୍ଦରୀ । ଯୁବତୀଟି ସାଧୁଙ୍କୁ ଆଦର ସତ୍କାର କରି ଖାଇବା ପିଇବାକୁ ଦେଲା । ତା'ପରେ ସ୍ତ୍ରୀଟି ବାବାଜୀଙ୍କୁ ଅତ୍ୟନ୍ତ ଶ୍ରଦ୍ଧାକରି ସେହିଠାରେ ରାତ୍ରି ଯାପନ କରିବାକୁ ଅନୁରୋଧ କଲା । ସାଧୁ ବିଚରା ଥିଲେ ନିତାନ୍ତ ସରଳ । ସେ ଯୁବତୀଟିର ଆଗ୍ରହରେ ପ୍ରୀତ ହୋଇ ସେଠାରେ ରାତ୍ରି ଯାପନ କରିବାକୁ ରାଜି ହୋଇଗଲେ ।

ରାତ୍ରିରେ ବୃଦ୍ଧ ଶୋଇପଡ଼ିବା ପରେ, ଯୁବତୀଟି ସାଧୁଙ୍କ ପାଖକୁ ଆସି ତାଙ୍କ ସହିତ ଅବୈଧ ପ୍ରଣୟରେ ମାତିବାକୁ ଅନୁରୋଧ କଲା । ତାହା ଶୁଣି ସାଧୁ ଯୁବତୀକୁ ବୁଝାଇ କହିଲେ—"ମାଆ, ସ୍ୱାମୀଙ୍କ ସେବାରେ ନିଯୁକ୍ତ ହୁଅ । ସ୍ୱାମୀ ଥାଉଁ ଥାଉଁ ପରପୁରୁଷ ସହିତ ପ୍ରଣୟ ସମ୍ପର୍କ ରଖିବା ଘୋର ପାପ" ।

ସ୍ତ୍ରୀଟି ବୁଝିଲା ଯେ, ତା' ସ୍ୱାମୀ ବଞ୍ଚିଥିବା ଅବସ୍ଥାରେ ସାଧୁ ତାକୁ ଗ୍ରହଣ କରିବେ ନାହିଁ । ତେଣୁ ସେ ଗୋଟିଏ ଖଣ୍ଡା ଆଣି ସ୍ୱାମୀଙ୍କ ମୁଣ୍ଡ କାଟିଦେଲା ଏବଂ ସାଧୁଙ୍କ ନିକଟରେ ପହଞ୍ଚି ତାକୁ ଗ୍ରହଣ କରିବା ଲାଗି ଅନୁରୋଧ କଲା ।

ସାଧୁ ପୂର୍ବପରି ଯୁବତୀଟିକୁ ଶାନ୍ତ ସ୍ୱରରେ କହିଲେ—"ମାଆ, ପରନାରୀ ମାତୃତୁଲ୍ୟ । ତୁମେ ଏ' ଭଳି ପାପପୂର୍ଣ୍ଣ ପ୍ରସ୍ତାବ କର ନାହିଁ । ଏହା ତୁମ ପକ୍ଷରେ ଉଚିତ ନୁହେଁ ।"

ଏତକ ଶୁଣିବାମାତ୍ରେ କାମବାଣରେ ଜର୍ଜ୍ଜରିତା ଯୁବତୀ କ୍ରୋଧରେ ଅନ୍ଧ ହୋଇଗଲା । ସେ ସାଧୁକୁ ଦଣ୍ଡଦେବା ଉଦ୍ଦେଶ୍ୟରେ ପାଟିକରି କହିଲା—"ଧାଇଁଆସ, ଏ ସାଧୁ ମୋ' ସ୍ୱାମୀଙ୍କୁ ମାରିଦେଇ ମୋ' ସହିତ ବଳାତ୍କାର କରୁଛି ।" ଏହା ଶୁଣି ପାଖ ପଡ଼ିଶାରୁ ଲୋକେ ଧାଇଁଆସିଲେ । ସାଧୁଙ୍କୁ ପ୍ରତିହାରୀ ଧରି ନେଇ ରାଜଦ୍ୱାରରେ ଉପସ୍ଥିତ କରାଇଲେ । ରାଜା ସବୁ କଥା ଶୁଣି, ସାଧୁଙ୍କର ଦୁଇଟିଯାକ ହାତ କାଟିଦେଇ ଛାଡ଼ିଦେଲେ । ସାଧୁ ବିଚରା କର୍ମକୁ ଆଦରି ଶ୍ରୀ ଜଗନ୍ନାଥଙ୍କ ଧାମରେ ପହଞ୍ଚିଲେ । ସେ ଆଉ ଜଣେ ମହାତ୍ମାଙ୍କ ଆଗରେ ସବୁ ସୁଖ ଦୁଃଖ ଜଣାଇ କହିଲେ—"ବ୍ରହ୍ମନ୍, ମୁଁ ଧର୍ମ କାର୍ଯ୍ୟ କରିବାକୁ ଯାଇ ଏ ଦଣ୍ଡ ଭୋଗିଲି କାହିଁକି ?"

ସନ୍ଥ ମହାତ୍ମା ସାଧୁଙ୍କୁ ବୁଝାଇ କହିଲେ—"ବାପା, ବିନା କାରଣରେ କେହି କାହାରିକୁ ଦଣ୍ଡ ଦିଏ ନାହିଁ । ପୂର୍ବଜନ୍ମର ସଂସ୍କାର ହେତୁରୁ ମନୁଷ୍ୟ ଇହ ଜନ୍ମରେ ସୁଖ ଦୁଃଖ ଭୋଗକରେ ।"

ସାଧୁ ଯୁବକଟି ପଚାରିଲେ—"ମହାତ୍ମନ୍, ମୁଁ ସେ ସ୍ତ୍ରୀ ଲୋକଟିର କି ଅପକାର କରିଥିଲି ଯେ, ସେ ମୋ ପ୍ରତି ଏପରି ଅକାରଣ ଦଣ୍ଡ ବିଧାନ କଲେ ?

ମହାତ୍ମା ଜଣକ ଥିଲେ ବ୍ରହ୍ମଜ୍ଞାନୀ । ସେ ଭୂତ, ଭବିଷ୍ୟ କଥା ଜାଣିପାରୁ ଥିଲେ । ସେ ସାଧୁ ଯୁବକଟିକୁ ବୁଝାଇ କହିଲେ—"ବାବା, ତୁମେ ପୂର୍ବଜନ୍ମରେ ଜଣେ କର୍ମକାଣ୍ଡୀ ବ୍ରାହ୍ମଣ ଥିଲ । ଦିନେ ତୁମେ କାଶୀଧାମର ଦଶାଶ୍ୱମେଧ ଘାଟରେ ସ୍ନାନ କରୁଥିଲ । ସେତିକିବେଳେ ଗୋଟିଏ ଗାଈ ପ୍ରାଣ ବିକଳରେ କଂସେଇ ହାତରୁ ପଘା ଛଡ଼ାଇପଳାଇ ଆସିଲା । କିଛି ସମୟ ପରେ କଂସେଇ ଆସି ତୁମକୁ ଗାଈର ସନ୍ଧାନ ବିଷୟ ପଚାରନ୍ତେ, ତୁମେ ଦୁଇହାତ ଟେକି, ଯେଉଁ ବାଟେ ଗାଈଟି ଯାଇଥିଲା, ତାହା କଂସେଇକୁ ଜଣାଇଦେଲ । ସେହି ବାଟେ ବାଟେ ଯାଇ ହତ୍ୟାକାରୀ ଗାଈଟିକୁ ଧରି ଆଣି ନିର୍ମମ ଭାବରେ ହତ୍ୟାକଲା । ତୁମେ ଦୁଇହାତ ଟେକି ଗାଈଟି ପଳାଇ ଯାଇଥିବା ମାର୍ଗକୁ ନିର୍ଦ୍ଦେଶ କରି ନଥିଲେ, ହୁଏତ ସେ ଗାଈଟି ସେଦିନ ହତ୍ୟା-କାରୀ କବଳରୁ ରକ୍ଷା ପାଇଥାଆନ୍ତା । କେବଳ ତୁମରି ସାହାଯ୍ୟରୁ ସେଦିନ ହତ୍ୟାକାରୀ ସେହି ଗାଈଟିକୁ ହତ୍ୟା କରିବାରେ ସଫଳ ହେଲା ।

ପରଜନ୍ମରେ ସେହି ଗାଈ ସୁନ୍ଦରୀ ସ୍ତ୍ରୀ, କଂସେଇ ବୃଦ୍ଧ ସ୍ୱାମୀ ଓ ତୁମେ ସାଧୁ ରୂପରେ ଜନ୍ମ ହୋଇଥିଲ । ପୂର୍ବଜନ୍ମର ଅପରାଧରୁ ସେହି ସ୍ତ୍ରୀ ପତିହତ୍ୟା କଲା ଏବଂ ଦୁଇହାତ ଟେକି ତୁମେ ଗାଈର ସନ୍ଧାନ ଦେଇଥିବାରୁ, ତୁମର ଦୁଇଟି ହାତ କଟାଗଲା । ତୁମେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶରଣ ପଶ, ସେ ଶରଣାଗତ ରକ୍ଷକ, ଭକ୍ତବତ୍ସଳ ଓ ଅନାଥର ନାଥ । ସେ ତୁମର ଦୁଃଖ ଦୂର କରିଦେବେ ।

ସେ ସାଧୁଜଣକ ଶ୍ରୀ ଜଗନ୍ନାଥଙ୍କୁ ଏକାଗ୍ର ଚିତ୍ତରେ ଡାକି ଡାକି ସେହି ଶ୍ରୀକ୍ଷେତ୍ର ଧାମରେ ବାସ କଲେ । କିଛିଦିନ ପରେ ସେ ଦିନେ ସକାଳୁ ଉଠି ଦେଖିଲେ ଯେ, ତାଙ୍କର ହାତ ଦୁଇଟି ପୂର୍ବପରି ହୋଇଯାଇଛି ।

ସୂତମୁନି କହିଲେ "ହେ ଶୌନକ"—ଗୋମାତାଙ୍କ ସୁରକ୍ଷା ଲାଗି ମିଥ୍ୟା କହିବା ଆଦୌ ପାପ ନୁହେ ।

ବ୍ରାହ୍ମଣଙ୍କ ହିତରେ ମିଥ୍ୟା କୁହାଯାଇ ପାରେ । ଯଦି କୌଣସି ବ୍ରାହ୍ମଣଙ୍କ ବିପଦରେ ପଡ଼ିଛନ୍ତି ଏବଂ ମିଥ୍ୟାକଥା କହିଦେଲେ ସେ ବିପଦମୁକ୍ତ ହୋଇଯିବେ, ସେପରି ପରିସ୍ଥିତିରେ ମିଛ କଥା କହିବା ଆଦୌ ପାପ ନୁହେଁ । ଦୁନିଆଁରେ ଏପରି କେତେକ ଭକ୍ତ ଅଛନ୍ତି, ଯେଉଁମାନେ ପରଦ୍ରବ୍ୟ ଚୋରି କରି ଆଣି କ୍ଷୁଧାର୍ଥ ବ୍ରାହ୍ମଣ

ଭୋଜନ ଦଅନ୍ତୁ । ସେପରି ପରିସ୍ଥିତିରେ ସେଗୁଡ଼ିକ ନିନ୍ଦିତ କର୍ମରେ ପରିଗଣିତ ହୁଏ ନାହିଁ । ସାଧୁ ଓ ବ୍ରାହ୍ମଣଙ୍କ ହିତପାଇଁ ମିଥ୍ୟା କହିବା ବା ନିନ୍ଦିତ କର୍ମ କରିବା ଆଦୌ ଦୋଷଯୁକ୍ତ ନୁହେଁ ।

ଯଦି ଜଣେ ପ୍ରାଣଦଣ୍ଡ ଦଣ୍ଡିତ ହେବାକୁ ଯାଉଛି, ସେପରି ଅବସ୍ଥା ଉପୁଜିଲେ, ମିଥ୍ୟାକଥା କହି କିମ୍ବା ଛନ୍ଦକପଟଦ୍ୱାରା ତା'ର ପ୍ରାଣରକ୍ଷା କରିବା ଉଚିତ ।

ଏ ସମ୍ବନ୍ଧରେ ଗୋଟିଏ ଆଖ୍ୟାୟିକାର ଅବତାରଣାକରି ସୂତମୁନି ଶୌନକାଦି ବ୍ରହ୍ମର୍ଷିମାନଙ୍କର ସନ୍ଦେହ ମୋଚନ କରିଥିଲେ ।

ଜଣେ ସତ୍ୟବାଦୀ ମୁନି କୌଣସି ଗୋଟିଏ ସ୍ଥାନରେ ବାସ କରୁଥିଲେ । ସେ ଦିନେ ସ୍ନାନ କରି ଆସୁଥିବା ସମୟରେ ଦେଖିଲେ—ଗୋଟିଏ ହରିଣୀ ବ୍ୟାଧର ଶର ପ୍ରହାରରେ ଆହତ ହୋଇ ବୁଦା ମଧ୍ୟରେ ଆତ୍ମଗୋପନ କରିଛି । ଏହି ସମୟରେ କ୍ରୂରକର୍ମା ବ୍ୟାଧ ଆସି ମୁନିଙ୍କୁ ପଚାରିଲା- "ମହାଶୟ, ଆପଣ ଆହତ ହରିଣୀଟିଏ ଦେଖିଛନ୍ତି କି ?"

"ତାହା ଶୁଣି ମୁନି ଭାବିଲେ—"ମୁଁ ଯଦି ହରିଣୀଟିର ସନ୍ଧାନ ଦେଇଦେବି ତେବେ ବ୍ୟାଧ ସଙ୍ଗେ ସଙ୍ଗେ ତାକୁ ପ୍ରାଣରେ ମାରିଦେବ ଏବଂ ମୁଁ ସେହି ହତ୍ୟା ଅପରାଧରେ ଭାଗୀଦାର ହୋଇଯିବି । ଯଦି ମିଥ୍ୟା କହି ବ୍ୟାଧକୁ ଭୁଲାଇ ଦେବି, ତେବେ ମୋର ସତ୍ୟବ୍ରତ ଖଣ୍ଡିତ ହେବ ।"

ବ୍ୟାଧ ଜଣକ ବାରମ୍ବାର ମୁନିଙ୍କୁ ତା' ହରିଣୀଟି ବିଷୟରେ ପଚାରିଲେ, କିନ୍ତୁ ମୁନି ମହୋଦୟ କିଛି ନ କହି ନୀରବ ରହିଲେ । ଶେଷରେ ବ୍ୟାଧ ଜଣକ ବିରକ୍ତ ହୋଇ କହିଲା—"ମୁନିବର, ମୁଁ ଶୁଣିଛି, ଆପଣ ଜଣେ ସତ୍ୟବାଦୀ । ହସ-ଖେଳରେ ମଧ୍ୟ ଆପଣ କେବେହେଲେ ମିଛ କହନ୍ତି ନାହିଁ । ତେଣୁ ମୁଁ ଆପଣଙ୍କୁ ପଚାରୁଛି । ଆପଣ 'ହଁ' କିମ୍ବା 'ନା' କିଛିହେଲେ କହନ୍ତୁ । ମୁଁ ଆପଣଙ୍କ କଥା ଶୁଣି ମୋ ବାଟରେ ଚାଲିଯିବି । ଆପଣ ଯାହାହେଲେ କିଛି ଉତ୍ତର ଦିଅନ୍ତୁ ।"

ମୁନିବର ଗମ୍ଭୀର ହୋଇ କହିଲେ—"ଭାଇ, କ'ଣ ଉତ୍ତର ଦେବି ମୁଁ ଭାବି ପାରୁନାହିଁ । ମୋ ଆଖି ଯାହା ଦେଖିଛି, ତାହା ବାଣୀରେ ପ୍ରକାଶ କରିବା ଲାଗି ମୋ ବାକ୍‌ଶକ୍ତି ମୋତେ ଅନୁମତି ଦେଉନାହିଁ । ଜିହ୍ୱା ବାଣୀ ପ୍ରକାଶ କରିପାରେ, କିନ୍ତୁ ଦେଖିବାର ଶକ୍ତି ଜିହ୍ୱା'ର ନାହିଁ । ଆଖି ଯାହା ଦେଖେ ତାହାକୁ ବାଣୀରେ ପ୍ରକାଶ କରିପାରେ ନାହିଁ । ଯେ ଦେଖି କହିପାରିବ, ତୁମେ ତାକୁ ଯାଇ ପଚାର, ସେ ହିଁ ପ୍ରକୃତ କଥା କହିପାରିବ ।"

ଏହା ଶୁଣି ବ୍ୟାଧ ଖୁସି ହୋଇଗଲେ । କାରଣ ବ୍ୟାଧ ଜଣକ ପ୍ରକୃତରେ ବ୍ୟାଧ ନ ଥିଲେ । ସେ ଥିଲେ—ସ୍ୱୟଂ ଧର୍ମ ଦେବତା । ସେ ମୁନିଙ୍କ ଉତ୍ତର ଶୁଣି ସନ୍ତୁଷ୍ଟ ହୋଇ ତାଙ୍କୁ ମନୋବାଞ୍ଛିତ ବର ଦେଇ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ଜଣେ ସତ୍ୟବାଦୀ ମୁନି ହୋଇଥିବାରୁ ସେ ଏଭଳି ଉତ୍ତର ଦେଇପାରିଲେ । ସାଧାରଣ ବ୍ୟକ୍ତି ଏ ପ୍ରକାର ଉତ୍ତର ଦେଇପାରିବ ନାହିଁ ।

ଶୁକ୍ରାଚାର୍ଯ୍ୟ ବଳିରାଜାଙ୍କୁ ଯେଉଁ ସ୍ଥଳରେ ମିଥ୍ୟା କହିବା ଅନୁଚିତ ନୁହେ, ସେ ସମ୍ବନ୍ଧରେ ବୁଝାଇ କହିଥିଲେ ଏବଂ ପରିଶେଷରେ କହିଲେ—"ମହାରାଜ, ବର୍ତ୍ତମାନ ଆପଣଙ୍କର ଆଜୀବିକା ସମସ୍ୟା ଉପସ୍ଥିତ ହୋଇଥିବାରୁ ଆପଣ ମିଥ୍ୟା କହିଲେ କିମ୍ବା ଅସତ୍ୟ ଭାଷଣ କଲେ ତାହା ଦୋଷାବହ ହେବ ନାହିଁ । ଏହି ବଟୁବାମନ ହେଉଛନ୍ତି—ସ୍ୱୟଂ ବିଷ୍ଣୁ । ସେ କପଟ ବେଶରେ ଆସି ଆପଣଙ୍କ ସର୍ବସ୍ୱ ଅପହରଣ କରିବାକୁ ସୁବିଧା ପାଇଛନ୍ତି । ଆପଣ ଏପରି ଅବସ୍ଥାରେ ସତ୍ୟଭଙ୍ଗ କରି ବଟୁବାମନଙ୍କୁ ପ୍ରତ୍ୟାଖ୍ୟାନ କରନ୍ତୁ । ଏଥିରେ ଆଦୌ ଆପଣ ଦୋଷଯୁକ୍ତ ହେବେ ନାହିଁ ।

ଶ୍ରୀ ଶୁକଦେବ କହିଲେ—"ହେ ପରୀକ୍ଷିତ, ଶୁକ୍ରାଚାର୍ଯ୍ୟ ବେଦ, ପୁରାଣ, ଓ ନୀତିଶାସ୍ତ୍ରମାନଙ୍କରୁ ବହୁ ଉଦାହରଣ ଦେଇ; ଉଦାରମନା ଧର୍ମାତ୍ମା ବଳିରାଜାଙ୍କୁ ବୁଝାଇଥିଲେ । ମହାରାଜ ବଳି ଶୁକ୍ରାଚାର୍ଯ୍ୟଙ୍କ ନୀତିର ଉତ୍ତର ଦେବାକୁ ପ୍ରସ୍ତୁତ ହୋଇଥିଲେ ।"

## ଛପ୍‌ପୟ

"ହୋହି ସ୍ୱାର୍ଥ ନହିଁ ନାଶ କାମ ସୁଖ ହୂ ବଢ଼ ଜାଓଇଁ ।
ବାଧା କାହୁ ଭାଁତ ଜୀବିକା ମହଁ ନହଁ ଆଓଇ ।।
ହୋହି ନ ଅପଯଶ ଜଗତମାଁହି କୁତ୍ସିତ କାମନୀ ତୈଂ ।
ଗୃହୀ ଧର୍ମ ହୈ ଜିହୀ ଶାସ୍ତ୍ର ସମ୍ମତ ବଚନ ନତୈ ।।
ହାଥ ପାଓଁ କୁଁ ବଚ୍ଚନୈ, ମୃଜୀ କୂ ଟରକାବନୋ ।
କଛୁ ଅସତ୍ୟ କଛୁ ସତ୍ୟତୈଂ, ଅପନୋ କାମ ଚଲାବନୋ ।।"

# ସତ୍ୟପଥରେ ଦୃଢ଼ତା

"ସତ୍ୟଂ ଭଗବତା ପ୍ରୋକ୍ତଂ ଧର୍ମୋଽୟଂ ଗୃହମେଧିନାମ୍ ।
ଅର୍ଥଂ କାମଂ ଯଶୋ ବୃତ୍ତିଂ ଯୋ ନ ବାଧେତ କର୍ହିଚିତ୍ ।।
ସ ଗୃହଂ ବତ୍ତ ଲୋଭେନ ପ୍ରତ୍ୟବେକ୍ଷେ କଥଂ ଦ୍ୱିଜମ୍ ।
ପ୍ରତିଶ୍ରୁତ୍ୟ ଦଦାମୀତି ପ୍ରାହ୍ଲାଦିଃ କିତବୋ ଯଥା ।"

( ଭା· ୮ । ୨୦ । ୨,୩ )

**ଛପ୍ପୟ**

ସୁନ ବଲି ବୋଲେ ବୀର ବଚନ ଗୁରୁ ତେଂ ସକୁଚାଇ ।
ଭଗବନ୍ ! ସୁନ୍ଦର ସ୍ୱାର୍ଥ ସିଦ୍ଧ ହିତ ନୀତି ବତାଇ ।।
କିନ୍ତୁ ଲୋଭ ବଶ ଦେଵ ସତ୍ୟ କୂଁ କୈସେ ତ୍ୟଗୂଁ ।
କୈସେ ରହୁ ଲଲକାର ଯୁଦ୍ଧ ତେଂ ଡରକେଂ ଭାଗୂଁ ।।
ହାଁ କହି "ନ" କରବୋ ନହୀ, ଦୈତ୍ୟକୁଲ କେ ଅନୁରୂପ ଜିହ୍ୱ ।
ପିତା ପ୍ରାନ ଦ୍ୱିଜ ହିତ ଦୟେ, ପ୍ରନ ନହିଁ ଛାଁଡେଁ ପିତାମହ ।"

ଅର୍ଥାତ୍—ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ଉପଦେଶର ଉତ୍ତର ଦେଇ ମହାରାଜ ବଳି କହିଲେ—"ଭଗବନ୍, ଆପଣ ଯାହା ଯାହା କହିଲେ, ତାହା ଗୃହସ୍ଥମାନଙ୍କ ପକ୍ଷରେ ଗ୍ରହଣୀୟ । ନୋହିଲେ, ସେମାନଙ୍କ ଜୀବିକା ଉପାର୍ଜନରେ ବାଧା ସୃଷ୍ଟି ହେବ । ଏହାକୁ ମୁଁ ସତ୍ୟ ବୋଲି ମାନୁଛି । କିନ୍ତୁ ମୁଁ ମହାମନା ପ୍ରହ୍ଲାଦଙ୍କ ବଂଶଜ ହୋଇ ଧନ ଲୋଭରେ ପ୍ରଥମେ ପ୍ରତିଶ୍ରୁତି ଦେଇ ତା'ପରେ ପୁଣି ନାସ୍ତି କରିପାରିବି ନାହିଁ ।"

ଯେଉଁ ବ୍ୟକ୍ତି ଦୁଃଖ କଷ୍ଟକୁ ଭୟ କରେ, ସେ ଧର୍ମକୁ ସହଜରେ ତ୍ୟାଗ କରିପାରେ । ସତ୍ୟର ବିଜୟ ଧ୍ରୁବ ବୋଲି ଯାହାର ବିଶ୍ୱାସ ନାହିଁ, ସେହି ବ୍ୟକ୍ତି ଅସତ୍ୟକୁ ଆଶ୍ରୟ କରେ । ପ୍ରାଣୀ ପ୍ରାଣର ମୋହ ତ୍ୟାଗ କଲେ ଧର୍ମ ଆଚରଣ

କରିପାରିବ । ସ୍ତ୍ରୀ, ପୁତ୍ର, ଧନ, ଧାନ୍ୟ ସବୁକିଛି ନଶ୍ୱର ଏହା ଦିନେ ନା ଦିନେ ନଷ୍ଟ ହୋଇଯିବ । ଅର୍ଥ କେବେହେଲେ କାହାର ସହିତ ଯାଏ ନାହିଁ । ଯେ ଯେତେ ଧନ ଅର୍ଜନ କରିଥାଉଁ ପଛକେ, ସବୁକିଛି ଏହିଠାରେ ଛାଡ଼ି ତାକୁ ଅମୃତ ପଥରେ ପଥିକ ହେବାକୁ ପଡ଼େ । କୁବେର ମଧ୍ୟ 'କଳ୍ପ' ଶେଷ ହେବାମାତ୍ରେ ପରିବର୍ତ୍ତିତ ହୋଇଯାଆନ୍ତି । ସାଂସାରିକ ଉପଭୋଗ ଦ୍ୱାରା କେହି ପରିତୃପ୍ତ ହୁଏ ନାହିଁ । କାହାର ଯଶ ସ୍ଥାୟୀ ହୋଇ ରହିନାହିଁ କିମ୍ବା ରହିପାରିବ ନାହିଁ । ବ୍ରହ୍ମା, ଇନ୍ଦ୍ର ଆଦି କଳ୍ପାନ୍ତରେ ପରିବର୍ତ୍ତିତ ହୁଅନ୍ତି । ଆଜି ସୁଦ୍ଧା କେତେ ବ୍ରହ୍ମା ଓ କେତେ ଇନ୍ଦ୍ର ଗଲେଣି, ତା'ର ହିସାବ କିଏ ରଖିଛି ? ସମସ୍ତେ ପେଟ ପେଟ ହୋଇ ଧନ୍ଦ ହେଉଛନ୍ତି । ଦୁନିଆରେ କାହାର ପେଟ ପୂରି ନାହିଁ । ଅନ୍ୟାୟ ତଥା ଅଧର୍ମ ମାର୍ଗରେ ଧନ ଅର୍ଜନ କଲେ, ପରିତୃପ୍ତି ଆସେ ନାହିଁ ବରଂ ତୃଷା ବୃଦ୍ଧି ପାଇଥାଏ । ପଥର ଭିତରେ ବେଙ୍ଗଟିଏ ରହି ମଧ୍ୟ ତା'ର ଖାଦ୍ୟ ପରମେଶ୍ୱରଙ୍କ କୃପାରୁ ଅନାୟାସରେ ପାଇପାରେ ।

ଦିନେ ମହାଲକ୍ଷ୍ମୀ ବିଷ୍ଣୁଙ୍କୁ ପଚାରିଲେ—"ଭଗବନ୍, ଆପଣ କ'ଣ ସମସ୍ତ ପ୍ରାଣୀଙ୍କୁ ଭୋଜନ ଯୋଗାଇ ଦେଉଛନ୍ତି ।"

ବିଷ୍ଣୁ ଉତ୍ତର ଦେଇ କହିଲେ—"ଦେବି ! ଏହା ମୋର କାର୍ଯ୍ୟ । ମୃତ୍ୟୁ ମୁଖରେ ପଡ଼ିବା ପର୍ଯ୍ୟନ୍ତ ଯେ ଯେଉଁଠି ଥାଉନା କାହିଁକି, ମୁଁ ତାକୁ ଆହାର ଯୋଗାଇଥାଏ ।"

"ମହାଲକ୍ଷ୍ମୀ ଗୋଟିଏ ପିମ୍ପୁଡ଼ି ଆଡ଼କୁ ହାତ ଦେଖାଇ କହିଲେ—"ଏଁତ ବସିଛି, ଆପଣ କ'ଣ ସ୍ୱା' ପାଇଁ ଖାଦ୍ୟ ବ୍ୟବସ୍ଥା କରିଛନ୍ତି ?"

ବିଷ୍ଣୁ ଭଗବାନ୍ କହିଲେ "ହଁ ଦେବି ! ମୁଁ ତା'ପାଇଁ ମଧ୍ୟ ଖାଦ୍ୟ ବ୍ୟବସ୍ଥା କରିଛି ।"

ମହାଲକ୍ଷ୍ମୀ ସଙ୍ଗେ ସଙ୍ଗେ ପିମ୍ପୁଡ଼ିଟିକୁ ଆଣି ଗୋଟିଏ ଡବାରେ ରଖି ତାକୁ ବନ୍ଦ କରିଦେଲେ । ଦୁଇଦିନ ପରେ ସେ ଡବାଟି ଖୋଲିବା ପୂର୍ବରୁ ଭାବିଲେ—'ପିମ୍ପୁଡ଼ିଟି ନିଶ୍ଚୟ ମରିଯାଇଥିବ !' ସେ ଡବାଟିକୁ ଖୋଲିବା ଆଗରୁ ପଚାରିଲେ—"ପ୍ରଭୋ, ଆପଣ କ'ଣ ଏହି ଡବାରେ ଥିବା ପିମ୍ପୁଡ଼ିଟିକୁ ଖାଦ୍ୟ ଯୋଗାଇଛନ୍ତି ?"

ବିଷ୍ଣୁ ହସି ହସି ଉତ୍ତର ଦେଲେ—"ହଁ ଦେବି ! ପିମ୍ପୁଡ଼ିଟି ତା'ର ଖାଦ୍ୟ ପାଇ ସୁଖରେ ଅଛି ।"

ମହାଲକ୍ଷ୍ମୀ ପଚାରିଲେ—"ଆପଣ କିପରି ବନ୍ଦଥିବା ଡବା ଭିତରକୁ ଖାଦ୍ୟ ପଠାଇପାରିଲେ ?"

ବିଷ୍ଣୁ ଉତ୍ତର ଦେଲେ—"ମାତୃଗର୍ଭରେ ଥିବା ଶିଶୁଟିକୁ ମୁଁ ଯେଉଁ ରୀତିରେ ଖାଦ୍ୟ ଯୋଗାଏଁ, ଠିକ୍ ସେହି ରୀତିରେ ଡବା ଭିତରେ ଥିବା ପିମ୍ପୁଡ଼ିଟି ତା'ର ଖାଦ୍ୟ ପାଇଛି।"

ମହାଲକ୍ଷ୍ମୀ କହିଲେ—"କିନ୍ତୁ ପ୍ରଭୋ", "ମାଆର ଖାଦ୍ୟରୁ ରସ ସଂଗ୍ରହ କରି ଗର୍ଭସ୍ଥ ପିଲାଟି ଖାଦ୍ୟ ପାଇଥାଏ। ତାହା ଏକ ସ୍ଥାୟୀ ବ୍ୟବସ୍ଥା। ତା' ସହିତ ପିମ୍ପୁଡ଼ିର ଖାଦ୍ୟ ଯୋଗାଣକୁ ଆପଣ ତୁଳନା କରୁଛନ୍ତି କାହିଁକି ?"

ଭଗବାନ୍ ବିଷ୍ଣୁ କହିଲେ—"ଗର୍ଭସ୍ଥ ଶିଶୁକୁ ଯେପରି ତା' ମାତା ନିଶ୍ଚିନ୍ତ ଖାଦ୍ୟ ଯୋଗାଏ, ଠିକ୍ ସେହିପରି ପିମ୍ପୁଡ଼ିଟିକୁ ତା' ମାତା ନିଶ୍ଚିନ୍ତ ଖାଦ୍ୟ ଯୋଗାଇଛି।"

ମହାଲକ୍ଷ୍ମୀ ଡବାଟିକୁ ଖୋଲି ଦେଖିଲେ ଯେ, ପିମ୍ପୁଡ଼ିଟି ପାଖରେ ଦୁଇଟି ଚାଉଳ ଥୁଆଯାଇଛି। ପିମ୍ପୁଡ଼ିଟି ତାକୁ ଖାଇ ବେଶ୍ ଆରାମରେ ଡବା ମଧ୍ୟରେ ରହିଛି। ମହାଲକ୍ଷ୍ମୀ ଖୁବ୍ ନିରୀକ୍ଷଣ ଦେଖିବା ପରେ ଜାଣିପାରିଲେ ଯେ, ପିମ୍ପୁଡ଼ିଟିକୁ ରଖି ଡବାଟିକୁ ବନ୍ଦ କରିବା ସମୟରେ ତାଙ୍କ ମୁଣ୍ଡରେ ଲାଗିଥିବା ଅକ୍ଷତରୁ ଦୁଇଟି ଦାନା ଡବା ଭିତରେ ପଡ଼ିଯାଇଥିଲା।

ଏହି ପ୍ରକ୍ରିୟାକୁ ଅବଶ୍ୟ ନାସ୍ତିକମାନେ ଆକସ୍ମିକ ଘଟଣା ବୋଲି କହିଥାଆନ୍ତି। କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ, ପ୍ରତ୍ୟେକ ପ୍ରାଣୀ ତା'ର ପ୍ରାପ୍ୟ ଅନୁସାରେ ଈଶ୍ୱରଙ୍କ ଦ୍ୱାରା ଖାଦ୍ୟ ପାଇଥାଏ। ଏଥିରେ କୌଣସି ବ୍ୟତିକ୍ରମ ହୁଏ ନାହିଁ। ଈଶ୍ୱର ଯାହାପାଇଁ ଯେଉଁଦିନ ଖାଦ୍ୟ ବ୍ୟବସ୍ଥା କରି ନଥା'ନ୍ତି, ତା'ର ଅଟଳା ଲକ୍ଷ୍ମୀ ଭରପୂର ହୋଇଥିଲେ ମଧ୍ୟ ସେ ସେଦିନ କୌଣସି ନା କୌଣସି କାରଣରୁ ଖାଦ୍ୟ ପାଇପାରେ ନାହିଁ। ଭଗବାନ ସମସ୍ତଙ୍କ ପାଇଁ ଆବଶ୍ୟକତା ଅନୁସାରେ ଖାଦ୍ୟ ଯୋଗାଇଥିବାବେଳେ ମନୁଷ୍ୟମାନେ କାହିଁକି ଯେ, ପେଟ ପୂରଣର ପାଇଁ ଏତେ ଅନ୍ୟାୟ, ଅଧର୍ମ, ହିଂସା, ଦ୍ୱେଷ, କୂଟ ଓ କପଟ ଆଚରଣ କରନ୍ତି ତାହା ବୁଝି ହୁଏ ନାହିଁ।

ଶ୍ରୀ ଶୁକଦେବ କହିଲେ—"ହେ ପରୀକ୍ଷିତ, ଶୁକ୍ରାଚାର୍ଯ୍ୟଙ୍କ ଲୋକଧର୍ମ ସମ୍ବନ୍ଧୀୟ ଉପଦେଶ ଶୁଣିବା ପରେ, ବଳିରାଜା ଅତି ନମ୍ର ଭାବ ସହିତ ବିରୋଧ କରି କହିଲେ--"ଗୁରୁଦେବ, ଆପଣଙ୍କପରି ନୀତି ବିଶାରଦ ବ୍ୟକ୍ତି ଏ' ସଂସାରରେ ଆଉ ଜଣେ ହେଲେ କେହି ନାହାନ୍ତି। ଆପଣଙ୍କ କଥନ ଅନୁସାରେ ସାଧାରଣ ଗୃହସ୍ଥମାନେ ନିଜ ନିଜର ଜୀବିକା ରକ୍ଷା କରିବାଲାଗି, ସେ ପ୍ରକାର ଆଚରଣ ଅଭ୍ୟାସ କରିବା

ଅତ୍ୟନ୍ତ ସ୍ୱାଭାବିକ । କିନ୍ତୁ ମୁଁ ହେଉଛି—ଅସାଧାରଣ ବ୍ୟକ୍ତିତ୍ୱ ସମ୍ପନ୍ନ ପ୍ରହ୍ଲାଦଙ୍କ ବଂଶଧର । ତେଣୁ ମୁଁ ବଟୁବାମନଙ୍କ ଇଚ୍ଛାନୁସାରେ ତାଙ୍କୁ ଭୂମି ଦାନ ଦେବ !"

"କାହିଁକି ଦେବେ ମହାରାଜ !" ଗୁରୁ ଶୁକ୍ରାଚାର୍ଯ୍ୟ ଉତ୍ତେଜିତ ହୋଇ କହିଲେ —"ତା' ହେଲେ କ'ଣ ମୋ କଥାର କିଛି ମହତ୍ତ୍ୱ ନାହିଁ ?"

ନମ୍ର ଅଥଚ ଦୃଢ଼ସ୍ୱରରେ ବଳିରାଜା କହିଲେ—"ଆପଣଙ୍କ କଥାରେ ମହତ୍ତ୍ୱ ନାହିଁ କାହିଁକି ଗୁରୁଦେବ ? ମୋର ସର୍ବସ୍ୱ ଆପଣଙ୍କ ଶ୍ରୀଚରଣ ତଳେ ମୁଁ ଲୋଟାଇ ଦେଇଛି । କିନ୍ତୁ ମୁଁ ଏହା କରିପାରିବି ନାହିଁ ! ଆପଣଙ୍କ ଆଜ୍ଞା ପାଳନ କରିବାରେ ମୁଁ ସମ୍ପୂର୍ଣ୍ଣ ଅସମର୍ଥ !"

"ମୋ କଥା ମାନିବା ପାଇଁ ଅସମର୍ଥତାର କାରଣ କ'ଣ ?" ଶୁକ୍ରାଚାର୍ଯ୍ୟ କହିଲେ—"ମୁଁ ମହାରାଜଙ୍କୁ ପୃଥ୍ୱୀ ଦାନ ଦେବାକୁ ଆଦୌ ବାରଣ କରୁନାହିଁ । କେବଳ ତହିଁରେ ଗୋଟିଏ ସଂଶୋଧନ କରିଦେବା ମୋର ଇଚ୍ଛା । ବଟୁବାମନ ନିଜ ପାଦରେ ଭୂମି ନ ମାପି ଅନ୍ୟ କାହାର ପାଦରେ ମାପି ଯେତେ ଇଚ୍ଛା ସେତେ ଭୂମି ନେଇପାରନ୍ତି ।"

ଶୁକ୍ରାଚାର୍ଯ୍ୟଙ୍କୁ ଉତ୍ତର ଦେଇ ବଳିରାଜା କହିଲେ—"ଗୁରୁଦେବ ବଟୁବାମନ ନିଜ ପାଦରେ ଭୂମି ମାପି କରି ନେବାଲାଗି ପ୍ରଥମରୁ କହିଛନ୍ତି ଏବଂ ମୁଁ ମଧ୍ୟ ତାହାହିଁ ପ୍ରତିଜ୍ଞା କରିଛି । ତାଙ୍କର ଇଚ୍ଛାନୁସାରେ ଭୂମି ଦାନ ଦେବାକୁ କହି, ବଟୁବାମନଙ୍କ ମନରେ ଆଶାର ସଞ୍ଚାର କରାଇ ଏବେ ଆଉ ତାଙ୍କ ଆଶା ଭାଙ୍ଗି ପାରିବି ନାହିଁ । ଗୁରୁଦେବ, ମୁଁ ମହାମନା ପ୍ରହ୍ଲାଦଙ୍କ ବଂଶଧର ; ବିଶ୍ୱବିଜୟୀ ତଥା ବ୍ରାହ୍ମଣପ୍ରିୟ ବିରୋଚନଙ୍କ ପୁତ୍ର । ମୋ ପିତା ଛଦ୍ମବେଶୀ ଇନ୍ଦ୍ରଙ୍କୁ ଜାଣି ମଧ୍ୟ ତାଙ୍କ ମାଗୁଣି ଅନୁସାରେ ସେ ଜୀବନ ଉତ୍ସର୍ଗ କରିଦେଇଥିଲେ । ମୁଁ ଆପଣଙ୍କ କହିବା ଅନୁସାରେ, ଅଜ୍ଞାନତାବଶତଃ ବଟୁବାମନଙ୍କୁ ତାଙ୍କର ଇଚ୍ଛାନୁସାରେ ଭୂମି ଦାନ ଦେବାଲାଗି ବଚନବଦ୍ଧ ହୋଇଛି । ଏଥିରେ ମୋର ମହାନ୍ ଅନିଷ୍ଟ ଘଟିପାରେ କିମ୍ବା ବଟୁବାମନ ସ୍ୱୟଂ ବିଷ୍ଣୁ ହୋଇପାରନ୍ତି, କିନ୍ତୁ ମୁଁ ମୋ ପ୍ରତିଶ୍ରୁତିରୁ କେବେହେଲେ ଓହରି ଯିବିନାହିଁ । ମୁଁ ବଟୁବାମନଙ୍କ ଇଚ୍ଛା ପୂର୍ଣ୍ଣ କରିବି । ଅସତ୍ୟରୁ ବଳି ଆଉ କିଛି ବଡ଼ ପାପ ନାହିଁ । ପୃଥ୍ୱୀ, ଦେବୀ, ନଦ, ନଦୀ, ଗିରି, ବନ, ପର୍ବତ ସବୁ କିଛି ଧାରଣ କରିଛନ୍ତି ଏବଂ କାଳକାଳକୁ ଧାରଣ କରି ରହିବେ । କିନ୍ତୁ ସେ ମିଥ୍ୟାବାଦୀଙ୍କୁ କେବେହେଲେ ତାଙ୍କ ବକ୍ଷରେ ଧାରଣ କରିପାରିବେ ନାହିଁ ।"

ଶୁକ୍ରାଚାର୍ଯ୍ୟ କ୍ରୋଧରେ ରକ୍ତବର୍ଣ୍ଣ ହୋଇଯାଇ କହିଲେ—"ରେ ମୂର୍ଖ ଏବଂ ପାଷାଣ୍ଡ । ବୁଦ୍ଧି ବୃତ୍ତି ସବୁ ହରାଇ ବସିଲୁଣି । ପୁଣି ଥରେ ମୁଁ ତୋତେ ଚେତାଇ

ଦେଇ କହୁଛୁ—ତୁ ବ୍ରାହ୍ମଣଙ୍କୁ ଦାନ ଦେବାଲାଗି ପ୍ରତିଜ୍ଞା କରିଛୁ । ଏ ବଟୁବାମନ ଆଦୌ ବ୍ରାହ୍ମଣ ନୁହନ୍ତି । ତାଙ୍କର କୌଣସି ନିର୍ଦ୍ଦିଷ୍ଟ ଜାତି ନାହିଁ । ବର୍ତ୍ତମାନ ତୁ ଯାହାକୁ ଗ୍ରେଟ ପିଲଟିଏ ବୋଲି ଦେଖୁଛୁ, କିମିଷକ ମଧ୍ୟରେ ସେ ବିଶ୍ୱବ୍ରହ୍ମାଣ୍ଡକୁ ଗ୍ରାସି ଯିବେ । ସେ ଗୋଟିଏ ପାଦରେ ସମସ୍ତ ସଂସାରକୁ ମାପିନେବେ ଏବଂ ଅନ୍ୟ ପାଦଟିରେ ସମଗ୍ର ଗଗନମଣ୍ଡଳକୁ ଗ୍ରାସ କରିନେବେ । ତା'ପରେ ତୋ ମୁଣ୍ଡ ଉପରେ ସବାର୍ ହୋଇଯାଇ ତୋତେ ବାନ୍ଧି ପକାଇ କହିବେ—"କାହିଁ ତୃତୀୟ ପାଦ ପାଇଁ ସ୍ଥାନ କେଉଁଠି ଅଛି ଦେଖା ।" ସେତେବେଳେ ତୁ କେଉଁଠୁ ସ୍ଥାନ ଆଣି ତାଙ୍କର ତୃତୀୟ ପାଦ ପାଇଁ ଯୋଗାଇବୁ ? ସେତେବେଳେ ତୋ'ର ବୁଦ୍ଧି ହଜିଯିବ । ତାଙ୍କର ତୃତୀୟ ପାଦ ପାଇଁ ତୁ ସ୍ଥାନ କେଉଁଠୁ ପାଇବୁ ? ସେ ତୋର ସବୁ କିଛି ଅପହରଣ କରି, ତୋତେ ନିଃସ୍ୱ କରିଦେବେ । ଆଜି ତୁ ତ୍ରିଲୋକାଧୀଶ ପଦରେ ଅଧିଷ୍ଠିତ ହୋଇଛୁ, ସମସ୍ତେ ତୋତେ ଆଦର ଓ ସମ୍ମାନ କରୁଛନ୍ତି । ତୁ ପଦଚ୍ୟୁତ ହୋଇଗଲେ, ତୋତେ ଆଉ ପଚାରିବ କିଏ ସେ ? ହୁଏତ ତୋତେ ସେ ଦେବଶତ୍ରୁ ବୋଲି ମନେକରି ମାରି ଦେଇପାରେ !"

ଏହା ଶୁଣି ବଳିରାଜା କହିଲେ—"ଗୁରୁଦେବ, ଆପଣ କ୍ରୋଧ ଶାନ୍ତ କରନ୍ତୁ । ମୁଁ ସତ୍ୟରେ ଅଟଳ ଭକ୍ତି ରଖି ଯଦି ନରକଗାମୀ ହୁଏ, ତେବେ ସୁଦ୍ଧା ମୋ ମନରେ ଦୁଃଖ ରହିବ ନାହିଁ । ଗୁରୁଦେବ, ଆଜିର ଏ ସ୍ୱର୍ଗସୁଖ ଏକପ୍ରକାର ନରକ ଭୋଗ ନୁହେଁ କି ? ବ୍ରାହ୍ମଣଙ୍କର ବଞ୍ଚନା ଫଳରେ ମୋତେ ଯଦି ପଦଚ୍ୟୁତ ହେବାକୁ ପଡ଼େ, ସେଥିଲାଗି ମୋର ଦୁଃଖ ରହିବ ନାହିଁ । ବ୍ରାହ୍ମଣଙ୍କୁ ଖୁସି କରାଇ ଯଦି ମୋତେ ଦରିଦ୍ର ହେବାକୁ ପଡ଼େ, ତାହା ମୁଁ ଆନନ୍ଦରେ ଆଦରି ନେବି । ନିଜ ଧର୍ମ ରକ୍ଷା କରିବାକୁ ଯାଇ, ମୁଁ ଯଦି ମୃତ୍ୟୁ ବରଣ କରେ, ତା' ହେବ ମୋ ପକ୍ଷରେ ଅତ୍ୟନ୍ତ ସୁଖକର ! ଜୀବର ମୁଖ୍ୟ କର୍ମ ହେଉଛି—ଦାନକରି ପରଲୋକକୁ ଉନ୍ନତ କରିବା । ବର୍ତ୍ତମାନର ରାଜ୍ୟ, ସୁଖ, ଧନ, ଦାରା, ପୁତ୍ରାଦିଙ୍କୁ ଦିନେ ହେଲେ ମୋତେ ଛାଡ଼ିବାକୁ ପଡ଼ିଥାନ୍ତା । ଯାହା ଅବଶ୍ୟମ୍ଭାବୀ, ସେ ବିଷୟରେ ଦୁଃଖ କରି ଲାଭ କ'ଣ ? ମୃତ୍ୟୁ ପରେ ଯଦି ଏ ସମସ୍ତ ନଶ୍ୱର ବସ୍ତୁକୁ ଛାଡ଼ିବାକୁ ପଡ଼ିବ, ତେବେ ତାହା ଏବେଠାରୁ ନ ଛାଡ଼ିବି କାହିଁକି ? ଯଦି ମୋର ନଶ୍ୱର ରାଜସମ୍ପତ୍ତିରେ ଜଣେ ବ୍ରାହ୍ମଣ ସୁଖୀ ହୋଇପାରେ, ଏହାଠାରୁ ବଳି ମୋ ଧନର ଆଉ ଅଧିକ ସଦୁପଯୋଗ କ'ଣ ହୋଇପାରେ ?"

ଶୁକ୍ରାଚାର୍ଯ୍ୟ ପୂର୍ବପରି ବିରକ୍ତି ପ୍ରକାଶ କରି କହିଲେ—"ମୁଁ ତାହା ଆଦୌ ମନା କରୁନାହିଁ । ମୋର କେବଳ ଏତିକି କହିବାର କଥା—ବଟୁବାମନ ନିଜ

ପାଦରେ ଭୂମି ମପାମପି କରି ନ ନିଅନ୍ତୁ । ତୁ ତାଙ୍କୁ ସପ୍ତଦ୍ୱୀପଯୁକ୍ତ ମେଦିନୀ ଦାନ-ଦେବାପାଇଁ ସଙ୍କଳ୍ପ କରି ଦେଇପାରୁ !"

"ଗୁରୁଦେବ, ଦେବାର ଅର୍ଥ ଗ୍ରହିତାର ସନ୍ତୁଷ୍ଟି ନୁହେଁ କି ? ଜଣେ ତୃଷାରେ ଆକୁଳ ହୋଇ ଆପଣଙ୍କୁ ଜଳ ଲାଗି ପ୍ରାର୍ଥନା କରୁଛି; ସେତେବେଳେ ଆପଣ ତାକୁ ଜଳ ପିଇବାକୁ ନଦେଇ, ସୁଗନ୍ଧ ତୈଳ ଅର୍ପଣ କରିବେ, ସେଥିରେ କ'ଣ ତା'ର ତୃପ୍ତି ଆସିବ ? ଯେଉଁଥିରେ ଗ୍ରହୀତାର ତୃପ୍ତି ହେବ, ତାହାହିଁ ହେଉଛି—ପ୍ରକୃତ ଦାନ !"

ବଳିରାଜାଙ୍କ ଅକାଟ୍ୟ ଯୁକ୍ତିକୁ ଖଣ୍ଡନ କରି ନପାରି, ବିରକ୍ତିର ସହିତ କହିଲେ ଶୁକ୍ରାଚାର୍ଯ୍ୟ "ଦାନଦେବା ପୂର୍ବରୁ ନିଜ ଅବସ୍ଥା ଓ ଜୀବିକା ସମ୍ପର୍କରେ ଚିନ୍ତା କରିବା ମତିମାନ୍ ବ୍ୟକ୍ତିର ପରମ କର୍ତ୍ତବ୍ୟ !"

ବଳିରାଜାଙ୍କ ମୁଖମଣ୍ଡଳରେ ବିରକ୍ତିର ଭାବନା ସ୍ପଷ୍ଟ ଝଲସି ଉଠିଲା । ସେ ତଥାପି ବିନମ୍ର ଅଥଚ ଦୃଢ଼ତାର ସହିତ କହିଲେ—"ଗୁରୁଦେବ, ଆପଣ ବାରମ୍ବାର ସେହି ଦୁଇଟି ଅକ୍ଷର—'ବୃତ୍ତି' 'ବୃତ୍ତି' କହି ହେଉଛନ୍ତି । କିନ୍ତୁ ଜୀବିକା ବା ବୃତ୍ତିଦାତା ଶ୍ରୀହରି ନୁହନ୍ତି କି ? ସତ୍ୟର ପ୍ରତିଷ୍ଠା ଆଗରେ ବୃତ୍ତିର କେଉଁ ମହତ୍ତ୍ୱ ରହିଛି ? ମହର୍ଷି ଦଧିଚି ଦେବତାଙ୍କ ଆଗରେ ସତ୍ୟକରି, ସ୍ୱଦେହ ଅର୍ପଣ କରିଥିଲେ । ରାଜା ଶିବି ପ୍ରତିଜ୍ଞା ଅନୁସାରେ ଶରୀରରୁ ନିଜ ହାତରେ ମାଂସ କାଟି ଶ୍ୟେନପକ୍ଷୀକୁ ତୃପ୍ତ କରିଥିଲେ । ଉଭୟ ମହାପୁରୁଷ ସତ୍ୟପାଇଁ ଆତ୍ମସମର୍ପଣ କରି ଯେଉଁ ଅକ୍ଷୟ କୀର୍ତ୍ତି ଅର୍ଜନ କରିଯାଇଛନ୍ତି, ତା'ର ପଟାନ୍ତର ନାହିଁ । ଯଦି ପରୋପକାର ପାଇଁ ମୋତେ ନଶ୍ୱର ସମ୍ପତ୍ତିକୁ ବିଚ୍ୟୁତ ହେବାକୁ ପଡ଼େ, ମୁଁ ଦୁଃଖିତ ହେବି କାହିଁକି ?"

ଶୁକ୍ର ଋଷି କହିଲେ "ତୁ ଯଦି ସେହାଙ୍କୁ ସର୍ବସ୍ୱ ଦେଇଦେବୁ, ଆଉ ତୋ' ପାଖରେ ରହିବ କ'ଣ ?"

ବଳିରାଜା ସଙ୍ଗେ ସଙ୍ଗେ ଉତ୍ତର ଦେଇ କହିଲେ—"ମୋ ନିକଟରେ ଅକ୍ଷୟ ଯଶ ରହିଯିବ । ସେହି ଯଶ ମହାପ୍ରଳୟ ପର୍ଯ୍ୟନ୍ତ ବିନଷ୍ଟ ହେବନାହିଁ ! ମୋର ପିତା ଓ ପିତାମହମାନେ ନିଜ ନିଜର ବାହୁବଳରେ ଅତୁଳ ସମ୍ପତ୍ତିର ଅଧିକାରୀ ହୋଇଥିଲେ, ତାହା ସବୁକିଛି କାଳର କରାଳ କବଳରେ କ୍ଷୟପ୍ରାପ୍ତ ହୋଇଛି । ଅଛି କେବଳ ସେମାନଙ୍କର ଅକ୍ଷୟ କୀର୍ତ୍ତି, ଅତୁଳନୀୟ ଯଶ । ଗୁରୁଦେବ, ଏହି ତୁଚ୍ଛ ପୃଥିବୀ ପାଇଁ ମୁଁ ଦିଗନ୍ତବିସ୍ତାରି ଯଶ-ସମ୍ପତ୍ତିକୁ ଗୋଡ଼ରେ ଆଡ଼େଇ ଦେଇପାରିବି ନାହିଁ ।"

ତଥାପି ଶୁକ୍ରାଚାର୍ଯ୍ୟ ନିରସ୍ତ ହେଲେ ନାହିଁ । ସେ କହିଲେ —"ଯଶ ଅର୍ଜନ କରିବାର ଅନେକ ଉପାୟ ରହିଛି । ସେଥିପାଇଁ ବହୁ କଷ୍ଟରେ ଅର୍ଜିତ ବୈଭବକୁ କୂଟ କପଟରେ ଉଡ଼ାଇଦେବା ଠିକ୍ ହେବନାହିଁ !"

"ମୁଁ ସ୍ୱୀକାର କରୁଛି ଗୁରୁଦେବ !" ବଳିରାଜା କହିଲେ—"ଯଶ ଅର୍ଜନର ଅନେକ ମାର୍ଗ ରହିଛି । ଯୁଦ୍ଧରେ ଛକଭଙ୍ଗ ନ ଦେବା, ସଦ୍‌ଗ୍ରନ୍ଥ ପାଠ କରିବା, କଳା-ପ୍ରଦର୍ଶନ କରିବା, ସଦୁପଦେଶ ଦେବା ଆଦି ମହନୀୟ କାର୍ଯ୍ୟରେ ଯଶ ମିଳିପାରେ, କିନ୍ତୁ ଜଣେ ସତ୍ପାତ୍ର ହସ୍ତରେ, ତାଙ୍କର ସନ୍ତୋଷ ନିମିତ୍ତ ନିଜର ସମସ୍ତ ବୈଭବ ଅର୍ପଣ କରିବାଠାରୁ ଆଉ ଅଧିକ ପୁଣ୍ୟ କାର୍ଯ୍ୟ କିଛି ନାହିଁ । ତେଣୁ ମୁଁ ବଟୁବାମନ ଇଚ୍ଛାନୁସାରେ ତାଙ୍କୁ ଭୂମିଦେଇ ପରିତୃପ୍ତ କରିବି !"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ପରୀକ୍ଷିତ—ବଳିରାଜା କୌଣସିମତେ ସତ୍ୟମାର୍ଗରୁ ବିଚ୍ୟୁତ ନ ହେବାରୁ, ଶୁକ୍ରାଚାର୍ଯ୍ୟ ତାଙ୍କର ଶେଷ ଅସ୍ତ୍ର ପ୍ରୟୋଗ କରିବାକୁ ବସିଲେ ।"

## ଛପ୍‌ପୟ

"ଶିବି ଦଧୀଚି ନେ ତଜେ ପ୍ରାଣ ତୁଚ୍ଛ୍ୟକ ହ୍ୟ ପରହିତ ।
ଭୂମି ଆଦି ଅତି ତୁଚ୍ଛ ଲୋଗ ଜଗକେ କେ ପରମିତ ।।
ନାଶବାନ୍ ଧନ, ଧରା, ବଶ୍ୟ କେ ସବହିଁ ପଦାରଥ ।
ଅବିନାଶୀ ଯଶ ଏକ ଯୁହୀ ଜଗଜୀବନ ସ୍ୱାରଥ ।।
ସଫଳ ଶତ୍ରୁ ସଂଖ ଶୂରତା, ସହିତ ସମର ମଁହ ମରନ ହୈ ।
କିନ୍ତୁ ପାତ୍ର କୁଁ ପ୍ରେମଯୁତ, ଦ୍ରବ୍ୟ ଦୈନ ଅତି କଠିନ ହୈ ।"



## ମହାମନାବଳିଙ୍କ ଉଦାରତା

"ଯଜନ୍ତି ଯଜ୍ଞକ୍ରତୁଭିର୍ଯମାଦୃତା ।
ଭବନ୍ତ ଆମ୍ନାୟବିଧାନକୋବିଦାଃ ।
ସ ଏବ ବିଷ୍ଣୁର୍ବରଦୋଽସ୍ତୁ ବା ପରେ ।
ଦାସ୍ୟାମ୍ୟମୁଷ୍ମୈ କ୍ଷିତମୀପସିତାଂ ମୁନେ ।'

ଶ୍ରୀ. ଭା. ୮ମ ସ୍କ ୨୦ଅ/୧୧ ଶ୍ଳୋ.

### ଛପ୍ପୟ

"ଯଦି ଯେ ହୈଁ ଭଗବାନ୍ ବିଷ୍ଣୁ ସବ ଜଗକେ ପାଲକ ।
ବେଶ ବଦଲ କିଶେଷ ବନେ ବଟୁ କୌନେ ବାଲକ ॥
ତୋ ଚିନ୍ତା କୀ କୌନ ବାତ ଯେ ମଖ କେ ସ୍ୱାମୀ ।
ଯେ ଯୋ ଗୃହେଁ କରୈଂ ଅଖିଲପତି ଅନ୍ତର୍ଯାମୀ ॥
ସବ ସାଧନ କୋ ୟହୀ ଫଲ, ହୋହି କୃଷ୍ଣ ପଦ ସଦୃଢ଼ମତି ॥
ୟହ ମେରୋ ସୌଭାଗ୍ୟ ଅତି, ଯାଚକ ଆୟେ ବିଶ୍ୱପତି ॥"

ଅର୍ଥାତ୍ – ମହାରାଜ ବଳି ଶୁକ୍ରାଚାର୍ଯ୍ୟଙ୍କୁ କହୁଛନ୍ତି —"ଗୁରୁଦେବ, ବଟୁବାମନ ଯଦି ସ୍ୱୟଂ ବିଷ୍ଣୁ ହୋଇଥାଆନ୍ତି, ତା'ହେଲେ ମୋର ଅହୋଭାଗ୍ୟ ବୋଲି ମୁଁ ମନେକରିବି । ବିଷ୍ଣୁଙ୍କ ପରିତୁଷ୍ଟି ପାଇଁ ଆପଣଙ୍କ ପରି ବିଶେଷଜ୍ଞ ବ୍ୟକ୍ତିମାନେ ଯଜ୍ଞରେ ଆଦରପୂର୍ବକ ହୋମ କରୁଛନ୍ତି । ଏ ବିଷ୍ଣୁ ନ ହୋଇ ଆଉ କେହି ହୋଇପାରନ୍ତି, କିନ୍ତୁ ତାଙ୍କ ଇଚ୍ଛାନୁସାରେ ମୁଁ ତାଙ୍କୁ ପୃଥ୍ୱୀ ଦାନ କରିବି ।

ପରୋପକାର ପାଇଁ ଭୋଗ କରିଥିବା କଷ୍ଟ, ଯୁଦ୍ଧ ସମୟର ଆଘାତ, ସ୍ତ୍ରୀ ସମ୍ଭୋଗଜନିତ ଅଙ୍ଗ ଶିଥିଳତା, ପ୍ରେମ ଓ ହର୍ଷଜନିତ ରୋଦନ, ପୁତ୍ର ପ୍ରସବ ସମୟର ପୀଡ଼ା ଆଦି ଦୁଃଖ ବୋଲି ମନେହେଉଥିଲେ ହେଁ, ପରିଣାମରେ ତାହା ସୁଖକର । କ୍ଲେଶ ଆଦି କଦର୍ଯ୍ୟ କାର୍ଯ୍ୟକର କାରାଦଣ୍ଡ ଭୋଗକଲେ ଆତ୍ମଗ୍ଲାନି

ଜାତ ହୁଏ ଏବଂ ଲୋକମାନେ ମଧ୍ୟ ନିନ୍ଦାକରନ୍ତି; କିନ୍ତୁ ଦେଶସେବା ଏବଂ ପରୋପକାର କରି କାରାଦଣ୍ଡ ମିଳିଲେ, ତାହା ଆତ୍ମସନ୍ତୋଷର କାରଣ ହୋଇଥାଏ ଏବଂ ଜନସାଧାରଣ ମଧ୍ୟ ସେ ପ୍ରକାର କାରାବାସର ପ୍ରଶଂସା କରନ୍ତି । ଗୋଡ଼ରେ କଣ୍ଟା ଟିଏ ପଶିଗଲେ ଅନେକ କଷ୍ଟବୋଧ ହୁଏ, କିନ୍ତୁ ବୀରମାନେ ଯୁଦ୍ଧକ୍ଷେତ୍ରରେ ଅସ୍ତ୍ରାଘାତକୁ ହସି ହସି ସହ୍ୟ କରନ୍ତି । ଜୁଆଖେଳ କିମ୍ବା ବିଳାସବ୍ୟସନରେ ଧନ ହରାଇ ଦରିଦ୍ର ହୋଇଗଲେ, ଲୋକେ ନିନ୍ଦା କରନ୍ତି ଏବଂ ମନରେ ପଶ୍ଚାତାପ ଜାତ ହୋଇଥାଏ, କିନ୍ତୁ ଦାନ ଦେଇ ଦରିଦ୍ର ହୋଇଗଲେ ସଂସାରରେ ଧନ୍ୟ ଧନ୍ୟ ପଦ ଶୁଣିବାକୁ ମିଳେ । ସେ ପ୍ରକାର ଦାରିଦ୍ର୍ୟକୁ ସମସ୍ତେ ସ୍ୱାଗତ ଜଣାନ୍ତି ଏବଂ ବ୍ୟକ୍ତି ତାହା ଫଳରେ ଗୌରବାନ୍ୱିତ ହୋଇଥାଏ ।"

ଶ୍ରୀ ଶୁକଦେବ କହିଲେ—"ହେ ପାଣ୍ଡବ କୁଳତିଳକ, ଶୁକ୍ରାଚାର୍ଯ୍ୟ ତାଙ୍କ ଉପଦେଶରେ ବଟୁବାମନଙ୍କୁ ବିଷ୍ଣୁ ବୋଲି ବାରମ୍ବାର କହୁଥିଲେ । ତାହା ଶୁଣି ମନସ୍ୱୀ ବଳିରାଜା କହିଲେ—"ଗୁରୁଦେବ, ସଂସାରରେ ଏପରି ଅନେକ ଦାତା ଅଛନ୍ତି, ଯେଉଁମାନେ ସ୍ୱେଚ୍ଛାରେ ଦାନ କରନ୍ତି ନାହିଁ । ସେମାନେ ଅନେକ ସମୟରେ ବାଧ୍ୟହୋଇ ଦାନ କରିଥାନ୍ତି । କିନ୍ତୁ ମୁଁ ଦୁଃଖୀ ଦରିଦ୍ରଙ୍କ ଅବସ୍ଥା ଦେଖି ସହ୍ୟ କରିପାରେ ନାହିଁ । ସେଭଳି ଦରିଦ୍ର ବ୍ୟକ୍ତିଙ୍କୁ ଦେଖିଲେ, ମୋ ହୃଦୟରେ କରୁଣା ଜାତ ହୋଇଥାଏ । ମୁଁ ତାଙ୍କୁ କିଛି ଦାନକରି ତାଙ୍କ ଶୁଖିଲା ମୁହଁରେ ହସ ଫୁଟାଇବା ଲାଗି ଚେଷ୍ଟାକରେ । ମୋ ମତରେ, ପ୍ରକୃତ ଦାନୀ ଅନ୍ୟର ଦୁଃଖ ହରଣ ଲାଗି ଦାନ କରେ ନାହିଁ ବରଂ ଆତ୍ମସନ୍ତୋଷ ଲାଗି ସେ ଦାନ କରିଥାଏ । ସେମାନେ ଭାବନ୍ତି, ଦାତା ହେଉଛନ୍ତି—ଏକମାତ୍ର ଭଗବାନ୍ । ଆମେ କେବଳ ନିମିତ୍ତ ମାତ୍ର, ସେହି ଚରାଚର ନାଥଙ୍କ ଆଗରେ ଆମେ ଜଣେ ଜଣେ କ୍ଷୁଦ୍ର ଭିକ୍ଷୁକ ।"

ଏହି ସମୟରେ ସୂତମୁନିଙ୍କୁ ପଚାରିଲେ ବ୍ରହ୍ମର୍ଷି ଶୌନକ—"ଦାନଦେବାରେ ଯଦି ଆନନ୍ଦ ମିଳେ, ତେବେ ଲୋକମାନେ ଭିକ୍ଷୁକ ଉପରେ ବିରକ୍ତ ହେଉଛନ୍ତି କାହିଁକି ?"

ଶୌନକଙ୍କୁ ଉତ୍ତର ଦେଇ କହିଲେ ସୂତମୁନି—"ବ୍ରହ୍ମନ୍, ଯେଉଁମାନେ ଭିକ୍ଷୁକମାନଙ୍କ ଉପରେ ବିରକ୍ତ ହୁଅନ୍ତି, ସେମାନେ ପ୍ରକୃତରେ ଦାତା ନୁହନ୍ତି । ସେମାନେ ଦାମ୍ଭିକ । ନିଜ ଧନର ଗର୍ବ ସେମାନଙ୍କ ମନକୁ ଆବୋରି ରହିଛି । ସେମାନେ କେବଳ ନିଜର ମହତ୍ୱ ବୃଦ୍ଧି କରିବାପାଇଁ ଦାନ ଦିଅନ୍ତି । ନାମକୁ ମାତ୍ର ଦାନଦେଇ ସେମାନେ ଦଶଯାଗାରେ କହି ବୁଲନ୍ତି ଏବଂ ନିଜ ଦାତାପଣର ପ୍ରଚାର କରିଥାନ୍ତି । ଏହା ଆଦୌ ସାତ୍ତ୍ୱିକ ଦାନ ନୁହେଁ । ପରଲୋକରେ ଏଭଳି ଦାନର

କୌଣସି ପ୍ରତିକ୍ରିୟା ହୁଏ ନାହିଁ, ବରଂ ଅଭିମାନ ପ୍ରଦର୍ଶନ ପାଇଁ ସେମାନଙ୍କୁ ଦଣ୍ଡ ଭୋଗିବାକୁ ପଡ଼ିଥାଏ । ଏ ବିଷୟରେ ମୁଁ ଆପଣମାନଙ୍କ ଆଗରେ ଗୋଟିଏ କାହାଣୀ କହୁଛି, ଶୁଣନ୍ତୁ !

"ଗୋଟିଏ ରାଜ୍ୟରେ ଜଣେ ଧନାଢ୍ୟ ଦାତା ଥିଲେ । ତାଙ୍କ ଘରର ଦଶଟି ଦ୍ୱାରଥିଲା । ସବୁ ଦ୍ୱାର ରେ ସେ ଭିକ୍ଷାଦେବାର ବ୍ୟବସ୍ଥା କରିଥିଲେ । ପ୍ରତିଦିନ ବହୁ ଭିକ୍ଷୁକ ଆସି ତାଙ୍କର ଦଶଟି ଦ୍ୱାରରୁ ଭିକ୍ଷା ଗ୍ରହଣ କରୁଥିଲେ । ତାଙ୍କ କୀର୍ତ୍ତି ସ୍ୱର୍ଗରେ ମଧ୍ୟ ଚହଳ ସୃଷ୍ଟି କଲା । ଏକଦା ସ୍ୱୟଂ ଗୋଲକପତି ଭିକ୍ଷୁକ ବେଶରେ ଆସି ଧନାଢ୍ୟ ବ୍ୟକ୍ତିଙ୍କ ଦୁଆରେ ଉପସ୍ଥିତ ହେଲେ । ବିଷ୍ଣୁ ଉଚ୍ଚସ୍ୱରରେ ଦାତାଙ୍କ ଜୟଗାନ କରି ଭିକ୍ଷା ମାଗିଲେ । ଭିକ୍ଷାଧରି ଧନିକ ପ୍ରଥମ ଦ୍ୱାରରେ ଉପସ୍ଥିତ ହେବାମାତ୍ରେ ଭିକ୍ଷୁକ ବେଶଧାରୀ ବିଷ୍ଣୁ ଉଚ୍ଚସ୍ୱରରେ ଦାତାଙ୍କର ପ୍ରଶଂସା କରିବାକୁ ଲାଗିଲେ । ଧନିକ ବ୍ୟକ୍ତି ତଳକୁ ମୁହଁ କରି ପ୍ରତ୍ୟେକ ଭିକ୍ଷୁକଙ୍କୁ ଦାନଦେବାକୁ ଲାଗିଲେ । ଗୋଟିକ ପରେ ଗୋଟିଏ ଦ୍ୱାର ପାର ହୋଇ ଧନିକ ବ୍ୟକ୍ତି ଯାଇ ଦଶମ ଦ୍ୱାରରେ ପହଞ୍ଚିଲେ । ଛଦ୍ମବେଶୀ ବିଷ୍ଣୁ ମଧ୍ୟ ପ୍ରତ୍ୟେକ ଦ୍ୱାରରେ ଉଚ୍ଚସ୍ୱରରେ ଦାତାଙ୍କର ପ୍ରଶଂସା ଗାନକରି ଭିକ୍ଷା ମାଗିଥିଲେ । ଧନିକ ବ୍ୟକ୍ତି ସବୁ ଦ୍ୱାରରେ ତଳକୁ ମୁହଁ ପୋତି ଭିକ୍ଷାଦାନ କରୁଥିଲେ ଏବଂ ଛଦ୍ମବେଶୀ ଭିକ୍ଷୁକଙ୍କ ମୁହଁରୁ ପ୍ରଶଂସାତ୍ମକ ବାଣୀ ଶୁଣିଥିଲେ ମଧ୍ୟ କୌଣସିପ୍ରକାର ଆନନ୍ଦସୂଚକ ବାକ୍ୟ ପ୍ରକାଶ ନ କରି, ନିର୍ବିକାର ଚିତ୍ତରେ ଭିକ୍ଷା ଦାନ କରିଥିଲେ ।

"ଦାତାଙ୍କର ଏପରି ଅବସ୍ଥା ଲକ୍ଷ୍ୟ କରି ଛଦ୍ମବେଶୀ ବିଷ୍ଣୁ କହିଲେ— "ମହାଶୟ, ଆପଣଙ୍କ ପ୍ରଶଂସା ଉଚ୍ଚ ସ୍ୱରରେ ଗାନ କରିଥିଲେ ମଧ୍ୟ ଆପଣ କିଛି ପ୍ରତିକ୍ରିୟା ପ୍ରକାଶ କଲେ ନାହିଁ କାହିଁକି ? ଦ୍ୱିତୀୟରେ ମୁଁ ପ୍ରତ୍ୟେକ ଦ୍ୱାରରେ ଛିଡ଼ାହୋଇ ଭିକ୍ଷା ନେଇଥିଲେ ହେଁ, ଆପଣ ମୋ ଉପରେ ବିରକ୍ତି ପ୍ରକାଶ କଲେ ନାହିଁ କାହିଁକି ?"

"ଏହା ଶୁଣି ବିନୀତ ଭାବରେ ଧନିକ କହିଲେ —"ଦାତା ଗ୍ରହୀତା ଭଗବାନ୍ । ମୁଁ ଅଟେ ଅତି ଅକିଞ୍ଚନ ।" ଭିକ୍ଷୁକ ମହାଶୟ, ମୁଁ ନିତାନ୍ତ ଅକିଞ୍ଚନ ବ୍ୟକ୍ତି । ମୁଁ ମୋର ପ୍ରତ୍ୟେକ କାର୍ଯ୍ୟ ସାଧନ ଲାଗି ପରମେଶ୍ୱରଙ୍କୁ ସର୍ବଦା ପ୍ରାର୍ଥନା କରିଆସିଛି । ମୁଁ ନିଃସ୍ୱ । ଯାହା କିଛି ଆପଣ ମୋ ନିକଟରେ ଦେଖୁଛନ୍ତି, ସବୁକିଛି ତାଙ୍କରି ଦାନ । ମୁଁ ପରମେଶ୍ୱରଙ୍କ ଧନକୁ ଆପଣମାନଙ୍କ ମଧ୍ୟରେ ବଣ୍ଟନ କରିବାର ଗୋଟିଏ ସୁଯୋଗ ପାଇଛି । କିନ୍ତୁ ଭିକ୍ଷୁକମାନେ ପ୍ରକୃତ ମର୍ମ ବୁଝି ନପାରି ମୋ'ରି ପ୍ରଶଂସା ଗାନରେ ଶତମୁଖ ହୋଇ ଉଠୁଥିବାରୁ ମୁଁ ଲଜ୍ଜାରେ ମୁହଁ ତଳକୁ କରି ଈଶ୍ୱରଙ୍କ କାର୍ଯ୍ୟ ସମ୍ପାଦନ କରି ଆସିଛି ।"

ଏହା ଶୁଣି ଭଗବାନ୍ ନିଜ ରୂପରେ ଆତ୍ମପ୍ରକାଶ କରି ଦାତାଙ୍କୁ ଆଶୀର୍ବାଦ ପୂର୍ବକ ସେଠାରୁ ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ ।

ସୂତମୁନି କହିଲେ "ହେ ଶୌନକ"—ଯେଉଁ ବ୍ୟକ୍ତି ନିଜ ଦାନକୁ ଈଶ୍ୱରଙ୍କ ଦେୟ ବୋଲି ମନେକରି ଭିକ୍ଷାପାତ୍ରରେ ଭିକ୍ଷା ଅର୍ପଣ କରନ୍ତି, ସେହି ବ୍ୟକ୍ତି ହେଉଛନ୍ତି—ପ୍ରକୃତ ଦାନୀ ! ନିଜ ଧନର ବଡ଼ିମା ପ୍ରଦର୍ଶନ କରି, ଯେଉଁ ଲୋକ ନିଜ ଦାନର ଢେଙ୍ଗୁରା ପିଟିଥାଏ, ସେ ଆଦୌ ଦାନୀ ନୁହେଁ, ଅହଙ୍କାରୀ । ସେହିଭଳି ମହାମନା ଦାନବୀର ଥିଲେ—ଅସୁରାଧିପତି ବଳି । ତେଣୁ ସେ ଗୁରୁଦେବ ଶୁକ୍ରାଚାର୍ଯ୍ୟଙ୍କ ଚେତାବନୀକୁ ଭ୍ରୂକ୍ଷେପ ନ କରି, ବଟୁବାମନଙ୍କ ଇଚ୍ଛାମତେ ଦାନ ଦେବା ଲାଗି ପ୍ରସ୍ତୁତ ହୋଇଥିଲେ ।

ମହାରାଜ ବଳି ଶୁକ୍ରାଚାର୍ଯ୍ୟଙ୍କୁ ଉତ୍ତର ଦେଇ କହିଲେ—"ଗୁରୁଦେବ, ସାଧାରଣ ଭିକ୍ଷୁକଙ୍କ ଦାନ ଦେଇ ଯଦି କଷ୍ଟ ଭୋଗ କରିବାକୁ ପଡ଼େ, ତା'ହେଲେ ମଧ୍ୟ ମୁଁ ତାହାକୁ କଲ୍ୟାଣକର ବୋଲି ମନେକରିବି । ପୁଣି ଆପଣଙ୍କ ପରି ମହାତ୍ମା ବ୍ୟକ୍ତି ଯଦି ଭିକ୍ଷୁକ ହୋଇ ମୋ' ଦ୍ୱାରକୁ ଆସିବେ, ମୁଁ ମୋର ଅହୋଭାଗ୍ୟ ବୋଲି ମନେକରିବି । କିନ୍ତୁ ସ୍ୱୟଂ ବିଷ୍ଣୁ ଯଦି ଭିକ୍ଷୁକ ହୋଇ ମୋ' ଦ୍ୱାରକୁ ଆସି-ଥାଆନ୍ତି, ତେବେ ମୋ ସୌଭାଗ୍ୟ ଯେ କେତେ ସହସ୍ର ଗୁଣରେ ଅଧିକ, ତାହା ମୁଁ ଭାଷାରେ ବ୍ୟକ୍ତ କରିପାରିବି ନାହିଁ । ଗୁରୁଦେବ, ଆପଣଙ୍କ ଆଜ୍ଞାର ଉଲ୍ଲଙ୍ଘନ ଦୋଷରେ ମୋତେ ଦୋଷୀ ହେବାକୁ ପଡ଼ିପାରେ, କିନ୍ତୁ ଦାନ ଦେବାର ଯେଉଁ ଅପୂର୍ବ ସୁଯୋଗ ମୋ ହାତରେ ଧରାଦେଇଛି, ମୁଁ ତାହା କେବେହେଲେ ଛାଡ଼ିବି ନାହିଁ । ବଟୁବାମନଙ୍କୁ ଦାନ ଦେଇ ମୁଁ ଆଜି ଶାନ୍ତି ପାଇବାକୁ ଚାହେଁ । ତାଙ୍କ ହସ୍ତରେ ଦାନ ଅର୍ପଣକରି, ମୋତେ ଯଦି ନର୍କକୁ ଯିବାକୁ ପଡ଼େ, ତେବେ ସୁଦ୍ଧା ମୁଁ ସେଥିଲାଗି ଭ୍ରୂକ୍ଷେପ ନ କରି ସହର୍ଷରେ ସ୍ୱୀକାର କରିନେବି ।"

ଏତିକି ଶୁଣି ଶୌନକ ପଚାରିଲେ—"ହେ ସୂତମୁନି, ସାତ୍ତ୍ୱିକ ଦାନ ଦେଇ ବ୍ୟକ୍ତି ସ୍ୱର୍ଗ ସୁଖ ଅନୁଭବ କରୁଥିବାବେଳେ, ଦାନବୀର ବଳି ଦାନ ଦେଇ ନର୍କର କଷ୍ଟ ସହିବା ଲାଗି ପ୍ରସ୍ତୁତ ହୋଇଥିଲେ କାହିଁକି ?"

ଶୌନକଙ୍କୁ ଉତ୍ତର ଦେଇ ସୂତମୁନି କହିଲେ—"ହେ ବ୍ରହ୍ମନ୍, ସ୍ୱର୍ଗ କାମନା କରି ଦାନ ପୁଣ୍ୟ କରିବାକୁ ଶାସ୍ତ୍ରକାରମାନେ ସକାମ ଦାନ ବୋଲି କହିଛନ୍ତି । ଏହା ଉତ୍ତମ ଦାନ ନୁହେଁ । ନିଷ୍କାମ ଭାବରେ ଯେ କୌଣସି କାର୍ଯ୍ୟ କରିବା ହେଉଛି ପ୍ରକୃତ ଧର୍ମ । ମଦ୍ୟପ ଯେପରି ମଦ୍ୟପାନ ବିନା ରହିପାରେ

ନାହିଁ, ଠିକ୍ ସେହିପରି ନିଷ୍କାମ ଭାବନା ମନରେ ପୋଷଣ କରିଥିବା ଦାନୀ ଯାଚକ-ମାନଙ୍କୁ ଦାନ ନ ଦେଇ ସ୍ଥିର ହୋଇ ରହିପାରେ ନାହିଁ । ଏ ସମ୍ବନ୍ଧରେ ମୁଁ ଗୋଟିଏ ପୌରାଣିକ ଉପାଖ୍ୟାନ ଆପଣମାନଙ୍କୁ ଶୁଣାଉଛି ।

ପ୍ରାଚୀନକାଳରେ ମହାରାଜା ଉଶୀନରଙ୍କ ପୁତ୍ର ଥିଲେ—ଶିବି । ସେ ଥିଲେ—ଧର୍ମାତ୍ମା, ସତ୍ୟବ୍ରତ ଏବଂ ଅସାଧାରଣ ଦାନୀ । ତାଙ୍କ ଆଚରଣକୁ ଅନୁକରଣ କରିବା ତ ଦୂରର କଥା, ଲୋକମାନେ ତାଙ୍କ କାର୍ଯ୍ୟ ପ୍ରଣାଳୀ ସମ୍ପର୍କରେ ଶୁଣି ବିଶ୍ବାସ ମଧ୍ୟ କରୁ ନଥିଲେ ।

"ମୁନିଗଣ, ଥରେ ମହାରାଜ ଶିବିଙ୍କ ନିକଟକୁ ଜଣେ ବ୍ରାହ୍ମଣ ଆସି ଭୋଜନ କରିବା ଲାଗି ପ୍ରାର୍ଥନା କଲେ । ରାଜା ପରମ ପ୍ରୀତ ହୋଇ କହିଲେ— "ମହାଶୟ, ଆପଣ କ'ଣ ଭୋଜନ କରିବେ ନିଜେ କୁହନ୍ତୁ ।"

ତାହା ଶୁଣି ଋଷି କହିଲେ—"ରାଜନ୍, ମୁଁ ନରମାଂସ ଖାଏ । କିନ୍ତୁ ବଧଶାଳାରେ ବଧ ହୋଇଥିବା ନରମାଂସ ମୁଁ ଖାଏ ନାହିଁ । ଆପଣ ନିଜ ପୁତ୍ର ବୃହଦ୍ ଗର୍ଭର ମାଂସ ରନ୍ଧନ କରାଇ ଯଦି ମୋ ପାଇଁ ଭୋଜନ ପ୍ରସ୍ତୁତ କରିବେ, ତେବେ ମୁଁ ପରମ ତୃପ୍ତିର ସହିତ ଭୋଜନ କରିବି ।

"ରାଜା ଶିବି ଅତ୍ୟନ୍ତ ଉଲ୍ଲାସର ସହିତ କହିଲେ—"ବ୍ରହ୍ମନ୍, ଆଜି ମୋର ସୌଭାଗ୍ୟ ଓ ବୃହଦ୍‌ରଥର ପରମ ସୌଭାଗ୍ୟ ! କାରଣ ତା'ର ଶରୀର ପରୋପକାରରେ ଲାଗିବ ଏବଂ ମୋତେ ଗୋଟିଏ ଧର୍ମକାର୍ଯ୍ୟ କରିବାର ସୁଯୋଗ ମିଳିବ । ଆପଣ ନିଶ୍ଚିନ୍ତ ହୋଇ ବସନ୍ତୁ, ମୁଁ ଆପଣଙ୍କ ଇଚ୍ଛାମତେ ଭୋଜନ କରାଇବି ।"

ରାଜା ଶିବି ରାଜକୁମାରକୁ ସ୍ୱହସ୍ତରେ ବଧକରି ପୁତ୍ର ମାଂସ ରନ୍ଧନ କରିବାକୁ ଲାଗିଲେ । ଭୋଜନ ଦେବାରେ ବିଳମ୍ବ ଘଟିବାରୁ ସେହି ଅଯୋଗ୍ୟ ବ୍ରାହ୍ମଣ କ୍ରୋଧରେ ଅଗ୍ନିଶର୍ମା ହୋଇଯାଇ, ନଗରରେ ନିଆଁ ଲଗାଇଦେଇ, ମହାଉପଦ୍ରବ ଆରମ୍ଭ କଲେ ।

ରାଜା ପୁତ୍ର ମାଂସ ରନ୍ଧନ କରି ନିଜେ ପାତ୍ରଟିକୁ ମୁଣ୍ଡରେ ଧରି ବ୍ରାହ୍ମଣଙ୍କ ନିକଟକୁ ଗଲେ । ସେତିକିବେଳେ ରାଜସେବକମାନେ କାନ୍ଦି କାନ୍ଦି ଜଣାଇଲେ— "ମହାରାଜ, ଏ ଅଯୋଗ୍ୟ ବ୍ରାହ୍ମଣ କୁପିତ ହୋଇ ଆପଣଙ୍କ ନିବାସ ଗୃହରେ ଅଗ୍ନି-ସଂଯୋଗ କରିଦେଇଛି ।

ଏହା ଶୁଣିବା ପରେ ମଧ୍ୟ ରାଜାଙ୍କ ମୁଖମଣ୍ଡଳରେ କ୍ରୋଧର କୌଣସି ଚିହ୍ନ ଦେଖାଗଲା ନାହିଁ । ସେ ବ୍ୟସ୍ତହୋଇ ବ୍ରାହ୍ମଣଙ୍କ ନିକଟକୁ ଯାଇ କହିଲେ—"ବ୍ରହ୍ମନ, ମୋତେ କ୍ଷମା କରନ୍ତୁ । ଭୋଜନ ପ୍ରସ୍ତୁତରେ ବିଳମ୍ବ ହୋଇଗଲା । ଆପଣ ପ୍ରସନ୍ନ ହୋଇ ଇଚ୍ଛାନୁସାରେ ମାଗିଥିବା ମାଂସ ଭୋଜନ କରନ୍ତୁ ।"

ମହାରାଜ ଶିବିଙ୍କ ନମ୍ରତାରେ ଅଘୋରୀ ବ୍ରାହ୍ମଣ ଲଜ୍ଜା, ଅନୁତାପ ଓ ଆତ୍ମଗ୍ଲାନିରେ ଭାଙ୍ଗି ପଡ଼ିଲେ । ତଥାପି ସେ ରାଜାଙ୍କୁ ପରୀକ୍ଷା କରିବାକୁ ଯାଇ କହିଲେ—"ତୁ ଏ ମାଂସ ନିଜେ ଖାଆ ।"

ଏହା ଶୁଣିବା ମାତ୍ରେ ରାଜା ପୂର୍ବପରି ପରମ ସନ୍ତୋଷରେ ମାଂସ ପାତ୍ରରେ ହାତ ପୂରାଇ ଖାଇବାକୁ ଚେଷ୍ଟାକଲେ । ଏତିକିବେଳେ ବ୍ରାହ୍ମଣ ରାଜାଙ୍କ ହାତକୁ ଧରି ପକାଇଲେ । ରାଜା 'କିଂ କର୍ତ୍ତବ୍ୟ ବିମୂଢ଼' ହୋଇ ଅଘୋରୀ ବ୍ରାହ୍ମଣଙ୍କୁ ଚାହିଁଥିବା ସମୟରେ ତାଙ୍କ ମୃତପୁତ୍ର ବସ୍ତ୍ରାଳଙ୍କାରରେ ସଜ୍ଜିତ ହୋଇ ଧାଇଁଆସି ରାଜାଙ୍କୁ କୁଣ୍ଢାଇ ପକାଇଲା । ମହାରାଜ ଶିବି ପୁତ୍ରକୁ ଦେଖି ଆଶ୍ଚର୍ଯ୍ୟ ହୋଇଯାଇ ଅତିଥିଙ୍କୁ ଚାହିଁ ରହିଲେ । ଏହି ସମୟରେ ଅତିଥି ବ୍ରାହ୍ମଣ ଛଦ୍ମବେଶ ତ୍ୟାଗ କରିଦେଲେ । ପ୍ରକୃତରେ ସ୍ୱୟଂ ପିତାମହ ବ୍ରହ୍ମା ରାଜାଙ୍କ ତ୍ୟାଗ, କ୍ଷମା ତଥା ଅତିଥିପରାୟଣତାର ପରୀକ୍ଷା ଲାଗି ଛଦ୍ମବେଶ ଧାରଣ କରିଥିଲେ । ବ୍ରହ୍ମା ରାଜାଙ୍କୁ ଆଶୀର୍ବାଦକରି ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ ଏବଂ ରାଜସଭାର ସଦସ୍ୟମାନେ ରାଜାଙ୍କ ଅଲୌକିକତା ସହିଷ୍ଣୁତା ତଥା କ୍ଷମାପରାୟଣତାରେ ମୁଗ୍ଧ ହୋଇ-ଯାଇଥିଲେ । ସେମାନେ ବିସ୍ମିତ ହୋଇ ପଚାରିଲେ—"ମହାରାଜ, ଆପଣ ଏପରି ଏକ ଦୁଷ୍କର କାର୍ଯ୍ୟ କପରି ଧୈର୍ଯ୍ୟର ସହିତ କରିପାରିଲେ ? ଆପଣ କ'ଣ ଯଶପ୍ରାପ୍ତି ଲାଗି ଏପରି ଏକ କଠୋର ପରୀକ୍ଷା ଦେବାକୁ ପ୍ରସ୍ତୁତ ହୋଇଥିଲେ ?"

ଏହା ଶୁଣି ରାଜା ହସି ହସି କହିଲେ—"ବନ୍ଧୁଗଣ ମୁଁ ମନରେ କୌଣସି କାମନା ନ ରଖି ସମସ୍ତ କାର୍ଯ୍ୟ କରିଥାଏ । ବିଶେଷତଃ ଦାନଦେବା ସମୟରେ ମୋ' ମନରେ କୌଣସି କାମନା ସ୍ଥାନ ପାଇପାରେ ନାହିଁ । ଦାନଦେବା ଅର୍ଥ, ଈଶ୍ୱରଙ୍କ ଆଜ୍ଞା ପାଳନ କରିବା । ଏହି ଭାବଧାରାରେ ଅନୁପ୍ରାଣିତ ହୋଇ ମୁଁ ଦାନ କରିଥାଏ ।"

ସୂତମହର୍ଷି କହିଲେ—"ହେ ଶୌନକାଦି ମୁନିଗଣ, ଏହିଭଳି ମହାତ୍ମା ହେଉଛନ୍ତି—ପ୍ରକୃତ ଦାନୀ । ସେହିଭଳି ଦାନୀ ପୁରୁଷ ହେଉଛନ୍ତି ମହାରାଜ ବଳି ।

ତାଙ୍କ ହାତରୁ ଦାନ ନେବାପାଇଁ ସ୍ୱୟଂ ଗୋଲୋକପତି ନରଦେହରେ ଅବତୀର୍ଣ୍ଣ ହେବା ସଙ୍ଗେ ସଙ୍ଗେ କ୍ଷୁଦ୍ର ବାମନ ରୂପ ଧାରଣ କରିଥିଲେ ।"

ଦୈତ୍ୟେନ୍ଦ୍ର ବଳି ଶୁକ୍ରାଚାର୍ଯ୍ୟଙ୍କ ଉପଦେଶକୁ ସ୍ପଷ୍ଟଭାବରେ ପ୍ରତ୍ୟାଖ୍ୟାନ କରିଦଅନ୍ତେ, ଭୃଗୁନନ୍ଦନ କ୍ରୋଧରେ ଅଗ୍ନିଶର୍ମା ହୋଇଯାଇ କହିଲେ—"ଆରେ ମୂର୍ଖ, ତୋର ବୁଦ୍ଧି ଭ୍ରଷ୍ଟ ହୋଇଯାଇଛି । ତୁ ନିଜକୁ ବଡ଼ ଜ୍ଞାନୀ ବୋଲି ମନେକରୁଛୁ ମୋ କଥା ଉପରେ ତୋର ବିଶ୍ୱାସ ଆସୁନାହିଁ ? ଯେଉଁ ବ୍ୟକ୍ତି ଗୁରୁଜନଙ୍କ ଆଜ୍ଞାକୁ ଅବଜ୍ଞା କରେ, ତା'ର ଅଧଃପତନ ଘଟିଥାଏ । ତୁ ଆଉଥରେ କାନ ଖୋଲି ଶୁଣି ନେ, ତୁ ଯାହାକୁ ଆଗ୍ରହର ସହିତ ଦାନ ଦେବାକୁ ବସିଛୁ, ସେ ବ୍ରାହ୍ମଣ ନୁହନ୍ତି ! ତୋର ସର୍ବନାଶ ଘଟାଇବା ଲାଗି ସ୍ୱୟଂ ବିଷ୍ଣୁ ତୋ ଦୁଆରକୁ ଆସିଛନ୍ତି ।"

ବଳିରାଜା ଅତ୍ୟନ୍ତ ନମ୍ରତାର ସହିତ କହିଲେ—"ଗୁରୁଦେବ, ମୁଁ ଆପଣଙ୍କ କଥା ବିଶ୍ୱାସ କରୁଛି । ସେ ସ୍ୱୟଂ ଗୋଲକପତି ମୋତେ ଠକାଇବାକୁ ଆସିଛନ୍ତି । କିନ୍ତୁ ଗୁରୁଦେବ, ସେ ମୋତେ ଠକାଇ ପାରିବେ ନାହିଁ, ବରଂ ନିଜେ ଠକିଯିବେ ! ଆପଣମାନେ ଯାହାଙ୍କ ସନ୍ତୋଷ ଲାଗି ଅହରହ ପୂଜା, ପାଠ ଓ ହୋମ କରୁଛନ୍ତି, ସେହି ବିଷ୍ଣୁ ମୋ ଦୁଆରେ ଅତିଥି ହୋଇଛନ୍ତି ! ସେ ଯଦି ଜଣେ ବେଦଜ୍ଞ ବ୍ରାହ୍ମଣ ହୋଇଥାଆନ୍ତି, ତେବେ ମୋର ଜୀବନ ଧନ୍ୟ । ତା' ନ ହୋଇ, ଆପଣଙ୍କ କଥା ଅନୁଯାରେ ଯଦି ବଟୁବାମନ ସ୍ୱୟଂ ନାରାୟଣ; ତା'ହେଲେ ମୋର ସର୍ବସ୍ୱ ବିଷ୍ଣୁଙ୍କ ଶ୍ରୀଚରଣରେ ସମର୍ପିତ ହୋଇଯିବ । ନିଜେ ଶୁଖିଲା ଭାତ ପୁଳାଏ ଧରି ଖାଉଥିବାବେଳେ ଯଦି ଆକସ୍ମିକ ଭାବରେ ପୁରି, କ୍ଷୀରି, ଲଡ଼ୁ, ମାଲପୁଆ ଆସି ସେ ସ୍ଥାନରେ ପହଞ୍ଚିଗଲା, ତାକୁ ଖାଇବାପାଇଁ କିଏ ମନ ନବଳାଇବ ? ଆପଣ କହୁଛନ୍ତି, ସେ ମୋତେ ବାନ୍ଧି ପକାଇବେ । ସେଥିରେ ମୋର କ୍ଷତି କ'ଣ ହେବ ? ବ୍ରାହ୍ମଣ ସର୍ବଦା ଅବଧ । ତେଣୁ ସେ ମୋତେ ବାନ୍ଧି ପକାଇଲେ ମଧ୍ୟ ମୁଁ ତାଙ୍କର କିଛି ଅନିଷ୍ଟ କରିବି ନାହିଁ । ତା' ବ୍ୟତୀତ ଭଗବାନ୍ ସର୍ବସମର୍ଥ । ମୁଁ ତାଙ୍କୁ ଭଲରେ ଦାନ ନଦେଲେ, ସେ ଯଦି ଇଚ୍ଛା କରିବେ, ତେବେ ମୋତେ ହତ୍ୟାକରି ମୋର ସର୍ବସ୍ୱ ଅପହରଣ କରିନେବେ । ଗୁରୁଦେବ ଆପଣ ମୋତେ ବାରଣ କରନ୍ତୁ ନାହିଁ । ଆପଣ ବାରଣ କଲେ ମଧ୍ୟ ମୋ ଉପରେ ତା'ର କୌଣସି ପ୍ରଭାବ ପଡ଼ିବ ନାହିଁ ! ମୁଁ ଯାହା ଥରେ କହିସାରିଛି, ତାକୁ ଅସ୍ୱୀକାର କରିପାରିବି ନାହିଁ । ବଟୁବାମନ ସ୍ୱେଚ୍ଛାରେ ଯାହା ମାଗିଛନ୍ତି—ସେହି 'ତ୍ରିପାଦ ଭୂମି' ମୁଁ ତାଙ୍କର ପାଦରେ ମାପି ନେବାକୁ କେବେହେଲେ ମନାକରିବି ନାହିଁ ।"

ଶ୍ରୀ ଶୁକଦେବ କହିଲେ—"ହେ ପରୀକ୍ଷିତ, ଏହା କହି ମହାରାଜ ବଳି ନୀରବ ହୋଇଯାଆନ୍ତେ, ମହାକ୍ରୋଧୀ ଶୁକ୍ରାଚାର୍ଯ୍ୟ କ୍ରୋଧରେ ଜଳି ଉଠିଲେ ।"

## ଛପ୍ପୟ

"ବିପ୍ର ବେଷ ତେଂ ଦଂଡ ଦେହୁଂ ବା ମୋକୁଁ ମାରେଂ ।
ଅଥବା ଧନ ଗୃହ ରାଜ୍ୟ ଛୀନକେ ଦେଶ ନିକାରେଂ ॥
ଦୀୟୋ ଜୋ ହୁଛ ଦାନ କରୌଂ ନହିଁ ଫିର ହୌଂ ନାହୀଂ ।
ଧନ ତୋ ଆଓ୍ୱତ ଜାତ ରହେଂ କୀରତି ଜଗ ମାହୀଂ ॥
ଗୃହେଂ ବାମନ ବିପ୍ର ହୋଂ, ଶତ୍ରୁ ହୋହି ଅଥବା ସୁହୃଦ ।
ଦେହୁଁ ତୀନ ଡଗ ଭୂମି ଅବ, ପଗ ଲଘୁ ହୌଂ ଅଥବା ବୃହଦ ॥"



# ଶୁକ୍ରଙ୍କ ଅଭିଶାପ

"ଦୃଢ଼ଂ ପଣ୍ଡିତମାନ୍ୟଜ୍ଞଃ ସ୍ତବ୍ଧୋଽସ୍ୟସ୍ମଦୁପେକ୍ଷୟା ।
ମଚ୍ଛାସନାତିଗୋ ଯସ୍ତ୍ୱମଚିରାଦ୍ ଭ୍ରଶ୍ୟସେ ଶ୍ରିୟଃ ॥"

(ଭାଃ ୮ । ୨୦ । ୧୫)

## ଛପ୍‌ପୟ

ଲଖି ବଲି କୀ ହଠ ଶୁକ୍ର କ୍ରୋଧ କରି ବୋଲେ ବାନୀ ।
ଅରେ ମନ୍ଦମତି ! ମୂର୍ଖ ! ଅଜ୍ଞ ! ଶଠ ! ପଣ୍ଡିତ ମାନୀ ॥
ସାଧାରଣ ଦ୍ୱିଜ ଭିକ୍ଷୁ ମୋଇ ନିଜ ଆଶ୍ରିତ ଜାନୈଂ ।
କରୈଂ ଉପେକ୍ଷା ଅଧମ ବାତ ମେରୀ ନହିଁ ମାନୈଂ ॥
ଜା ତେରୋ ଐଶ୍ୱର୍ଯ୍ୟ ଧନ, ଛିନ ମହଁ ସବ ନସି ଜାଇଗୋ ।"
ଗୁରୁ ଆଜ୍ଞା ଅବହେଲନା, କୋ ଫଲ ଅବ ତୂ ପାଇଗୋ ॥

ଅର୍ଥାତ୍ "ଶୁକ୍ରାଚାର୍ଯ୍ୟ ବଳିରାଜାଙ୍କୁ ଅଭିଶାପ ଦେଇ କହିଲେ—ଆରେ, ତୁ ଅଜ୍ଞ ଓ ମୂର୍ଖ । ତୁ ନିଜକୁ ନିଜେ ପଣ୍ଡିତ ବୋଲି ମନେକରୁଛୁ । ତୁ ମୋର ଆଜ୍ଞାକୁ ଉଲ୍ଲଙ୍ଘନ କରି ମୋତେ ଉପେକ୍ଷା କରୁଛୁ । ଯାଃ, ସେହି ଅପରାଧରେ ତୋର ସମସ୍ତ ଐଶ୍ୱର୍ଯ୍ୟ ନଷ୍ଟ ହୋଇଯାଉ ।

ଧର୍ମର ପଥ ଅତ୍ୟନ୍ତ କଣ୍ଟକାକୀର୍ଣ୍ଣ । ଯେ ଯେତିକି ଶୁଦ୍ଧ ତାକୁ ସେତିକି ଅଧିକ ପରୀକ୍ଷା କରାଯାଇଥାଏ । ଶୁଦ୍ଧ ସୁବର୍ଣ୍ଣକୁ ବାରମ୍ବାର ନିଆଁରେ ପୋଡ଼ି ତାର ବିଶୁଦ୍ଧତା ପରୀକ୍ଷା କରାଯାଏ । ସୁନାକୁ ବାରମ୍ବାର ପୋଡ଼ିଲେ ମଧ୍ୟ ତା'ର ଉଜ୍ଜ୍ୱଳ ଆଦୌ କ୍ଷୀଣ ହୁଏ ନାହିଁ, ବରଂ ତାହା ବେଳକୁ ବେଳ ଅଧିକ ଉଜ୍ଜ୍ୱଳ ଦେଖାଯାଇଥାଏ । ଭଲକାମରେ ଅଧିକ ବାଧାବିଘ୍ନ ପଡ଼େ । ତେଣୁ ଧୈର୍ଯ୍ୟବାନ୍ ଲୋକମାନେ ସେହି ବାଧାବିଘ୍ନକୁ ସାହସର ସହିତ ଏଡ଼ାଇ ଚାଲିଥାଆନ୍ତି । ଯେଉଁମାନେ ବିପଦ ସମୟରେ ଭୟ କରି ଧୈର୍ଯ୍ୟ ହରାଇ ଦିଅନ୍ତି, ସେମାନେ ଆଦୌ ବୀର, ସାହସୀ

ତଥା ଦୃଢ଼ମନା ନୁହନ୍ତି । ବିପଦ ସମୟରେ ସାଙ୍ଗ, ସାଥି, ବନ୍ଧୁ, ମିତ୍ର ତଥା ଆତ୍ମୀୟମାନେ ପାଖରୁ ଦୂରେଇ ଯାଆନ୍ତି । କିନ୍ତୁ ଧୈର୍ଯ୍ୟଶାଳୀ ଲୋକମାନେ କେବେ-ହେଲେ ଭାଙ୍ଗି ପଡ଼ନ୍ତି ନାହିଁ । ସେମାନେ ସମସ୍ତ ପ୍ରକାର ଅସୁବିଧାକୁ ଏଡ଼ାଇ ଦେଇ ପ୍ରଗତି ପଥରେ ଅଗ୍ରସର ହୋଇଥାଆନ୍ତି । ଲୋକମାନଙ୍କ ଦୃଷ୍ଟିରେ ସେମାନେ ନିର୍ଦ୍ଧନ ହୋଇପଡ଼ନ୍ତି, କିନ୍ତୁ ଯଶରୂପକ ଧନରେ ସେମାନେ ଧନଶାଳୀ ହୋଇ-ଉଠନ୍ତି ।

ଶ୍ରୀ ଶୁକଦେବ କହିଲେ – "ରାଜନ୍ ପରୀକ୍ଷିତ, ସଂସାରରେ ଭବିତବ୍ୟ ଅତ୍ୟନ୍ତ ପ୍ରବଳ । ମନୁଷ୍ୟ ଗୋଟିଏ ଉଦ୍ଦେଶ୍ୟ ନେଇ କାମ ଆରମ୍ଭ କରେ । କିନ୍ତୁ ଭବିତବ୍ୟତା ଅନୁସାରେ ତା'ର ସୁଫଳ ବା କୁଫଳ ଫଳିଥାଏ । ମହାରାଜ ନୃଗ ସ୍ୱର୍ଗପ୍ରାପ୍ତି ଲାଗି ଦାନ କରୁଥିଲେ; କିନ୍ତୁ ସେ ତାଙ୍କୁ ଗୋଧିସାପ ହୋଇ ଜନ୍ମଗ୍ରହଣ କରିବାକୁ ପଡ଼ିଲା । ମହାରାଜ ବଳିଙ୍କ ଆଦର, ଯତ୍ନ, ସେବା ଓ ଶୁଶ୍ରୂଷାରେ ପ୍ରୀତହୋଇ ଶୁକ୍ର ଋଷି ତାଙ୍କୁ ଇନ୍ଦ୍ରପଦରେ ସ୍ଥାୟୀ ଭାବରେ ବସାଇବାକୁ ଚାହୁଁଥିଲେ ଏବଂ ସେହି ଲକ୍ଷ୍ୟନେଇ ସେ ଶତ ଅଶ୍ୱମେଧ ଯଜ୍ଞର ସଂକଳ୍ପ କରିଥିଲେ । କିନ୍ତୁ ଭାଗ୍ୟର ବିଡ଼ମ୍ବନା ଫଳରେ, ସେହି ଭୃଗୁନନ୍ଦନ ବଳିରାଜାଙ୍କୁ ଅଭିଶାପ ଦେବାଲାଗି ଉଦ୍ୟତ ହୋଇଗଲେ ।

ବୃହସ୍ପତି, ଦେବତାମାନଙ୍କୁ ପୂର୍ବରୁ କହିଥିଲେ, ବଳିରାଜାଙ୍କୁ ପଦଚ୍ୟୁତ କରିବାର କୌଣସି ଉପାୟ ନାହିଁ । ସେ ଶୁକ୍ରାଚାର୍ଯ୍ୟଙ୍କ ତପୋବଳରେ ବଳୀୟାନ୍ । କିନ୍ତୁ ଯେଉଁଦିନ ସେହି ଶୁକ୍ରାଚାର୍ଯ୍ୟ ତାଙ୍କୁ ଅଭିଶାପ ଦେବେ, ସେ ସେହିଦିନ ପଦଚ୍ୟୁତ ହେବେ । ଅନ୍ୟଥା ବଳିରାଜାଙ୍କୁ କେହି ପଦଚ୍ୟୁତ କରିପାରିବେ ନାହିଁ ।

ଶୁକ୍ରାଚାର୍ଯ୍ୟ ମହାରାଜ ବଳିଙ୍କୁ ବହୁପ୍ରକାରେ ବୁଝାଇ ସୁଝାଇ ନିରସ୍ତ ହେବାପରେ କ୍ରୋଧରେ ଅଗ୍ନିଶର୍ମା ହୋଇଯାଇ କହିଲେ—"ଆରେ ମୂର୍ଖ, ଅଧମ ! ତୁ ମୋତେ ଅବଜ୍ଞା କଲୁ ? ତୁ ନିଜକୁ ନିଜେ ଜ୍ଞାନୀ ବୋଲି ମନେକରୁଛୁ । କିନ୍ତୁ ତୋର ତିଳେ ହେଲେ ବୁଦ୍ଧି ନାହିଁ ! ତୁ ନିଜର ମଙ୍ଗଳ ଚିନ୍ତାକଲୁ ନାହିଁ; ବରଂ ମୋତେ ମିଥ୍ୟାବାଦୀ ବୋଲି ପ୍ରମାଣିତ କରିଦେଲୁ ! ମୁଁ ସାରାଜୀବନ ତୋର ଉନ୍ନତି ଲାଗି ସାଧନା ପଥରେ ବ୍ରତୀ ହେଲି, ଅଥଚ ତୁ ମୋତେ ତିଳେହେଲେ ଖାତିର କଲୁନାହିଁ । ତୁ ମୋର ଶକ୍ତି ଜାଣିଥିବା ବୋଧହେଲୁ !! ଯାଃ......ତୋର ସମସ୍ତ ଐଶ୍ୱର୍ଯ୍ୟ ନଷ୍ଟ ହୋଇଯାଉ !!

ମହାରାଜ ବଳିଙ୍କ ପକ୍ଷରେ ଏହା ଥିଲା—ଏକ ଦୁର୍ଭାଗ୍ୟଜନକ ପରିସ୍ଥିତି । ସେ ଗୁରୁଦେବ ଶୁକ୍ରାଚାର୍ଯ୍ୟଙ୍କ କୃପାରୁ ଧନ, ଜୀବନ, ଐଶ୍ୱର୍ଯ୍ୟ ଆଦି ସବୁକିଛି

ପାଇଥିଲେ । ସ୍ୱର୍ଗପୁରରେ ସ୍ଥାୟୀରୂପେ ଇନ୍ଦ୍ରପଦରେ ଅଧିଷ୍ଠିତ କରାଇବା ପାଇଁ ଗୁରୁଦେବ ଚେଷ୍ଟା କରୁଥିଲେ । କିନ୍ତୁ କାଳର ଗତି ବିଚିତ୍ର ! ତାଙ୍କର ଦୁର୍ଭାଗ୍ୟକୁ ସେହି ଶୁକ୍ରାଚାର୍ଯ୍ୟ ତାଙ୍କୁ ଅଭିଶାପ ଦେଇଥିଲେ ।

ଗୁରୁଦେବଙ୍କ ଅଭିଶାପରେ ମହାରାଜ ବଳି ଆଦୌ ବିଚଳିତ ହେଲେ ନାହିଁ । ବରଂ ବଟୁବାମନଙ୍କୁ ତିନିପାଦ ମେଦିନୀ ଦାନ ଦେବାଲାଗି ଅଧିକ ଆଗ୍ରହୀ ହୋଇଉଠିଲେ ।

ମହାରାଜ ବଳିଙ୍କ ସତୀ, ସାଧ୍ୱୀ ପତ୍ନୀ ବିନ୍ଧ୍ୟାବଳୀ ସ୍ୱାମୀଙ୍କ ଅଟଳ ପ୍ରତିଜ୍ଞା ଓ ଗୁରୁଦେବଙ୍କ ଅଭିଶାପ ସମ୍ବନ୍ଧରେ ଶୁଣି, ବଳିରାଜାଙ୍କ ମନୋବଳକୁ ଦୃଢ଼କରିବା ଉଦ୍ଦେଶ୍ୟରେ ଯଜ୍ଞସ୍ଥଳରେ ଆସି ଉପସ୍ଥିତ ହେଲେ । ସେ ସୁବର୍ଣ୍ଣ ଝାରିରେ ଶୁଦ୍ଧଜଳ ଆଣି ସ୍ୱାମୀଙ୍କୁ ଦେଇ କହିଲେ—"ରାଜନ୍, ଏହି ଶୁଦ୍ଧ ଜଳରେ ବଟୁବାମନଙ୍କ ପାଦ ଧୋଇଦେଇ ଆପଣ ଶୀଘ୍ର ଦାନଦେବାର ବ୍ୟବସ୍ଥା କରନ୍ତୁ । ଭଲକାମରେ ବିଘ୍ନ ପଡିଥାଏ । ଆପଣ ଆଉ ବିଳମ୍ବ ନକରି ଶୀଘ୍ର ବଟୁବାମନଙ୍କ ଇଚ୍ଛା ପୂରଣ କରନ୍ତୁ ।"

ବିପଦ ସମୟରେ ତାଙ୍କର ପ୍ରିୟତମା ପତ୍ନୀ ତାଙ୍କୁ ସାହାଯ୍ୟ କରିବା ଲାଗି ଆଗେଇ ଆସିଥିବାରୁ, ବଳିରାଜାଙ୍କ ମନ ଆନନ୍ଦରେ ଉଲ୍ଲସିତ ହୋଇଗଲା । ଆତ୍ମୀୟ ସ୍ୱଜନମାନେ ସର୍ବଦା ସମ୍ପତ୍ତିକୁ ଘେରି ରହିଥାଆନ୍ତି । ସମ୍ପତ୍ତି ଶେଷ ହୋଇଗଲେ, ସ୍ୱାର୍ଥପର ଆତ୍ମୀୟମାନେ ପାଖରୁ ଅପସରି ଯାଆନ୍ତି । କିନ୍ତୁ ଯେଉଁ ଆତ୍ମୀୟ ସମ୍ପତ୍ତି ଓ ବିପତ୍ତି ସମୟରେ ସମାନ ମନୋଭାବ ନେଇ କାର୍ଯ୍ୟକରେ, ସେହି ହେଉଛି ପ୍ରକୃତ ଆତ୍ମୀୟ । ସେ ଭାବିଥିଲେ—ଗୁରୁଦେବଙ୍କ ଅଭିଶାପ ଓ ଧନ ସମ୍ପତ୍ତି ବିଲୋପର ସମ୍ବାଦ ଶୁଣି ନିଜ ପତ୍ନୀଙ୍କ ସମେତ ଆତ୍ମୀୟମାନେ ତାଙ୍କୁ ତ୍ୟାଗ କରିବେ କିମ୍ବା ଘୃଣା କରିବେ । କିନ୍ତୁ ବିନ୍ଧ୍ୟାବଳୀ ସ୍ୱାମୀଙ୍କ ପ୍ରତି ସହାନୁଭୂତିଶୀଳା ହୋଇ ତାଙ୍କ କାର୍ଯ୍ୟରେ ସାହାଯ୍ୟ କରିବା ଲାଗି ଆଗେଇ ଆସିଥିବାରୁ, ସେ ଆଶ୍ୱସ୍ତ ହେଲେ ଏବଂ ପତ୍ନୀଙ୍କ ହସ୍ତରୁ ସୁବର୍ଣ୍ଣଝାରି ନେଇ ବଟୁବାମନଙ୍କ ଚରଣ ଧୋଇ ପାଦୋଦକ ଶିରରେ ଗ୍ରହଣ କଲେ । ସେ ବାମନଙ୍କୁ ବସ୍ତ୍ରାଳଙ୍କାର ଆଦିରେ ସତ୍କାରକରି ବିଧିପୂର୍ବକ ପୂଜା କଲେ । ତତ୍ପରେ ତଡ଼ୁପାତ୍ର ଧରି ସଂକଳ୍ପ କରିବାକୁ ଉଦ୍ୟତ ହେଲେ ।

ଏହି ସମୟରେ ଶୁକ୍ରାଚାର୍ଯ୍ୟ ଭାବିଲେ- "ଯାଃ···ମୋର ସମସ୍ତ ଚେଷ୍ଟା ବ୍ୟର୍ଥ ହୋଇଗଲା । ମୁଁ ସାଧନାକରି ଅସୁରମାନଙ୍କୁ ମହତ୍ତ୍ୱପୂର୍ଣ୍ଣ ସ୍ଥାନରେ ବସାଇଥିଲି । କିନ୍ତୁ ଏହି ବଟୁବାମନ ରୂପୀ ବିଷ୍ଣୁ ମୋର ସମସ୍ତ ଯୋଜନାକୁ ପଣ୍ଡ କରିବାକୁ ବସିଛନ୍ତି । ଆଉ ଥରେ ଗୋଟିଏ ଚେଷ୍ଟାକରି ଦେଖେ ।"

ଶୁକ୍ରାଚାର୍ଯ୍ୟ କ୍ଷୁଦ୍ର ରୂପ ଧାରଣ କରି ଗଡ଼ୁପାତ୍ର ମଧ୍ୟରେ ପଶିଗଲେ । ତା' ଫଳରେ ଗଡ଼ୁପାତ୍ରର ପାଣି ବାହାରିଲା ନାହିଁ । ଦାତା ସଙ୍କଳ୍ପ କରି ଗ୍ରହୀତାଙ୍କ ହାତରେ ଜଳ ନ ଦେଲେ ତାହା ସଫଳ ଦାନ ହୁଏ ନାହିଁ । ଗଡ଼ୁପାତ୍ରରୁ ପାଣି ନ ପଡ଼ିବାରୁ, ବଳିରାଜା ଭାବିଲେ—"ଏ'କ ନୂଆ ବିପତ୍ତି ଆସି ଉପସ୍ଥିତ ହେଲା ? ତହୁଁ ସେ ବାମନଙ୍କୁ ବିନୀତ ସ୍ୱରରେ କହିଲେ—"ଦ୍ୱିଜବର, ଗଡ଼ୁପାତ୍ରରୁ ଜଳ ନିର୍ଗତ ହେଉନାହିଁ କାହିଁକି ?"

ବାମନ ସବୁ କିଛି ଜାଣିଥିଲେ । ସେ କହିଲେ—"ରାଜନ୍, ଆପଣ ଯେଉଁ କୁଶ ଧରିଛନ୍ତି, ତାହା ମୋ' ହାତକୁ ଦେଇଦିଅନ୍ତୁ ।"

ମହାରାଜ ବଳି ବାମନଙ୍କ ହସ୍ତକୁ କୁଶ ବଢ଼ାଇ ଦେବାମାତ୍ରେ, ସେ କୁଶର ଅଗ୍ରଭାଗକୁ ଗଡ଼ୁର ରନ୍ଧ୍ରରେ ଏଡ଼େ ଜୋରରେ ପୂରାଇଦେଲେ ଯେ, ଅସୁର ଗୁରୁ ଶୁକ୍ରାଚାର୍ଯ୍ୟଙ୍କର ଗୋଟିଏ ଆଖି ସଙ୍ଗେ ସଙ୍ଗେ ଫୁଟିଗଲା । ଏହି ଦୁର୍ଘଟଣା ପରେ ଶୁକ୍ରାଚାର୍ଯ୍ୟ ସେଠାରୁ ପ୍ରାଣ ନେଇ ପଳାଇଗଲେ । ଶୁକ୍ର ସେଠାରୁ ପଳାଇ ଯାଆନ୍ତେ, ତାଙ୍କ ମନ୍ତ୍ରର ପ୍ରଭାବ କୌଣସି କାର୍ଯ୍ୟ କଲାନାହିଁ ଏବଂ ଗଡ଼ୁପାତ୍ରରୁ ଜଳଧାରା ନିର୍ଗତ ହେବାକୁ ଲାଗିଲା । ତହୁଁ ବଳିରାଜା ଦେଶ, କାଳ ବାକ୍ୟ ଉଚ୍ଚାରଣ କରି ବଟୁ-ବାମନଙ୍କ ଇଚ୍ଛାମତେ 'ତ୍ରିପାଦ ମେଦିନୀ'ର ସଙ୍କଳ୍ପ କରିଦେଲେ । ତତ୍ପରେ ସେ ହାତଯୋଡ଼ି କହିଲେ—"ଏହି ଦାନ ଫଳରେ ଅନ୍ତର୍ଯ୍ୟାମୀ ପ୍ରଭୁ ସନ୍ତୁଷ୍ଟ ହୁଅନ୍ତୁ । ଏ' ପବିତ୍ର ଦାନ ମୁଁ ଦେଉନାହିଁ । ପରମେଶ୍ୱର ପ୍ରଭୁଙ୍କ ପ୍ରତିନିଧି ଭାବରେ ମୁଁ ତାଙ୍କରି ଦ୍ରବ୍ୟ, ସେହି ପ୍ରଭୁଙ୍କ ଇଚ୍ଛାରେ ଆପଣଙ୍କ ହସ୍ତରେ ଅର୍ପଣ କରୁଛି ।"

ଭଗବାନ୍ ବଟୁବାମନ ମୁଖମଣ୍ଡଳରେ ସଲଜ୍ଜଭାବ ଖେଳାଇ ବଳିଙ୍କ ହସ୍ତରୁ ଦାନ ଗ୍ରହଣ କଲେ ।

ସେହି ସମୟରେ ତ୍ରିଲୋକର ସମସ୍ତ ପ୍ରାଣୀ ବଳିରାଜାଙ୍କ ଜୟଗାନ କରିବାକୁ ଲାଗିଲେ । ସମସ୍ତେ ହର୍ଷପୁଲକ ମନରେ ଭାବିଲେ—"ଦେଖ, କେଡ଼େ ମହାଦାନୀ ଏ' ବଳିରାଜା ? ନିଜର ସର୍ବସ୍ୱ ଧ୍ୱଂସ ହୋଇଯିବାର ଆଶଙ୍କା ପାଇ ମଧ୍ୟ ସେ ବଟୁବାମନଙ୍କୁ ତାଙ୍କ ଇଚ୍ଛାମତେ ତ୍ରିପାଦ ମେଦିନୀ ଟେକିଦେଲେ । ଏଭଳି ମହତ୍ ଦାନ କେହି କେବେ କରି ନଥିଲେ କିମ୍ବା ଭବିଷ୍ୟତରେ କେହି ଏପରି ଦାନ କରିବାକୁ ସାହସ କରିବେ ନାହିଁ ।"

ଏହି ସମୟରେ ଆକାଶର ନନ୍ଦନକାନନରୁ ବଳିରାଜାଙ୍କ ଶିରରେ ସୁଗନ୍ଧ ପୁଷ୍ପ ବୃଷ୍ଟି ହେବାକୁ ଲାଗିଲା । ଗନ୍ଧର୍ବ, ବିଦ୍ୟାଧର, ସିଦ୍ଧ, ଚାରଣମାନେ ମୁକ୍ତ କଣ୍ଠରେ

ବଳିରାଜାଙ୍କ ଗୁଣଗାନ କରିବାକୁ ଲାଗିଲେ । ଆକାଶମଣ୍ଡଳରୁ ସହସ୍ର ଦୁନ୍ଦୁଭିର ଶବ୍ଦ ନିନାଦିତ ହୋଇଉଠିଲା । ଅପ୍ସରାବୃନ୍ଦ ନୃତ୍ୟରେ ମତ୍ତ ହୋଇ ଆକାଶମଣ୍ଡଳକୁ ମୁଖରିତ କରିଦେଲେ । ସର୍ବତ୍ର ମହାରାଜ ବଳିଙ୍କ ଅଲୌକିକ ଦାନ, ଅସୀମ ଧୈର୍ଯ୍ୟ, ସାହସିକ ପଦକ୍ଷେପ ତଥା ଅପୂର୍ବ ତ୍ୟାଗର ପ୍ରଶଂସା ଶୁଣାଗଲା ।

ଶ୍ରୀ ଶୁକଦେବ କହିଲେ—"ହେ ଉତ୍ତରାନନ୍ଦନ, ମହାରାଜ ବଳି ଯେଉଁ ଦାନ ଦେଲେ, ତାହାର ପଟାନ୍ତର ନାହିଁ ।

## ଛପ୍‌ପୟ

"ଭୟେ ଦୈବ ପ୍ରତିକୂଳ ସଗ୍ୟ ନେ ପଲଟୋ ଖାୟୋ ।
କହାଁ ଇନ୍ଦ୍ରପଦ ଅଟଲ କରନ ହିତ ଯଜ୍ଞ ରଚାୟୋ ।।
ଗୁରୁ ନେ ଦୀୟୋ ଶାପ ପାପ ପୂରବ କେ ପ୍ରକଟେ ।
ତଊ ନ ବିଚଲିତ ଭୟେ ଦାନ ଦୈକେ ନହି ପଲଟେ ।
ଅପନେ ଜାନେ ଜୀବ ସବ, ଜାରଦ ସୂଖକର ହୀ କର ହ୍ୱୀ ।
ଜନ୍ମ ଦୈବବଶ ହୋହି ଫଲ, ହାଥ ହିବନ କରତଳୁ ଜରହିଁ ।।



# ବାମନଙ୍କ ବିଶ୍ୱରୂପ

"ତଦ୍ ବାମନଂ ରୂପମବର୍ଦ୍ଧତାଦ୍ଭୁତଂ
ହରେରନନ୍ତସ୍ୟ ଗୁଣତ୍ରୟାତ୍ମକମ୍ ।
ଭୂଃ ଖଂ ଦିଶୋ ଦ୍ୟୌର୍ବିବରାଃ ପୟୋଧୟ—
ସ୍ତିର୍ଯ୍ୟଙ୍ ନୃଦେବା ଋଷୟୋ ଯଦାସତ ।"

(ଭା: ୮ । ୨୦ । ୨୧)

## ଛପ୍ପୟ

"ଜଲ୍ କୁଶ ଲୈ ସଂକଲ୍ପ ପଢ଼୍ୟୌ ଭୂ ବାମନ ଦୀହ୍ନୋଂ ।
ନହେ୍ନ ନହେ୍ନ ହାଥ ବଢ଼ାୟେ ବଟୁ ଲୈ ଲୀହ୍ନୋଂ ।।
ଅବ ପୁନ ବାମନ ବଢ଼େ ଲୋଭ ବଶ ପଗ ଫୈଂଲାୟେ ।
ଉନକେ ମନ ମହଁ ଭୂମି ଦଶା ନଭ ସବହୁଁ ସମାୟେ ।।
ଭୁବନ ଚତୁର୍ଦ୍ଦଶ ଭୂତ ସବ, କାଲ କର୍ମ ମନୁ ଇନ୍ଦ୍ର ସୁର ।
ବଟୁ ବାମନ କେ ଦେହ ମହଁ, ଚକିତ ହୋ ହୁଁ ନିରଖହୁ ଅସୁର ।।"

ଅର୍ଥାତ୍— ଶ୍ରୀ ଶୁକଦେବ କହୁଛନ୍ତି—"ହେ ପରୀକ୍ଷିତ, ଦାନ ନେବାମାତ୍ରେ ସେହି ବଟୁବାମନଙ୍କ ଅନନ୍ତ ରୂପ ଅଦ୍ଭୁତ ଭାବରେ ବଢ଼ିବାକୁ ଲାଗିଲା । ସେହି ବିସ୍ତାରମୟ ଶରୀର ମଧ୍ୟରେ ପୃଥ୍ୱୀ, ଆକାଶ, ଦିଗ, ସ୍ୱର୍ଗ, ପାତାଳ, ସମୁଦ୍ର, ପକ୍ଷୀ, ମନୁଷ୍ୟ, ଦେବତା, ଋଷିଗଣ, ସମସ୍ତେ ଅନ୍ତର୍ହିତ ହୋଇଗଲେ ।"

ପ୍ରଥମେ ବିନ୍ଦୁ ଏବଂ ସେହି ବିନ୍ଦୁରୁ ସିନ୍ଧୁ ଉତ୍ପନ୍ନ ହୋଇଥାଏ । ଶ୍ରେଷ୍ଠ ଶ୍ରେଷ୍ଠ ବୀଜ ମଧ୍ୟରେ ମହାବୃକ୍ଷର ସତ୍ତା ଲୁଚି ରହିଥାଏ ଏବଂ ତାହା କାଳ, କର୍ମ ଓ ଗୁଣର ସମ୍ପର୍କରେ ଆସି ବିଶାଳ ବୃକ୍ଷରେ ପରିଣତ ହୁଏ । ଜଗତର ଆଦ୍ୟ ରୂପ ଥିଲା— ପରମାଣୁ । ସେହି ପରମାଣୁର ସମ୍ମିଶ୍ରଣ ଫଳରେ ମହାବିଶ୍ୱର ସମ୍ଭବ ହୋଇପାରିଲା ।

ଠିକ୍ ସେହିପରି ଶୁକ୍ର ବିନ୍ଦୁମଧ୍ୟରେ ମନୁଷ୍ୟର ଶରୀର ଆତ୍ମଗୋପନ କରି ରହିଥିବାର ଦେଖାଯାଏ । 'ଅଣୁ'ରୁ ମହାନ୍ ଏବଂ ମହାନ୍‌ରୁ 'ଅଣୁ' ହେଉଛି—ବିବର୍ତ୍ତନ ପ୍ରକ୍ରିୟାର ସ୍ୱରୂପ । ଲୀଳା ଆଚରଣ ଲାଗି ସେହି ବୃହତ ଅଣୁରୁ ବାମନ ସ୍ୱରୂପ ଏବଂ ପୁଣି ବାମନ ରୂପରୁ ମହାନ୍ ବିଶ୍ୱରୂପ ପ୍ରକଟିତ ହୋଇଥାଏ । ଯେଉଁମାନେ ଅଣୁରୁ ମହାନ୍ ଏବଂ ମହାନ୍‌ରୁ ଅଣୁର ପ୍ରକ୍ରିୟା ସମ୍ବନ୍ଧରେ ଅବଗତ ହୋଇଥାଆନ୍ତି, ସେହି-ମାନେ ହେଉଛନ୍ତି—ମହାଜ୍ଞାନୀ ଅଥବା ବିଜ୍ଞାନୀ । ସେହିମାନେ ହିଁ ବଟୁବାମନଙ୍କ ରହସ୍ୟକୁ ଭେଦ କରିପାରିଛନ୍ତି । କିନ୍ତୁ ଯେଉଁମାନେ ବାହ୍ୟ ବୃତ୍ତିର ଆଲୋଚନା କରି କେବଳ ବୃଥା ଆଳାପରେ ମାତିଥାଆନ୍ତି, ସେମାନେ ଏହି ବିବର୍ତ୍ତନର ରହସ୍ୟକୁ ଆଦୌ ବୁଝିପାରନ୍ତି ନାହିଁ । ସେ ଯାହାହେଉ, ସବୁକିଛି ସେହି ପରମେଶ୍ୱରଙ୍କ କୃପାର ଫଳ । ଅନ୍ୟଥା କେହି କିଛି ଜାଣିପାରନ୍ତି ନାହିଁ ।"

ଶୁକଦେବ କହିଲେ—"ହେ ରାଜନ୍, ମହାନ୍ ଶକ୍ତିମାନେ ଜାଣି ଶୁଣି, ଲୀଳା ବିଳାସ ଉଦ୍ଦେଶ୍ୟରେ ଶ୍ରେଷ୍ଠ ହୋଇପାରନ୍ତି । ସେମାନେ ଜାଣିଶୁଣି ନିଜ ମହତ୍ତ୍ୱ ବୃଦ୍ଧି କରିବା ପାଇଁ ଏପରି ବିବର୍ତ୍ତନର ପ୍ରକ୍ରିୟା ସୃଷ୍ଟି କରିଥାଆନ୍ତି । ମହାନ୍ ଶକ୍ତି ହିଁ କ୍ଷୁଦ୍ର ଶକ୍ତିରେ ପରିଣତ ହୋଇପାରେ । କିନ୍ତୁ ଯେ ସ୍ୱତଃ କ୍ଷୁଦ୍ର, ସେ ମହାନ ଶକ୍ତିରେ ପରିବର୍ତ୍ତିତ ହୋଇପାରିବ କିପରି ? ଯେଉଁମାନେ ପଲଙ୍କ ଉପରେ ଶୋଇଥାଆନ୍ତି, ତଳକୁ ଗଡ଼ି ପଡ଼ିବାର ଭୟ ସେହିମାନଙ୍କଠାରେ ଦେଖାଯାଏ, କିନ୍ତୁ ଯେ ତଳେ ଶୋଇଥାଏ, ତା' ମନରେ ଗଡ଼ି ପଡ଼ିବାର ଭୟ ଜାତ ହେବ କିପରି ?

ମହାନ୍ ଶକ୍ତି କ୍ଷୁଦ୍ରଶକ୍ତିରେ ପରିଣତ ହେଲେ, ସେଥିମଧ୍ୟରେ କିଛି ଗୂଢ଼ ରହସ୍ୟ ଲୁଚି ରହିଥାଏ । ସେହି ଶକ୍ତି କ୍ଷୁଦ୍ର ହୋଇ ମଧ୍ୟ ମହାନ୍ ଶକ୍ତିର ବହୁ ଊର୍ଦ୍ଧ୍ୱକୁ ଉଠିପାରନ୍ତି । ସେହି ନିରାଡ଼ମ୍ବରତା ଓ ମହତ୍ତ୍ୱପୂର୍ଣ୍ଣ ଆକାଙ୍‌କ୍ଷା ବଟୁବାମନଙ୍କ-ଠାରେ ଦେଖାଯାଇଥିଲା । ସେ ଶ୍ରେଷ୍ଠ ଶ୍ରେଷ୍ଠ ପାଦ ଦୁଇଟି ଦେଖାଇଥିଲେ ହେଁ, ତା' ମୂଳରେ ଏକ ମହାନ୍ ଆକାଙ୍‌କ୍ଷା ଲୁଚି ରହିଥିଲା । ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି ମୂଳରେ ଏହିପରି ତତ୍ତ୍ୱ ଲୁଚି ରହିଥିଲା । ମହାଶୂନ୍ୟ ମଧ୍ୟରେ ଗୋଟିଏ ଅଣୁ ଅବହେଳିତ ଅବସ୍ଥାରେ ପଡ଼ିରହିଥିଲା । କିନ୍ତୁ ଦେଶ, କାଳ ଓ କାର୍ଯ୍ୟକାରଣର ସମ୍ପର୍କ ଲାଭ କରି ସେହି ଅଣୁରୁ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି ହୋଇଛି । ଯେଉଁ ମହାନ୍ ବ୍ରହ୍ମ କ୍ଷୁଦ୍ର ବାମନ ରୂପରେ ଆତ୍ମପ୍ରକାଶ କରିଥିଲେ, ସେହି ସ୍ୱରୂପ ବଳିରାଜାଙ୍କ ଦାନ ଜଳ ଗ୍ରହଣ କରିବାମାତ୍ରେ ବିରାଟ ରୂପରେ ପରିଣତ ହୋଇଗଲେ । ବଟ ବୃକ୍ଷର ଶ୍ରେଷ୍ଠ ମଞ୍ଜିଟି କାଳକୁ ଅପେକ୍ଷା କରିଥାଏ । କିନ୍ତୁ ଚରାଚର ନାଥ ହେଉଛନ୍ତି—ମହାକାଳ । ତାଙ୍କ ଭୟରେ ସ୍ୱୟଂ 'କାଳ' ମଧ୍ୟ ଥରିଉଠେ । ତେଣୁ ବଟୁବାମନ

'ତିପାଦ ମେଦନୀ' ଦାନ ଗ୍ରହଣ କରିବା ମାତ୍ରେ ତୃଷ୍ଣା, ଲୋଭ ଓ ମହାହଙ୍କାର ସଦୃଶ ବୃଦ୍ଧି ଲାଭ କରି ସମଗ୍ର ବିଶ୍ୱକୁ ଆଚ୍ଛାଦିତ କରିଦେଲେ । ଅଭିନୟ ମଧ୍ୟରେ ଗୋଟିଏ ନୂତନ ଦୃଶ୍ୟ ଦେଖିବାମାତ୍ରେ ଦର୍ଶକମାନେ ଯେପରି ଆଶ୍ଚର୍ଯ୍ୟାନ୍ୱିତ ହୋଇ-ଥାନ୍ତି; ଠିକ୍ ସେହିପରି ଯଜ୍ଞଶାଳାରେ ଉପସ୍ଥିତ ଥିବା ବ୍ୟକ୍ତିମାନେ ତଟସ୍ଥ ହୋଇ ବାମନଙ୍କ ବିଶ୍ୱରୂପକୁ ଗ୍ରହିରହିଲେ । ପ୍ରଳୟଙ୍କରୀ ବର୍ଷା-ଆଗମନରେ ନଦୀ ଯେପରି ଭୟଙ୍କର ରୂପ ଧାରଣ କରି ବୃଦ୍ଧି ଲାଭ କରେ, ଠିକ୍ ସେହିପରି କ୍ଷୁଦ୍ର ବାମନ ବୃହତ୍ ରୂପରେ ପ୍ରକଟିତ ହେଲେ । ଜ୍ଞାନୀ ତଥା ଆଧ୍ୟାତ୍ମବାଦୀମାନେ ତାଙ୍କ ଶରୀର ମଧ୍ୟରେ ସମଗ୍ର ବ୍ରହ୍ମାଣ୍ଡକୁ ଦେଖିପାରିଲେ । ପରମ ଯଶସ୍ୱୀ ତଥା ମହାତ୍ମା ବଳିରାଜା ବାମନଙ୍କଠାରେ ବିଶ୍ୱରୂପର ଚମତ୍କାରିତା ସୁସ୍ପଷ୍ଟ ରୂପେ ଅବଲୋକନ କରିବାକୁ ଲାଗିଲେ । ଭଗବାନ୍ ବାମନଙ୍କ ଅନନ୍ତ ରୂପ କ୍ଷଣକ ମଧ୍ୟରେ ବିଶ୍ୱରେ ବ୍ୟାପିଗଲା । ତାଙ୍କର ପରିବ୍ୟାପ୍ତି ଫଳରେ ଦଶଦିଗ ଆଚ୍ଛାଦିତ ହୋଇଗଲା । ପୃଥ୍ୱୀ, ଆକାଶ, ସ୍ୱର୍ଗ, ପାତାଳ ତଥା ଚରାଚର ପ୍ରାଣୀ ସମସ୍ତେ ସେଥିରେ ବିଲୀନ ହୋଇଗଲେ । ବାମନଙ୍କ ଅଙ୍ଗପ୍ରତ୍ୟଙ୍ଗରେ ତ୍ରିଗୁଣାତ୍ମକ ସୃଷ୍ଟି ସ୍ପଷ୍ଟ ପରିଲକ୍ଷିତ ହେଲା । କେବଳ ମହାରାଜ ବଳି ଏହି ଅଦ୍ଭୁତ ଦୃଶ୍ୟ ଦେଖିଲେ ନାହିଁ, ସେଠାରେ ଥିବା ସମସ୍ତ ଯାଜ୍ଞିକ, ଆଚାର୍ଯ୍ୟ ତଥା ସଭାସଦ୍‌ଗଣ ବାମନଙ୍କ ବିଶ୍ୱରୂପ ଦର୍ଶନ କଲେ, ସେହି ବିରାଟ ସ୍ୱରୂପର ନଖଠାରୁ ଶିଖାପର୍ଯ୍ୟନ୍ତ ଅଙ୍ଗପ୍ରତ୍ୟଙ୍ଗରୁ ବିଶ୍ୱର ସମସ୍ତ ବିଭୂତି ପ୍ରତିଭାତ ହେବାକୁ ଲାଗିଲା ।

ଏହା ଶୁଣି ମହାରାଜ ପରୀକ୍ଷିତ କହିଲେ—"ହେ ମହାତ୍ମନ୍, ବିରାଟ-ସ୍ୱରୂପୀ ବାମନଙ୍କର କେଉଁ ଅଙ୍ଗରୁ କେଉଁ ବିଭୂତି ପ୍ରକଟିତ ହୋଇଥିଲା, ତାହା ଆପଣ ଦୟାକରି ମୋ ଆଗରେ ବିସ୍ତାରପୂର୍ବକ ବର୍ଣ୍ଣନା କରନ୍ତୁ ।"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ବ୍ରହ୍ମାଣ୍ଡ ମାଳ ମାଳ ହୋଇ, ଯା' ରୋମ କୂପେ ଝୁଲୁଥାଇ ତାଙ୍କ ସମ୍ବନ୍ଧରେ ମୁଁ କ'ଣ ଅବା ଆପଣଙ୍କୁ କହିପାରିବି? ସ୍ୱୟଂ ଚତୁର୍ମୁଖ ବ୍ରହ୍ମା ତାଙ୍କର ଆୟୁଷ କାଳ ମଧ୍ୟରେ ସେହି ବିରାଟ ସ୍ୱରୂପର ବିଭୂତି ସମ୍ପର୍କରେ କହିବାକୁ ସମ୍ପୂର୍ଣ୍ଣ ଅସମର୍ଥ ହେବେ । ତଥାପି ଆପଣଙ୍କ ଆଗ୍ରହ ଅନୁସାରେ ମୁଁ ଅତି ସଂକ୍ଷେପରେ ବାମନଙ୍କ ବିଶ୍ୱରୂପର ବର୍ଣ୍ଣନା କରୁଛି ।

"ହେ ରାଜନ୍ ପରୀକ୍ଷିତ, ମହାରାଜ ବଳି ସ୍ପଷ୍ଟ ଦେଖିପାରିଲେ ବାମନଙ୍କ କୋମଳ ପାଦଯୁଗଳ ତଳେ ରସାତଳ ପରିବ୍ୟାପ୍ତହୋଇଛି । ଠିକ୍ ତାପାଦ ଉପରିଭାଗରେ ଭୂଦେବୀ ବିଶ୍ରାମ କରୁଛନ୍ତି । ତାଙ୍କର ଅଣ୍ଟୁ ଜଙ୍ଘ ମଧ୍ୟରେ ସମସ୍ତ ଗିରି, ପର୍ବତ, ମହାପର୍ବତ ବିରାଜମାନ କରିଥିଲେ । ଜାନୁ ଉପରେ ସମସ୍ତ ପ୍ରକାର

ପକ୍ଷୀ ଏବଂ ଉରୁଦେଶରେ ଅଣଗ୍ରଣ ମରୁତ ଶୋଭା ପାଉଥିଲେ । ସେହି ବିଶ୍ୱରୂପୀ ବିଶ୍ୱେଶ୍ୱରଙ୍କ ବସ୍ତ୍ରାବରଣ ମଧ୍ୟରେ ସନ୍ଧ୍ୟା ଦେବୀ ଅବଗୁଣ୍ଠନବତୀ ହୋଇ ବସିଥିଲେ ଏବଂ ଗୁହ୍ୟ ଦେଶରେ ସମସ୍ତ ପ୍ରଜାପତି ଆସ୍ଥାନ ସୁଦୃଢ଼ କରି ସେହି ବିଶ୍ୱେଶଙ୍କ ଧ୍ୟାନରେ ମଗ୍ନ ଥିଲେ । ବଳିରାଜା ଲକ୍ଷ୍ୟକଲେ—ବାମନଙ୍କ ଜଙ୍ଘରେ ହିରଣ୍ୟକଶିପୁ, ହିରଣ୍ୟାକ୍ଷ, ପ୍ରହ୍ଲାଦ ଓ ତାଙ୍କ ପିତା ବିରୋଚନ ତଥା ସମସ୍ତ ଅସୁର ଅବସ୍ଥାନ କରିଛନ୍ତି । କେବଳ ସେତିକି ନୁହେଁ ସେମାନଙ୍କ ମଧ୍ୟରେ ସେ ନିଜକୁ ତଥା ନିଜର ପରିବାରବର୍ଗଙ୍କୁ ଦେଖି ଚମତ୍କୃତ ହୋଇଉଠିଲେ ।

ହେ ପରୀକ୍ଷିତ, ସେହି ବିଶ୍ୱେଶ୍ୱରଙ୍କ ମହା ଆବର୍ତ୍ତ ସ୍ୱରୂପ ନାଭି ଗହ୍ୱରରେ ଅନନ୍ତ ଆକାଶ ଓ କୁକ୍ଷି ଦୁଇଟିରେ ସାତସମୁଦ୍ର ପ୍ରଚଣ୍ଡ ଲହରୀ ଖେଳାଇ ସୁଶୋଭିତ ହେଉଥିଲେ । ବକ୍ଷସ୍ଥଳରେ ନକ୍ଷତ୍ରମାଳା ଦେଦୀପ୍ୟମାନ ହେଉଥିଲେ ଏବଂ ହୃଦୟ ସ୍ଥଳରେ ସ୍ୱୟଂ ଧର୍ମଦେବ ଶୋଭା ପାଉଥିଲେ । ଦୁଇ ସ୍ତନଭାଗରେ ଋତ ଓ ସତ୍ୟ ପ୍ରତ୍ୟକ୍ଷ ବିରାଜମାନ କରିଥିଲେ । ବକ୍ଷଦେଶରେ ବିକଳ୍ପ ସଦୃଶ ଚଞ୍ଚଳା ଲକ୍ଷ୍ମୀ ବିରାଜୁ ଥିଲେ । କଣ୍ଠଦେଶରେ ସାମଦେବ ମୂର୍ତ୍ତିମାନ୍ ହୋଇ ବସିଥିଲେ ଏବଂ ତାଙ୍କ ମୁଖରୁ ସାମଗାନ ନିଃସୃତ ହେଉଥିଲା । ଦୁଇଭୁଜରେ ଈଶାନ୍, ଇନ୍ଦ୍ର, କୁବେର ଆଦି ଦିକ୍‌ପାଳ ତଥା ସମସ୍ତ ଦେବଦେବୀ ସୁଙ୍ଗପୂର୍ବକ ଆସୀନ ହୋଇଥିଲେ । କର୍ଣ୍ଣ-ଗହ୍ୱର ମଧ୍ୟରେ ଦଶଦିଗ ସ୍ୱରୂପ ଧାରଣ କରି ଉପବେଶନ କରିଥିଲେ । ମସ୍ତକ ଉପରେ ସ୍ୱର୍ଗ ବିସ୍ତୃତ ହୋଇଥିଲା ଏବଂ ତାଙ୍କର କୁଞ୍ଚିତ କେଶ କଳାପରେ ଚତୁର୍ମେଘ ଘନଘୋର ଗର୍ଜନର ସହିତ ଆସୀନ ଥିଲେ । ନାସିକା ବିବରରେ ବାୟୁଦେବ, ନେତ୍ର ଯୁଗଳରେ ସୂର୍ଯ୍ୟ ଓ ଚନ୍ଦ୍ର ଏବଂ ମୁଖଗହ୍ୱର ମଧ୍ୟରେ ଅଗ୍ନିଦେବଙ୍କ ଲେଲିହାନ ଶିଖା ପରିଶୋଭିତ ହେଉଥିଲା । ବାଣୀରେ ଅନ୍ୟାନ୍ୟ ବେଦ, ରସନାରେ ବରୁଣଦେବ, ଏବଂ ଭ୍ରୂଯୁଗଳରେ ବିଧି ଓ ନିଷେଧ ମୂର୍ତ୍ତିମନ୍ତ ହୋଇ ପରିଶୋଭିତ ହେଉଥିଲେ ।

"ହେ ରାଜନ୍, ସେହି ବିରାଟ ସ୍ୱରୂପଙ୍କ ପଲକରେ ଦିବା ଓ ରାତ୍ରି ଆତଯାତ ହେଉଥିଲେ ଏବଂ ଲଲାଟରେ କ୍ରୋଧ, ଅଧରରେ ଲୋଭ ଏବଂ ଜନେନ୍ଦ୍ରିୟରେ ସ୍ୱୟଂ କାମଦେବ ବିରାଜମାନ କରିଥିଲେ । ପରମ ପୁରୁଷଙ୍କ ବୀର୍ଯ୍ୟରୁ ଜଳଧାରା ନିର୍ଗତ ହେଉଥିଲା । ସେହି ଜଳହିଁ ହେଉଛି—ଜୀବନ । ତାଙ୍କର ପୃଷ୍ଠ-ଦେଶରେ ଅଧର୍ମ ନିବାସ କରି କରାଳ ଦୃଷ୍ଟିରେ ସମସ୍ତ ଚରାଚର ଜଗତକୁ ଭୟଭୀତ କରାଉଥିଲେ । ସେହି ଅଧର୍ମ ହେଉଛି—ବିରାଟ ପୁରୁଷଙ୍କ ହୃତ୍ କମଳରେ ଆସୀନ ଧର୍ମର ଆତ୍ମଜ, କିନ୍ତୁ ସେ ହୃଦ୍‌ଦେଶରେ ବିରାଜମାନ ନକରି ବିରାଟ ପୁରୁଷଙ୍କ ପୃଷ୍ଠଦେଶରେ ଆସୀନ ଥିଲେ ।

"ହେ ଅଭିମନ୍ୟୁ କୁମର, ବିରାଟରୂପ ବାମନଙ୍କ ପାଦପୃଷ୍ଠ ଉପରେ ସମସ୍ତ ଯଜ୍ଞ, ଯୋଗ ବିଦ୍ୟମାନ ଥିଲେ ଏବଂ ତାଙ୍କ ଶରୀରର ଗୁମ୍ଫା ମଧ୍ୟରେ ମୃତ୍ୟୁଦେବୀ ଅବଗୁଣ୍ଠନବତୀ ହୋଇ ବସିଥିଲେ । ତାଙ୍କର ହାସ୍ୟରୁ ମାୟାଦେବୀ ଉତ୍ପନ୍ନ ହୋଇ ଦରହାସ ବଦନରେ ସର୍ବତ୍ର ବିଲୋକନ କରୁଥିଲେ । ଶ୍ରୀହରିଙ୍କ ରୋମ କୂପରେ ସମସ୍ତ ଔଷଧି, ନାଡ଼ୀମାନଙ୍କରେ ଅସଂଖ୍ୟ ନଦନଦୀ ପ୍ରବାହିତ ହେଉଥିଲେ । ମହାନ୍ ସ୍ୱରୂପଙ୍କ ହସ୍ତ ଓ ପାଦର ନଖମାନଙ୍କରେ ପର୍ବତର ଶିଳାଖଣ୍ଡମାନ ବିରାଜୁଥିଲା । ତାଙ୍କର ମୂର୍ଦ୍ଧିରେ ସ୍ୱୟଂ ପ୍ରଜାପତି ବ୍ରହ୍ମା ଶତଦଳ ପଦ୍ମ ଉପରେ ବସି ଧ୍ୟାନମଗ୍ନ ଥିଲେ । ବ୍ରହ୍ମାଙ୍କର ଚତୁଃପାର୍ଶ୍ୱରେ ସମସ୍ତ ଦେବଗଣ ଓ ଋଷିଗଣ ଯୋଡ଼ ହସ୍ତରେ ପରିକ୍ରମାରେ ଲୀନ ଥିଲେ ।

"ହେ ପରୀକ୍ଷିତ, ଆଉ କ'ଣ ଅବା କହିବି, ବାମନଙ୍କ ବିରାଟ ସ୍ୱରୂପ ମଧ୍ୟରେ ବଳିରାଜା ଜଗତର ସ୍ଥାବର ଓ ଜଙ୍ଗମାଦି ସମସ୍ତ ବସ୍ତୁ ଅବଲୋକନ କରି ସ୍ତମ୍ଭୀଭୂତ ହୋଇଗଲେ ।

ଶୁକ ମହାମୁନି କହିଲେ—"ହେ ପରୀକ୍ଷିତ",—ବଟୁବାମନଙ୍କ ବିରାଟ ରୂପ ଦେଖି ସମସ୍ତ ଅସୁର ଭୟଭୀତ ହୋଇଥିଲେହେଁ ଏକ ଲୟରେ ତାଙ୍କର ମହାନ୍ ରୂପକୁ ନିରୀକ୍ଷଣ କରିବାକୁ ଲାଗିଲେ । ଭଗବାନ୍ ତାଙ୍କର କ୍ଷୁଦ୍ର ବାମନ ରୂପ ତ୍ୟାଗ କରି ମହାମହିମାନ୍ୱିତ ରୂପରେ ପ୍ରକଟିତ ହୋଇଥିଲେ ।"

## ଛପ୍‌ପୟ

"ଶୁକ ବଚନ ପ୍ରତ୍ୟକ୍ଷ ଭୟେ ବଟୁବାମନ ବାଢ଼େ ।
ଅଦ୍‌ଭୁତ ଅନୁପମ ରୂପ ଅସୁର ସବ ନିରଖେଁ ଠାଢ଼େ ॥
ଦଣ୍ଡ କମଣ୍ଡଳୁ ତ୍ୟାଗୀ ଅସ୍ତ୍ର ଆୟୁଧ ନିଜ ଧାରେ ।
ଲଖି ବିରାଟ କୂ କାଁପେ ଅସୁର ସବ ଭୟକେ ମାରେ ॥
ଚକ୍ର ସୁଦର୍ଶନ, ଧନୁଷ, ସର, ଗଦା, ଖଡ୍‌ଗ ଧାରନ କୟେ ।
ଢାଲ, ଶଙ୍ଖ, କ୍ରୀଡ଼ା-କମଲ, ଆଠୌଁ ହାଥନି ମହଁ ଲୟେ ॥"



ମୁଦ୍ରଣ :—କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର, କଟକ—୭୫୩୦୦୧